# ଋଗ୍‌ବେଦ ସୌରଭ

ପ୍ରିୟବ୍ରତ ଦାସ



ବୈଦିକ ଅନୁସନ୍ଧାନ ଗ୍ରନ୍ଥମାଳା

# ଋଗ୍‌ବେଦ ସୌରଭ

ପ୍ରିୟବ୍ରତ ଦାସ



ବୈଦିକ ଅନୁସନ୍ଧାନ ଗ୍ରନ୍ଥମାଳା



॥ ଋଗ୍‌ବେଦ ସୌରଭ ॥

ପ୍ରକାଶକ :
ବୈଦିକ ଅନୁସନ୍ଧାନ ପ୍ରତିଷ୍ଠାନ
ଭୁବନେଶ୍ୱର-୭

ମୁଦ୍ରଣ :
କୋଣାର୍କ ପ୍ରିଣ୍ଟର୍ସ
କଟକ-୮

ପ୍ରଥମ ସଂସ୍କରଣ :
ବିକ୍ରମାବ୍ଦ ୨୦୨୮, ଖ୍ରୀଷ୍ଟାବ୍ଦ ୧୯୭୨

ଦ୍ୱିତୀୟ ସଂସ୍କରଣ :
ବିକ୍ରମାବ୍ଦ ୨୦୩୩, ଖ୍ରୀଷ୍ଟାବ୍ଦ ୧୯୭୭

ମୂଲ୍ୟ : [illegible]
ଦଶ ଟଙ୍କା।

**Rigveda Saurabha**

*Published by:*
Vaidik Anusandhan Pratisthan
Bhubaneswar-7

*Printed at :*
Konark Printers
Cuttack-8

*First Edition :*
Vikramabda 2028, A. D. 1972

*Second Edition :*
Vikramabda 2033, A. D. 1977

*Price :*
**Rs. 10.00**

## ସୂଚୀ

---

# ଭୂମିକା

## ଋଗ୍‌ବେଦର ଗୌରବ

ବେଦ ମାନବସଂସ୍କୃତିର ମୂଳାଧାର । ତାହାର ପୂର୍ବବର୍ତ୍ତୀ କୌଣସି ମାନବୀୟ ଜ୍ଞାନ ଆଜି ସୁଦ୍ଧା ଜାଣିତ ହୋଇନାହିଁ । ବୈଦିକ ଜ୍ଞାନ ମାନବମସ୍ତିଷ୍କକୁ ସର୍ବପ୍ରଥମେ ପ୍ରକାଶିତ କରିଥିଲା ଓ ବେଦର ପ୍ରେମବାଣୀ ମାନବହୃଦୟକୁ ଉଦ୍‌ବେଳିତ କରିଥିଲା । ବ୍ରହ୍ମା, ମନୁ ଆଦି ପ୍ରାଚୀନ ଋଷିଙ୍କ ଠାରୁ ଆରମ୍ଭ କରି ଦୟାନନ୍ଦ, ଅରବିନ୍ଦ ପ୍ରଭୃତି ଆଧୁନିକ କାଳର ମନ୍ତ୍ରଦ୍ରଷ୍ଟା ଯୋଗିଜନ ବୈଦିକଜ୍ଞାନକୁ ଆଦିସୃଷ୍ଟିର ଅପୌରୁଷେୟ ଅର୍ଥାତ୍ ଈଶ୍ୱରପ୍ରଦତ୍ତ ଜ୍ଞାନରୂପରେ ସମ୍ମାନ ପ୍ରଦର୍ଶନ କରିଛନ୍ତି ।

ଋକ୍, ଯଜୁଃ, ସାମ ଓ ଅଥର୍ବ ଚାରିବେଦ ମଧ୍ୟରୁ ଋଗ୍ବେଦ ପ୍ରଥମ, ବୃହତ୍ତମ ଓ [illegible] । ଋଗ୍ବେଦର ଜ୍ଞାନାଞ୍ଜଳିକୁ ମାନବ ପ୍ରତି ପରମାତ୍ମାଙ୍କର ଅସୀମ ଆଶୀର୍ବାଦ ରୂପରେ ସମସ୍ତ ଋଷିମୁନି କୃତଜ୍ଞତା ପ୍ରକାଶ କରିଛନ୍ତି । ପାଶ୍ଚାତ୍ୟ ଆଲୋଚକଗଣ ନିଜର ପକ୍ଷପାତୀ ଦୃଷ୍ଟି ସତ୍ତ୍ୱେ ଋଗ୍ବେଦର ମହିମା ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି । ସେମାନେ ଋଗ୍ବେଦକୁ "ବିଶ୍ୱଗ୍ରନ୍ଥାଗାରର ପ୍ରାଚୀନତମ ଓ ସର୍ବପ୍ରଥମ ଗ୍ରନ୍ଥ" ରୂପରେ ଗୌରବ

ପ୍ରଦାନ କରିଛନ୍ତି । ମେକ୍ସମୁଲର୍ ଲେଖିଛନ୍ତି—"ଯାବତ୍ ସ୍ଥାସ୍ୟନ୍ତି ଗିରୟଃ ସରିତଶ୍ଚ ମହୀତଳେ । ତାବଦ୍ ଋଗ୍ବେଦମହିମା ଲୋକେଷୁ ପ୍ରଚରିଷ୍ୟତି ॥" ଅର୍ଥାତ୍ 'ପୃଥିବୀପୃଷ୍ଠରେ ପର୍ବତ ଓ ନଦୀ ରହିଥିବା ପର୍ଯ୍ୟନ୍ତ ମନୁଷ୍ୟଙ୍କ ମଧ୍ୟରେ ଋଗ୍ବେଦର କୀର୍ତ୍ତି ପ୍ରଚରିତ ହେଉଥିବ ।' ଜର୍ମାନ ବିଦ୍ୱାନ୍ ଓ୍ୱାଲ୍ଟେର୍ଙ୍କ ମତରେ "କେବଳ ଏହି ଋଗ୍ବେଦର ଦାନ ପାଇଁ ପାଶ୍ଚାତ୍ୟ ଜଗତ ଚିରକାଳ ଭାରତର ଋଣୀ ହୋଇ ରହିବ ।" ଖ୍ରୀଷ୍ଟ ଧର୍ମଯାଜକ ହେବେର୍ ପାଶ୍ଚାତ୍ୟ ସଂସାରକୁ କହିଛନ୍ତି—"ତୁମର ଗ୍ରୀସ୍ ଓ ରୋମରେ ଋଗ୍ବେଦ ପରି ମୂଲ୍ୟବାନ୍ ବସ୍ତୁର ଉଦ୍ଭବ ହୋଇନାହିଁ ।" ଚାରିବେଦ ମଧ୍ୟରେ ଋଗ୍ବେଦ ସମ୍ବନ୍ଧରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତମାନେ ସର୍ବାଧିକ ଭାଷ୍ୟ ଓ ସମୀକ୍ଷା ରଚନା କରିଛନ୍ତି ।

## ବିସ୍ତାର ଓ ବିଭାଜନ

ଋଗ୍ବେଦର ସୂକ୍ତ ସଂଖ୍ୟା ୧୦୨୮ ଓ ମନ୍ତ୍ରସଂଖ୍ୟା ୧୦୫୫୨ । ସବୁଠାରୁ ଛୋଟ ସୂକ୍ତରେ ଗୋଟିଏ ମାତ୍ର ମନ୍ତ୍ର ଥିବା ସ୍ଥଳେ ସବୁଠାରୁ ବଡ଼ ସୂକ୍ତର ମନ୍ତ୍ରସଂଖ୍ୟା ଅଠାବନ ।

ଏହି ବେଦର ବିଭାଜନ ଦୁଇପ୍ରକାର; ଯଥା—(୧) ମଣ୍ଡଳ, ସୂକ୍ତ ଓ ମନ୍ତ୍ର (୨) ଅଷ୍ଟକ, ବର୍ଗ ଓ ମନ୍ତ୍ର । ପ୍ରଥମ ବିଭାଜନ ପ୍ରାଚୀନ ଓ ଉଦ୍ଧରଣ ପାଇଁ ଅଧିକ ସୁଗମ । ଏଥିରେ ସମୁଦାୟ ମଣ୍ଡଳସଂଖ୍ୟା ଦଶ । ତେଣୁ ଋଗ୍ବେଦକୁ 'ଦାଶତୟୀ' କୁହାଯାଏ । ଦ୍ୱିତୀୟ ବିଭାଜନ ଅପେକ୍ଷାକୃତ ଅର୍ବାଚୀନ ଓ ଏକପ୍ରକାର ଯାନ୍ତ୍ରିକ । ଏହି କ୍ରମରେ ଋଗ୍ବେଦରେ ସମୁଦାୟ



ଆଠୋଟି ଅଷ୍ଟକ ଅଛି । ପ୍ରତି ଅଷ୍ଟକରେ ଆଠୋଟି ଲେଖାଏ ଅଧ୍ୟାୟ ଅଛି । ଏହି ପ୍ରକାରେ ମୋଟ ୮ ଅଷ୍ଟକ, ୬୪ ଅଧ୍ୟାୟ ଓ ୨୦୨୪ ବର୍ଗ ଅଛି । ଉଭୟ ବିଭାଜନରେ ମୋଟ ମନ୍ତ୍ରସଂଖ୍ୟା ସମାନ । ଶତପଥ ବ୍ରାହ୍ମଣ ଅନୁସାରେ ଋଗ୍ବେଦର ମୋଟ ଅକ୍ଷର ସଂଖ୍ୟା ୪,୩୨,୦୦୦ ।

## ମଣ୍ଡଳ ଅନୁସାରେ ବିଭାଜନ

| ମଣ୍ଡଳ | ସୂକ୍ତସଂଖ୍ୟା | ମନ୍ତ୍ରସଂଖ୍ୟା |
|---|---|---|
| ପ୍ରଥମ | ୧୯୧ | ୨୦୦୬ |
| ଦ୍ୱିତୀୟ | ୪୩ | ୪୨୯ |
| ତୃତୀୟ | ୬୨ | ୬୧୭ |
| ଚତୁର୍ଥ | ୫୮ | ୫୮୯ |
| ପଞ୍ଚମ | ୮୭ | ୭୨୭ |
| ଷଷ୍ଠ | ୭୫ | ୭୬୫ |
| ସପ୍ତମ | ୧୦୪ | ୮୪୧ |
| ଅଷ୍ଟମ | ୯୨ | ୧୬୩୬ |
| ନବମ | ୧୧୪ | ୧୧୦୮ |
| ଦଶମ | ୧୯୧ | ୧୭୫୪ |
| | ୧୦୧୭ | ୧୦୪୭୨ |
| ବାଲଖିଲ୍ୟ ସୂକ୍ତ | ୧୧ | ୮୦ |
| | ୧୦୨୮ | ୧୦୫୫୨ |

## ଅଷ୍ଟକ ଅନୁସାରେ ବିଭଜନ

| ଅଷ୍ଟକ | ସୂକ୍ତ | ବର୍ଗ | ମନ୍ତ୍ର |
|---|---|---|---|
| ପ୍ରଥମ | ୧୨୧ | ୨୬୫ | ୧୩୭୦ |
| ଦ୍ୱିତୀୟ | ୧୧୯ | ୨୨୧ | ୧୧୪୭ |
| ତୃତୀୟ | ୧୨୨ | ୨୨୫ | ୧୨୦୯ |
| ଚତୁର୍ଥ | ୧୪୮ | ୨୫୦ | ୧୨୮୯ |
| ପଞ୍ଚମ | ୧୨୯ | ୨୩୮ | ୧୨୬୩ |
| ଷଷ୍ଠ | ୧୨୪ | ୩୧୩ | ୧୬୫୦ |
| ସପ୍ତମ | ୧୧୬ | ୨୪୮ | ୧୨୬୩ |
| ଅଷ୍ଟମ | ୧୪୭ | ୨୪୭ | ୧୨୮୧ |
| | ୧୦୧୭ | ୨୦୦୬ | ୧୦୪୭୨ |
| ବାଲଖିଲ୍ୟ ସୂକ୍ତ | ୧୧ | ୧୮ | ୮୦ |
| | ୧୦୨୮ | ୨୦୨୪ | ୧୦୫୫୨ |

## ଋଗ୍‌ବେଦୀୟ ଦର୍ଶନ

ଋଗ୍‌ବେଦ ଜ୍ଞାନକାଣ୍ଡ । ନିରୁକ୍ତକର୍ତ୍ତା ଯାସ୍କ କହିଛନ୍ତି ଯେ ଏଥିରେ ପଦାର୍ଥର ଲକ୍ଷଣ ପ୍ରକାଶିତ ହୋଇଛି । ଋଗ୍‌ବେଦ ତୃଣଠାରୁ ବ୍ରହ୍ମ ପର୍ଯ୍ୟନ୍ତ ବିଭିନ୍ନ ଜ୍ଞାନର ଦ୍ୟୋତକ †। ମୀମାଂସା ଦର୍ଶନରେ ଲେଖାଅଛି ଯେ ପାଦବଦ୍ଧ ପଦ୍ୟର ନାମ ଋକ୍ *। ଋଗ୍‌ବେଦର ସମସ୍ତ ମନ୍ତ୍ର ପଦ୍ୟାତ୍ମକ ଋକ୍ ।

† ଋଗ୍‌ଭିଃ ଶଂସନ୍ତି । (ନିରୁକ୍ତ ୧୩,୭)

* ତେଷାମୃଗ୍ ଯତ୍ରାର୍ଥବଶେନ ପାଦବ୍ୟବସ୍ଥା । (ମୀମାଂସା ୨,୧,୩୫)



ଋଗ୍‌ବେଦରେ ଏକେଶ୍ୱର ସିଦ୍ଧାନ୍ତ ଅତ୍ୟନ୍ତ ସ୍ପଷ୍ଟ ଭାବରେ ପ୍ରତିପାଦିତ ହୋଇଛି । 'ଯସ୍ତନ୍ନ ବେଦ କିମୃଚା କରିଷ୍ୟତି' (ପୃଷ୍ଠା ୨୮)—ଯେ ତାହାଙ୍କୁ ଉପଲବ୍ଧି କରେ ନାହିଁ, ଋକ୍ ବା ଋଗ୍‌ବେଦର ମନ୍ତ୍ରରୁ ସେ କଣ ପାଇବ ? 'ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି' । (ପୃଷ୍ଠା ୪) ବିଦ୍ୱାନ୍‌ଗଣ ଏକ ସନାତନ ପରମାତ୍ମାଙ୍କୁ ବହୁ ନାମରେ କହନ୍ତି । ଐଶ୍ୱର୍ଯ୍ୟବାନ୍ ହୋଇଥିବାରୁ ସେ ଇନ୍ଦ୍ର, ସମସ୍ତଙ୍କ ସ୍ନେହ ଓ ମୃତ୍ୟୁପରେ ମଧ୍ୟ ରକ୍ଷକ ହୋଇଥିବାରୁ ସେ ମିତ୍ର, ବରଣୀୟ ଓ ଦୁଃଖନାଶକ ହେବରୁ ସେ ବରୁଣ ଇତ୍ୟାଦି ।

ଋଗ୍‌ବେଦ ତ୍ରୈତ ସିଦ୍ଧାନ୍ତର ପୋଷକ । 'ଦ୍ୱା ସୁପର୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ' । (ପୃଷ୍ଠା ୧୪)—ଜୀବାତ୍ମା ଫଳଭୋଗ କରୁଥିବା ପକ୍ଷୀସଦୃଶ; ପରମାତ୍ମା ଅଭୋକ୍ତା, ଦ୍ରଷ୍ଟା ଅନ୍ୟ ପକ୍ଷୀସଦୃଶ, ବୃକ୍ଷ ପ୍ରକୃତିସଦୃଶ ବିହାରସ୍ଥଳୀ । ପରମାତ୍ମା, ଜୀବାତ୍ମା ଓ ପ୍ରକୃତି ଏହି ପ୍ରକାରେ ସର୍ବଜ୍ଞ, ଅଳ୍ପଜ୍ଞ ଓ ଅଜ୍ଞ ନିତ୍ୟ ପଦାର୍ଥ । ପରମାତ୍ମା ଓ ଜୀବାତ୍ମା ମଧ୍ୟରେ ପିତାପୁତ୍ର, ଫଳଦାତା-ଫଳଭୋକ୍ତା ସମ୍ବନ୍ଧ ଥାଏ । 'ରେତଃ ପ୍ରଥମଂ ଯଦାସୀତ୍ ।' (ପୃଷ୍ଠା ୮)—ଜୀବମାନଙ୍କର ପୂର୍ବକର୍ମଗୁଡ଼ିକ ବୀଜ ରୂପରେ ଥାଏ; ତେଣୁ ପ୍ରଳୟ ପରେ ପୁନରାୟ ସୃଷ୍ଟିର ପ୍ରୟୋଜନ ହୁଏ ।

'ତ୍ୱଂ ହି ବିଶ୍ୱତୋମୁଖ ବିଶ୍ୱତଃ ପରିଭୂରସି ।' (ପୃଷ୍ଠା ୪୯)—ପରମେଶ୍ୱର ସର୍ବବ୍ୟାପକ । ସେ ଏକଦେଶୀ ଓ ବିକାରଗ୍ରସ୍ତ ହୋଇ ଜନ୍ମମରଣ ଭିତରେ ଜ୍ୱଳିତ ଓ ଅବତାରିତ ହୁଅନ୍ତି ନାହିଁ । ସର୍ବବ୍ୟାପୀ ହେଲେ ନିରାକାର ହେବା ଅନିବାର୍ଯ୍ୟ, କାରଣ ସାକାର ଏକଦେଶୀ ହୁଅନ୍ତି । 'ଅନ୍ୟଦୁ ଯୁଷ୍ମାକମନ୍ତରଂ ବଭୂବ' (ପୃଷ୍ଠା ୩୪)—ସେ ଜୀବଠାରୁ ଭିନ୍ନ, ପରନ୍ତୁ

ଜୀବର ଅନ୍ତଃକରଣରେ ବିରାଜମାନ । ସେ ହୃଦୟମନ୍ଦିରରେ ହିଁ ଉପଲବ୍ଧ ହୁଅନ୍ତି । ତାଙ୍କୁ ପାଇବା ପାଇଁ ଇତସ୍ତତଃ ଭ୍ରମଣ କରିବା ନିରର୍ଥକ ।

ମନୁଷ୍ୟ ପ୍ରତି ଋଗ୍‌ବେଦର ଆଶୀର୍ବାଦ—'ମନୁର୍ଭବ ଜନୟା ଦୈବ୍ୟଂ ଜନମ୍', (ପୃଷ୍ଠା ୧୮୦) ଅର୍ଥାତ୍ ମନୁଷ୍ୟ ହୁଅ ଓ ଦେବସନ୍ତାନ ଉତ୍ପନ୍ନ କର । ଆଦିସୃଷ୍ଟିର ବେଦବାଣୀରେ ପରମାତ୍ମା ମନୁଷ୍ୟକୁ ମନୁଷ୍ୟ ହେବା ପାଇଁ ଉପଦେଶ ଦେଇଛନ୍ତି; ସମ୍ପ୍ରଦାୟବାଦୀ ଅଥବା ଗୋଷ୍ଠୀବାଦୀ ହେବା ପାଇଁ ନୁହେଁ । 'ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ' ପୃଷ୍ଠା (୧୨୪)—ମୋର ଅମୃତପୁତ୍ରମାନେ କଲ୍ୟାଣବାଣୀ ଶୁଣନ୍ତୁ । 'କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍' (ପୃଷ୍ଠା ୧୯୦)—ବିଶ୍ୱକୁ ଆର୍ଯ୍ୟ ବା ଶ୍ରେଷ୍ଠ କର । ଋଗ୍‌ବେଦରେ ଭଦ୍ର, କର୍ମଠ, ଜିତେନ୍ଦ୍ରିୟ, ବୀର ମାନବକୁ ଆର୍ଯ୍ୟ କୁହାଯାଇଛି । ଆର୍ଯ୍ୟର ବିପରୀତ ଦସ୍ୟୁ । ଆଳସ୍ୟପରାୟଣ, ବିଚାରଶୂନ୍ୟ, ସ୍ୱଜବ୍ରତାବଲମ୍ବୀ, ଅମନୁଷ୍ୟକୁ ଦସ୍ୟୁ କହନ୍ତି—'ଅକର୍ମା ଦସ୍ୟୁରଭି ନୋ ଅମନ୍ତୁରନ୍ୟବ୍ରତୋ ଅମାନୁଷଃ । (ପୃଷ୍ଠା ୧୫୨)

ଋଗ୍‌ବେଦ ଯଜ୍ଞର ପତାକାକୁ ସର୍ବଦା ଉନ୍ନତ ରଖିବା ପାଇଁ ଉଦ୍‌ବୋଧନ ଦେଇଛନ୍ତି—'ଊର୍ଦ୍ଧ୍ୱଂ କୃଣ୍ୱନ୍ତ୍ୱଧ୍ୱରସ୍ୟ କେତୁମ୍' । (ପୃଷ୍ଠା ୧୬୪) । ଯଜ୍ଞ ଲୋକକଲ୍ୟାଣର ନାମ ଅଟେ । ବିଶ୍ୱରେ ପ୍ରଭୁଙ୍କ ସଂପାଦିତ ବିରାଟ ଯଜ୍ଞ ସମାହିତ ହେଉଛି—'ଅଗ୍ନେ ଯଂ ଯଜ୍ଞମଧ୍ୱରଂ ବିଶ୍ୱତଃ ପରିଭୂରସି' (ପୃଷ୍ଠା ୧୬୦) । ମନ୍ତ୍ରରେ ଯଜ୍ଞକୁ ଅଧ୍ୱର ବା ଅହିଂସକ କର୍ମ କୁହାଯାଇଛି । ବଳି, ହତ୍ୟାଦି ହିଂସାମୂଳକ କର୍ମ ଯଜ୍ଞବହିର୍ଭୂତ ଅଟେ । ପଶୁବଳି ବୈଦିକ ଯଜ୍ଞରେ କଳଙ୍କାଙ୍କିତ । କାମ, କ୍ରୋଧ, ଲୋଭ, ମୋହ,



ମଦ ଓ ମାତ୍ସର୍ଯ୍ୟ ଏହି ଦୁର୍ଗୁଣଗୁଡ଼ିକୁ ସପ୍ତମ ମଣ୍ଡଳର ଏକ ମନ୍ତ୍ରରେ (ପୃଷ୍ଠା ୧୮୮) ଯଥାକ୍ରମେ କୋକ, ମେଷ, ଗୃଧ୍ର, ଉଲୂକ, ଗରୁଡ଼ପକ୍ଷୀ ଓ ଶ୍ୱାନ ସହିତ ତୁଳନା କରାଯାଇଛି । ଏହି ପାଶବିକ ମନୋବେଗକୁ ନାଶ କଲେ ଭବ୍ୟତା ଲାଭ ହୁଏ ।

ପାର୍ଥିବ ଧନ ଏକ ସାଧନ ମାତ୍ର । ତାହାକୁ ସଦୁପଯୋଗ କରିବା ବିଧେୟ । 'କେବଳାଘୋ ଭବତି କେବଳାଦୀ' (ପୃଷ୍ଠା ୯୦)—ଏକାକୀ ଭୋଗ କରିବା ବ୍ୟକ୍ତି ଶେଷରେ ପାପକୁଡ଼ା ଆଉ କିଛି ସଂଚୟ କରେ ନାହିଁ । କର୍ମ ନ କରି ଅଥବା କର୍ମରେ ଅବହେଳା କରି ଧନସଂଗ୍ରହ କରୁଥିବା ବ୍ୟକ୍ତି ଦୋଷୀ । 'ଅନ୍ୟମନ୍ୟମୁପ ତିଷ୍ଠନ୍ତ ରାୟଃ' (ପୃଷ୍ଠା ୮୮)—ଧନ ଅସ୍ଥାୟୀ; ଜଣକ ପରେ ଜଣକ ପାଖରେ ରହେ । ସାମଗ୍ରିକ ଭାବରେ ଆମ ପରିଚାଳନାରେ ଥିବା ଧନଦ୍ୱାରା ଅନ୍ୟର ସେବା କରିବା ବିବେକୀ କାର୍ଯ୍ୟ । ସମର୍ଥ ହୋଇ ସୁଦ୍ଧା ଯେ ଦାନ କରେ ନାହିଁ ସେ କୃପଣ 'ଅପାସ୍ମାତ୍ ପ୍ରେୟାନ୍ନ ତଦୋକୋ ଅସ୍ତି' (ପୃଷ୍ଠା ୮୭)—କୃପଣ ଠାରୁ ଦୂରରେ ରହ; ତାହାର ଘର ଶ୍ମଶାନ ଅଟେ । 'ରୟିଃ ପୃଣତୋ ନୋପଦସ୍ୟତି' (ପୃଷ୍ଠା ୮୪)—ଦାନୀର ଧନ ନଷ୍ଟ ହୁଏ ନାହିଁ । ଦାନ କରି କେହି କେବେ ଦରିଦ୍ର ହୋଇନାହିଁ ।

ମାନବବାଣୀ, ମାନବ ସଂସ୍କୃତି, ଭୂମିମାତା ତିନିଦେବୀଙ୍କୁ ହୃଦୟରେ ସ୍ଥାପନ କରିବା ବିଧେୟ—'ଇଳା ସରସ୍ୱତୀ ମହୀ ତିସ୍ରୋ ଦେବୀର୍ମୟୋଭୁବଃ' (ପୃଷ୍ଠା ୬୬) । ଆଦର୍ଶ ପରିବାର, ଆଦର୍ଶ ରାଷ୍ଟ୍ର ଓ ଆଦର୍ଶ ପୃଥିବୀର ସଂଗଠନ ପାଇଁ ମାନବସୂକ୍ତ ଉପଯୋଗୀ ହେଉ । ନିଜର ତେଜ ବୃଦ୍ଧି କରିବା ଫଳରେ ବ୍ୟକ୍ତିଗତ ସ୍ୱରାଜ୍ୟ ଲାଭ ହୁଏ । ସେହିପରି ସମାଜସଂଗଠନକୁ ବଳଶାଳୀ

ଜନତା ଦ୍ୱାରା ସ୍ୱରାଜ୍ୟ ସ୍ଥାପିତ ହୁଏ । 'ତ୍ରୟୋଦ୍ୟତମ୍ ସ୍ୱରାଜ୍ୟମ' (ପୃଷ୍ଠା ୬୦)—ସ୍ୱରାଜ୍ୟସାଧନ ପାଇଁ ପ୍ରଚଣ୍ଡ ଉଦ୍ୟମ ଆବଶ୍ୟକ । ସ୍ୱରାଜ୍ୟ ଜଣକର କାର୍ଯ୍ୟ ନୁହେଁ । 'ବ୍ୟଚେଷ୍ଠେ ବହୁପାଯ୍ୟେ ଯତେମହି ସ୍ୱରାଜ୍ୟେ' (ପୃଷ୍ଠା ୭୭)—ବହୁଲୋକଙ୍କ ସଙ୍କିର୍ଣ୍ଣ ଓ ବ୍ୟାପକ ଉଦ୍ୟମରେ ଆମେ ସ୍ୱରାଜ୍ୟ ସ୍ଥାପନ କରୁଁ । ସମସ୍ତଙ୍କର ସମର୍ଥନରେ ସ୍ୱରାଜ୍ୟର ନେତା ଆସନ ଗ୍ରହଣ କରନ୍ତି । ତେଣୁ ରାଷ୍ଟ୍ରପତିଙ୍କ ଶପଥପାଠ ସମୟରେ ଋଗ୍‌ବେଦ କହିଛନ୍ତି—'ବିଶସ୍ତ୍ୱା ସର୍ବା ବାଞ୍ଛନ୍ତୁ ମା ତ୍ୱଦ୍ରାଷ୍ଟ୍ରମଧି ଭ୍ରଶତ୍' (ପୃଷ୍ଠା ୭୮)—ହେ ରାଷ୍ଟ୍ରପତି ! ସମସ୍ତ ଜନତା ତୁମକୁ ଚାହାନ୍ତୁ । ତୁମଦ୍ୱାରା ରାଷ୍ଟ୍ରଚ୍ୟୁତି ବା ରାଷ୍ଟ୍ରଭଙ୍ଗ ନ ହେଉ ।

ଋଗ୍‌ବେଦ ନାରୀକୁ ମନୁଷ୍ୟସମାଜର ନିର୍ମାତ୍ରୀ ନାମ ଦେଇଛନ୍ତି—'ସ୍ତ୍ରୀ ହି ବ୍ରହ୍ମା ବଭୂବିଥ' (ପୃଷ୍ଠା ୧୦୪) । ନାରୀର କୃପା ଓ ଆଶୀର୍ବାଦ ପାଇଁ ମାନବସମାଜ କୃତଜ୍ଞତା ପ୍ରକାଶ କରିବା ଆବଶ୍ୟକ । 'ଅହଂ କେତୁରହଂ ମୂର୍ଦ୍ଧା' (ପୃଷ୍ଠା ୧୨୮)—ନାରୀ କହନ୍ତି 'ମୁଁ ରାଷ୍ଟ୍ରର ଧ୍ୱଜାସଦୃଶ । ମୁଁ ପରିବାର ଓ ସମାଜର ମସ୍ତକରୂପା', 'ଉତାହମସ୍ମି ସଂଜୟା' (ପୃଷ୍ଠା ୧୩୦) ମୁଁ ବିଜୟିନୀ । ଋଗ୍‌ବେଦ ମାତୃଜାତିକୁ ସର୍ବୋଚ୍ଚ ସମ୍ମାନ ଦେଇଛନ୍ତି । ନାରୀ ବେଦପାଠ କରିବେ, ଯଜ୍ଞୋପବୀତ ଧାରଣ କରିବେ ଓ ଯଜ୍ଞରେ ମହତ୍ତ୍ୱପୂର୍ଣ୍ଣ ଭାଗ ଗ୍ରହଣ କରିବେ । ବିବାହସଂସ୍କାରରେ ବରଙ୍କ ସହ ସମସ୍ୱରରେ କନ୍ୟା ମନ୍ତ୍ରୋଚ୍ଚାରଣ କରନ୍ତି—'ସମଞ୍ଜନ୍ତୁ ବିଶ୍ୱେଦେବାଃ ସମାପୋ ହୃଦୟାନି ନୌ' (ପୃଷ୍ଠା ୧୩୪)—ହେ ବିଦ୍ୱାନ୍‌ଗଣ, ଆମ ଦୁହିଁଙ୍କ ହୃଦୟ ସମାନ, ଏହା ଜାଣନ୍ତୁ ।

ଋଗ୍‌ବେଦର ସୋମରସ ପାର୍ଥିବ ମାଦକରସ ନୁହେଁ । ଏହା ମାନବର ସୁପ୍ତ ଶକ୍ତିକୁ ଉଦ୍‌ବୁଦ୍ଧ କରେ । 'ଇଷ ମା ମନ୍ଦନ୍ତି......ସୁତର୍



ସୋମସ୍ୟାପାମିତି' (ପୃଷ୍ଠା ୧୪୬)—ସୋମ ବା ଶାନ୍ତ ଆତ୍ମରସ ପାନ କଲେ ମନ ପ୍ରଶସ୍ତ ହୁଏ ; ମନୁଷ୍ୟ ଜାଗ୍ରତ ହୁଏ । 'ଯୋ ଜାଗାର ତମୃଚଃ କାମୟନ୍ତେ ।' (ପୃଷ୍ଠା ୧୬୭) —ଋଗ୍‌ବେଦର ମନ୍ତ୍ର ଏଭଳି ଜାଗ୍ରତ ପୁରୁଷର ବନ୍ଧୁ ଅଟନ୍ତି ।

କେତ୍ରରୂପକ କ୍ଷେତ୍ରକୁ ଅଧିକାର କରିବା ପାଇଁ ଦୁର୍ଗୁଣ ଓ ସୁଗୁଣ ପ୍ରତ୍ୟେକ ମୁହୂର୍ତ୍ତରେ ସଂଘର୍ଷ କରନ୍ତି । 'ସଚ୍ଚାସଚ୍ଚ ବଚସୀ ପସ୍ପୃଧାତେ ।' (ପୃଷ୍ଠା ୧୭୦)—ସତ୍ୟ ଓ ଅସତ୍ୟ ବଚନ ପରସ୍ପର ସ୍ପର୍ଦ୍ଧା କରି ମାନବର ଅନ୍ତଃକରଣରେ ଅଭିନୟ କରନ୍ତି । ଦେବଯାନ ଓ ପିତୃଯାନ ଯଥାକ୍ରମେ ନିଷ୍କାମ ଓ ସକାମ ମାର୍ଗ—'ଦ୍ୱେ ସ୍ରୁତୀ ଅଶୃଣବଂ ପିତୃଣାମହଂ ଦେବାନାମୁତ ମର୍ତ୍ତ୍ୟାନାମ୍' (ପୃଷ୍ଠା ୧୬୦) । ଉଭୟ ମଧ୍ୟରେ ସତ୍ୟ ବା ନିଷ୍କାମ ମାର୍ଗକୁ ବାଛିବାର ସହଜ ଉପାୟ ହେଉଛି ଯେ ତାହା ସୃଷ୍ଟିର ଅନୁକୂଳ ସରଳ ପନ୍ଥା—'ସୁଗଃ ପନ୍ଥା ଅନୃକ୍ଷର ଆଦିତ୍ୟାସ ଋତଂ ଯତା ।' (ପୃଷ୍ଠା ୧୬୮) 'ମଧୁବାତା ଋତାୟତେ, (ପୃଷ୍ଠା ୧୭୭)—ସତ୍ୟାନୁସାରୀର ସମସ୍ତ ପରିବେଷ୍ଟନୀ ମଧୁମୟ ହୁଏ । ସୂର୍ଯ୍ୟଚନ୍ଦ୍ରଙ୍କ ସରଳ ମାର୍ଗ ସ୍ୱସ୍ତି ପନ୍ଥା ଅଟେ, ତାହା ମନୁଷ୍ୟର ଅନୁକରଣୀୟ (ପୃ. ୧୮୪) ।

'ସପ୍ତମର୍ଯ୍ୟାଦାଃ କବୟସ୍ତତକ୍ଷୁ' (ପୃ. ୧୪୮)—ଅହିଂସା, ସତ୍ୟାଦି ସପ୍ତମର୍ଯ୍ୟାଦା ମନୁଷ୍ୟତାକୁ ଧାରଣ କରି ରହିଛନ୍ତି । ଏଗୁଡ଼ିକୁ ଉଲ୍ଲଂଘନ କଲେ ମନୁଷ୍ୟ ଲାଞ୍ଛନାର ପାତ୍ର ହୋଇଯାଏ । 'ଅତପ୍ତତନୂର୍ନ ତଦାମୋ ଅଶ୍ନୁତେ' (ପୃ. ୧୬୨)—ତପଶୂନ୍ୟ ବ୍ୟକ୍ତି ମାନବତାର ଆନନ୍ଦକୁ ଲାଭ କରେ ନାହିଁ । ନିଜର ରସନାତୃପ୍ତି ପାଇଁ ଯେ ଅନ୍ୟକୁ ଗ୍ରାସ କରେ, ସେହି

ମାଂସଭକ୍ଷକର ମସ୍ତକକୁ ନିଷ୍ପିଷ୍ଟ କର (ପୃ. ୯୬)। ମଦ୍ୟପର ଅଶ୍ଳୀଳତା (ପୃ. ୯୮), ଜୁଆଖେଳର ଦୁର୍ଦ୍ଦଶା (ପୃ. ୧୦୦), ବହୁପତ୍ନୀଯୁକ୍ତ ପୁରୁଷର ଦଂଶଣ (ପୃ. ୧୦୬) ସମାଜରେ ନିକୃଷ୍ଟ ଆଦର୍ଶ ସୃଷ୍ଟି କରେ।

## ଋଗ୍‌ବେଦର ପ୍ରଥମ ଓ ଅନ୍ତିମ ମନ୍ତ୍ର

ଆଦ୍ୟ ସୃଷ୍ଟିର ମାଙ୍ଗଳିକ ବେଳାରେ ମାନବର ପଥପ୍ରଦର୍ଶନ ପାଇଁ ବେଦବାଣୀ ପ୍ରକାଶିତ ହୋଇଥିଲା। କାନ୍ତଦର୍ଶୀ ଆତ୍ମଦର୍ଶୀ ଋଷିଙ୍କ ହୃଦୟ ସର୍ବପ୍ରଥମେ ଅମ୍ଭବକାଶ ପାଇଁ ଜ୍ଞାନତରଙ୍ଗରେ ଉଦବେଳିତ ହୋଇଥିଲା। ସେତେବେଳେ ମାନବ ହୃଦୟରୁ ସର୍ବପ୍ରଥମେ ଝଂକୃତ ହୋଇଥିଲା— 'ଅଗ୍ନିମୀଳେ ପୁରୋହିତଂ' (ପୃ. ୭)। ଋଗ୍‌ବେଦର ସେହି ପ୍ରଥମ ମନ୍ତ୍ରର ଭାବନା ହେଉଛି—'ହେ ଅଗ୍ନି, ହେ ଅଗ୍ରଣୀ, ହେ ବିଶ୍ୱଚେତନା! ମୋର ପଥପ୍ରଦର୍ଶକ ହୁଅ, ମତେ ଚିନ୍ମୟ କର।'

ଋଗ୍‌ବେଦ ସୃଷ୍ଟିର ଅନନ୍ତ ତତ୍ତ୍ୱ ବୁଝାଇ ସାରିବା ପରେ ଅନ୍ତିମ ମନ୍ତ୍ରରେ ମାନବକୁ ଉଦ୍‌ବୋଧନ ଦେଇଛନ୍ତି – 'ସମାନୀ ବ ଆକୂତିଃ ସମାନା ହୃଦୟାନି ବଃ' (ପୃ. ୧୯୮)—'ହେ ମୋର ଅମୃତସନ୍ତାନଗଣ! ଜୀବସୃଷ୍ଟିରେ ତୁମକୁ ମୁଁ ଅପୂର୍ବ ଦେହ ପ୍ରଦାନ କରିଅଛି। କେବଳ ତୁମର ଦେହରେ ସଂକଳ୍ପ ଓ ସହୃଦୟତା ସ୍ଥାପନ କରିଛି। ତୁମର ମନ ସୁ ସଂକଳ୍ପ ଓ ବୁଦ୍ଧିର ଭଣ୍ଡାର। ତୁମର ହୃଦୟ ପ୍ରେମ ଓ ମୈତ୍ରୀର ଭଣ୍ଡାର। ଜ୍ଞାନ ଓ ସହୃଦୟତାକୁ ସମାନ୍ତରିତ କରି ସଂଗଠିତ ହୁଅ। ଏଥିରେ ହିଁ ତୁମର ଶ୍ରେୟ ନିହିତ ଅଛି।'



## ବୈଦିକ ଛନ୍ଦ

ଛନ୍ଦ ବେଦର ପାଦସଦୃଶ। ମନ୍ତ୍ର ଛନ୍ଦ ସାହାଯ୍ୟରେ ଗତି କରେ। ଲୌକିକ ସାହିତ୍ୟରେ କେବଳ ପଦ୍ୟରେ ଛନ୍ଦ ଥାଏ, ପରନ୍ତୁ ବେଦର ପଦ୍ୟ (ଋକ୍) ଓ ଗଦ୍ୟ (ଯଜୁଃ) ଉଭୟ ଛନ୍ଦୋବଦ୍ଧ। ମନ୍ତ୍ରରେ ଅକ୍ଷରପରିମାଣକୁ ଛନ୍ଦ କୁହାଯାଏ। * ଅକ୍ଷରସଂଖ୍ୟାର ନିୟାମକକୁ ଛନ୍ଦ କହନ୍ତି। † ମନ୍ତ୍ରର ଛନ୍ଦ ଚିହ୍ନିବା ପାଇଁ ତତ୍କାଳ ସେଥିରେ ଥିବା ଅକ୍ଷରପରିମାଣ ଜଣାପଡ଼େ।

ସଂପୂର୍ଣ୍ଣ ଋଗ୍‌ବେଦ ପଦ୍ୟାତ୍ମକ। ସାମାନ୍ୟତଃ ଗୋଟିଏ ସୂକ୍ତରେ ଥିବା ସବୁ ମନ୍ତ୍ରର ଛନ୍ଦ ଏକପ୍ରକାର ହୋଇଥାଏ। କେତେକ କ୍ଷେତ୍ରରେ ସୂକ୍ତସମାପ୍ତି ସମୟରେ ଭିନ୍ନ ଭିନ୍ନ ଛନ୍ଦର ମନ୍ତ୍ର ଦେଖାଯାଏ। ପିଙ୍ଗଳକୃତ ଛନ୍ଦସୂତ୍ର ପ୍ରାମାଣିକ ଓ ଉତ୍କୃଷ୍ଟ ଛନ୍ଦଶାସ୍ତ୍ର ଅଟେ।

ଛନ୍ଦରେ କେତୋଟି ପାଦ ଥାଏ ଓ ପାଦରେ ଅକ୍ଷର ଥାଏ। ଋଗ୍‌ବେଦୀୟ ଛନ୍ଦର ମୋଟ ଅକ୍ଷର ସଙ୍ଗେ ସଙ୍ଗେ ପ୍ରତ୍ୟେକ ପାଦର ମୋଟ ଅକ୍ଷର ସଂଖ୍ୟା ମଧ୍ୟ ସ୍ଥିର ଥାଏ। ଏଠାରେ ଅକ୍ଷର କହିଲେ ସ୍ୱର ଏବଂ ବ୍ୟଞ୍ଜନରହିତ ସ୍ୱରକୁ ବୁଝାଏ। ସ୍ୱରରହିତ ବ୍ୟଞ୍ଜନ ଛନ୍ଦଃଶାସ୍ତ୍ରରେ ଅକ୍ଷରରୂପରେ ବିବେଚିତ ହୁଏ ନାହିଁ। ନିମ୍ନରେ ଗୋଟିଏ ଉଦାହରଣ ଦିଆଯାଉଛି।

ଅଗ୍ନିମୀଳେ ପୁରୋହିତଂ ଯଜ୍ଞସ୍ୟ ଦେବମୃତ୍ୱିଜମ୍
ହୋତାରଂ ରତ୍ନଧାତମମ୍ ॥ (ଋଗ୍‌ବେଦ ୧, ୧, ୧)

* ଯଦକ୍ଷରପରିମାଣଂ ତଚ୍ଛନ୍ଦଃ। (ଋକ୍ ସର୍ବାନୁକ୍ରମଣୀ)
† ଛନ୍ଦୋଽକ୍ଷରସଂଖ୍ୟାବଚ୍ଛେଦକମୁଚ୍ୟତେ। ଅଥର୍ବ ବୃହତ୍ସର୍ବାନୁକ୍ରମଣୀ)

ଉକ୍ତ ମନ୍ତ୍ରର ପ୍ରଥମ ପାଦ 'ଅଗ୍ନିମୀଳେ ପୁରୋହିତଂ' । ଏଥିରେ ଅ, ଗ୍ନି, ମୀ, ଳେ, ପୁ, ରୋ, ହି, ତଂ ଏହି ଆଠୋଟି ଅକ୍ଷର ଅଛି । 'ଯଜ୍ଞସ୍ୟ ଦେବମୃତ୍ୱିଜମ୍' ଦ୍ୱିତୀୟ ପାଦରେ ଯ, ଜ୍ଞ, ସ୍ୟ, ଦେ, ବ, ମୃ, ତ୍ୱି, ଜମ୍ ଆଠୋଟି ଅକ୍ଷର ଅଛି । ଶେଷୋକ୍ତ ମ୍ ସ୍ୱରବର୍ଜିତ ବ୍ୟଞ୍ଜନ ହେବାରୁ ପୃଥକ୍ ଅକ୍ଷରରୂପେ ଗଣିତ ହୁଏ ନାହିଁ । 'ହୋତାରଂ ରତ୍ନଧାତମମ୍'—ତୃତୀୟ ପାଦରେ ହୋ, ତା, ରଂ, ର, ତ୍ନ, ଧା, ତ, ମମ୍ ଆଠୋଟି ଅକ୍ଷର ଅଛି । ପୂର୍ବ ପାଦ ପରି ଏଠାରେ ମଧ୍ୟ ସ୍ୱରବର୍ଜିତ ମ୍ ପୃଥକ୍ ଅକ୍ଷର ନୁହେଁ । ଏହି ପ୍ରକାରେ ଉକ୍ତ ମନ୍ତ୍ରରେ ମୋଟ ୨୪ଟି ଅକ୍ଷର ଅଛି, ତଥା ପ୍ରତ୍ୟେକ ପାଦରେ ସମାନସଂଖ୍ୟକ ଅର୍ଥାତ୍ ଆଠୋଟି ଲେଖାଏଁ ଅକ୍ଷର ଅଛି । ଏହି ଲକ୍ଷଣର ନାମ 'ଗାୟତ୍ରୀ ଛନ୍ଦ' ।

ଗାୟତ୍ରୀ ତ୍ରିପାଦ ବିଶିଷ୍ଟ ଛନ୍ଦ । ସାମାନ୍ୟତଃ ଋଗ୍‌ବେଦୀୟ ମନ୍ତ୍ରରେ ଚାରୋଟି ଲେଖାଏଁ ପାଦ ଥାଏ । କେତେକ ମନ୍ତ୍ର ଦୁଇ, ତିନ ଅଥବା ପାଞ୍ଚ ପାଦଯୁକ୍ତ ହୋଇଥାଏ । ତ୍ରିଷ୍ଟୁପ୍ ଛନ୍ଦରେ ଚାରୋଟି ପାଦ; ପ୍ରତ୍ୟେକ ପାଦରେ ୧୧ ଅକ୍ଷର ହିସାବରେ ଏହି ଛନ୍ଦରେ ୪୪ ଅକ୍ଷର ଥାଏ । ଜଗତୀ ଛନ୍ଦରେ ଚାରୋଟି ପାଦ; ପ୍ରତ୍ୟେକ ପାଦରେ ୧୨ ଅକ୍ଷର ହିସାବରେ ଏହି ଛନ୍ଦରେ ୪୮ ଅକ୍ଷର ଥାଏ । ତ୍ରିଷ୍ଟୁପ୍, ଗାୟତ୍ରୀ ଓ ଜଗତୀ ଛନ୍ଦରେ ସମସ୍ତ ଋଗ୍‌ବେଦର ପ୍ରାୟ ଦୁଇତୃତୀୟାଂଶ ମନ୍ତ୍ର ଛନ୍ଦୋବଦ୍ଧ ହୋଇଛି । ନିମ୍ନରେ ଋଗ୍‌ବେଦୀୟ ଛନ୍ଦଗୁଡ଼ିକର ନାମ, ସେଥିରେ ଥିବା ଅକ୍ଷରସଂଖ୍ୟା ତଥା ଛନ୍ଦୋବଦ୍ଧ ମନ୍ତ୍ରସଂଖ୍ୟା ପ୍ରଦତ୍ତ ହୋଇଛି ।



| ଛନ୍ଦର ନାମ | ଅକ୍ଷର ସଂଖ୍ୟା | ଛନ୍ଦର ମନ୍ତ୍ର ସଂଖ୍ୟା | ବାଲଖିଲ୍ୟ ସୂକ୍ତ |
|---|---|---|---|
| ୧ । ଗାୟତ୍ରୀ | ୨୪ | ୨୪୪୯ | ୬ |
| ୨ । ଉଷ୍ଣିକ୍ | ୨୮ | ୩୯୮ | — |
| ୩ । ଅନୁଷ୍ଟୁପ୍ | ୩୨ | ୮୫୮ | ୨ |
| ୪ । ବୃହତୀ | ୩୬ | ୩୬୧ | ୫୬ |
| ୫ । ପଙ୍କ୍ତିଃ | ୪୦ | ୪୯୮ | ୧ |
| ୬ । ତ୍ରିଷ୍ଟୁପ୍ | ୪୪ | ୪୨୫୧ | ୬ |
| ୭ । ଜଗତୀ | ୪୮ | ୧୩୪୬ | ୬ |
| ୮ । ଅତିଜଗତୀ | ୫୨ | ୧୭ | — |
| ୯ । ଶକ୍ୱରୀ | ୫୬ | ୧୯ | — |
| ୧୦ । ଅତିଶକ୍ୱରୀ | ୬୦ | ୧୦ | — |
| ୧୧ । ଅଷ୍ଟିଃ | ୬୪ | ୬ | — |
| ୧୨ । ଅତ୍ୟଷ୍ଟିଃ | ୬୮ | ୮୨ | — |
| ୧୩ । ଧୃତିଃ | ୭୨ | ୨ | — |
| ୧୪ । ଅତିଧୃତିଃ | ୭୬ | ୧ | — |
| ୧୫ । ଦ୍ୱିପଦା ଗାୟତ୍ରୀ | ୧୬ | ୩ | — |
| ୧୬ । ଦ୍ୱିପଦା ବିରାଟ୍ | ୨୦ | ୧୩୯ | — |
| ୧୭ । ଦ୍ୱିପଦା ତ୍ରିଷ୍ଟୁପ୍ | ୨୨ | ୧୫ | — |
| ୧୮ । ଦ୍ୱିପଦା ଜଗତୀ | ୨୪ | ୧ | — |
| ୧୯ । ଏକପଦା ବିରାଟ୍ | ୧୦ | ୫ | — |
| ୨୦ । ଏକପଦା ତ୍ରିଷ୍ଟୁପ୍ | ୧୧ | ୧ | — |
| | | ୧୦୪୭୨ | + ୮୦ |
| | | | =୧୦୫୫୨ |

ଛନ୍ଦରେ କେତୋଟି ଅକ୍ଷର ନ୍ୟୁନ ବା ଅଧିକ ହେଲେ ଛନ୍ଦର ନାମ-ପୂର୍ବରୁ ଏକ ବିଶେଷଣ ଦିଆଯାଏ । ଗୋଟିଏ ଅକ୍ଷର ନ୍ୟୁନ ହେଲେ ଛନ୍ଦର ନାମପୂର୍ବରେ 'ନିଚୃଦ୍' ବିଶେଷଣ ବ୍ୟବହୃତ ହୁଏ । ଏହିରୂପେ ସୁପ୍ରସିଦ୍ଧ ଗାୟତ୍ରୀ ବା ସାବିତ୍ରୀ ମନ୍ତ୍ରର ଛନ୍ଦ ନିଚୃଦ୍-ଗାୟତ୍ରୀ । କାରଣ ଏଥିରେ ୨୪ଟି ଅକ୍ଷର ସ୍ଥଳରେ ୨୩ଟି ଅକ୍ଷର ଅଛି । ଏହାର ପ୍ରଥମ ପାଦରେ ଗୋଟିଏ ଅକ୍ଷର ନ୍ୟୁନ ଅଛି । ଛନ୍ଦରେ ଗୋଟିଏ ଅକ୍ଷର ଅଧିକ ହେଲେ 'ଭୁରିକ୍' ବିଶେଷଣ ଦିଆଯାଏ, ଯଥା—ଭୁରିଗ୍ ଗାୟତ୍ରୀ । ଛନ୍ଦରେ ଦୁଇ ଅକ୍ଷର ନ୍ୟୁନ ହେଲେ 'ବିରାଟ୍' ଓ ଦୁଇ ଅକ୍ଷର ଅଧିକ ହେଲେ 'ସ୍ୱରାଟ୍' ବିଶେଷଣ ଦିଆଯାଏ, ଯଥ —ବିରାଡ୍ ଗାୟତ୍ରୀ, ସ୍ୱରାଡ୍ ଅନୁଷ୍ଟୁପ୍ ଇତ୍ୟାଦି .

## ବୈଦିକ ସ୍ୱର

'ସ୍ୱର' ଶବ୍ଦର ଅର୍ଥ ବାଣୀ, ଧ୍ୱନି, ପ୍ରାଣ, ସପ୍ତ, ପ୍ରଣବ ଇତ୍ୟାଦି । ପରନ୍ତୁ ବୈଦିକ ସ୍ୱର କହିଲେ ଉଦାତ୍ତ, ଅନୁଦାତ୍ତ ଆଦି ଉଚ୍ଚାରଣଧର୍ମକୁ ବୁଝାଏ । ବୈଦିକ ଶବ୍ଦର ଅର୍ଥ ବୁଝିବାପାଇଁ ସ୍ୱରଜ୍ଞାନ ଅଧିକ ସହାୟକ ଅଟେ । ସୁପ୍ରସିଦ୍ଧ ସ୍ୱରଶାସ୍ତ୍ରଜ୍ଞ ବେଙ୍କଟମାଧବ ଲେଖିଛନ୍ତି—"ଅନ୍ଧକାରରେ ଦୀପ ଧରି ଯାଉଥିବା ପଥିକ ଯେପରି ଝୁଣ୍ଟି ପଡ଼େନାହିଁ, ସେହିପରି ସ୍ୱରଜ୍ଞାନ ଥାଇ ଅର୍ଥ କଲେ ପାଠକର ସନ୍ଦେହ ଦୂର ହୁଏ * ।" ପୂର୍ବକାଳରେ

*ଅନ୍ଧକାରେ ଦୀପିକାଭିର୍ଗଚ୍ଛନ୍ନ ସ୍ଖଲତି କ୍ୱଚିତ୍ ।
ଏବଂ ସ୍ୱରୈଃ ପ୍ରଣୀତାନାଂ ଭବନ୍ତ୍ୟର୍ଥାଃ ସ୍ଫୁଟା ଇତି ॥
(ସ୍ୱରାନୁକ୍ରମଣୀ ୧, ୮)



ଲୌକିକ ଭାଷାରେ ମଧ୍ୟ ସ୍ୱର ପ୍ରୟୋଗ କରାଯାଉଥିଲା । ସମ୍ଭବତଃ ବ୍ୟବହାର ସୁବିଧା ନିମନ୍ତେ କାଳକ୍ରମେ ଲୌକିକ ସଂସ୍କୃତରେ ସ୍ୱରଜ୍ଞାନ ବିସ୍ମୃତ ହେଲା । ସ୍ୱରଶାସ୍ତ୍ର ବ୍ୟାକରଣର ଅଙ୍ଗ ଅଟେ । ବ୍ୟାକରଣପ୍ରୋକ୍ତ ପ୍ରକୃତିପ୍ରତ୍ୟୟ-ପ୍ରୟୋଗ କାଳ୍ପନିକ ହେବା ସ୍ଥଳେ ସ୍ୱରବିଦ୍ୟା ନିତ୍ୟ ଅଟେ । ଏହା ବର୍ଣ୍ଣ ବା ଅକ୍ଷରର ମୁଖ୍ୟ ଧର୍ମ । ବର୍ଣ୍ଣ ଦୁଇ ପ୍ରକାର—ସ୍ୱର ଓ ବ୍ୟଞ୍ଜନ । ବ୍ୟଞ୍ଜନ ସ୍ୱର ସହାୟତାରେ ଉଚ୍ଚାରିତ ହୁଏ । ତେଣୁ ଉଚ୍ଚାରଣ ପ୍ରଣାଳୀ ସ୍ୱରବର୍ଣ୍ଣରେ ହିଁ ଥାଏ ।

ବୈଦିକ ସ୍ୱରକୁ ବିଭିନ୍ନ ପ୍ରକାରେ ବିଭାଜନ କଲେ ମଧ୍ୟ ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ଭେଦ ହିଁ ମୁଖ୍ୟ । ଶବ୍ଦାର୍ଥ ସହିତ ଉକ୍ତ ତିନି ସ୍ୱରର ସାକ୍ଷାତ୍ ସମ୍ବନ୍ଧ ରହିଛି । ଶବ୍ଦାର୍ଥ ପ୍ରକ୍ରିୟାରେ ତିନିସ୍ୱର ମଧ୍ୟରେ ଉଦାତ୍ତ ସ୍ୱର ଅଧିକ ପ୍ରଭାବଶାଳୀ । ତିନି ସ୍ୱରର ଲକ୍ଷଣ ଓ ଉଚ୍ଚାରଣ-ବିଧି ବିଭିନ୍ନ ଗ୍ରନ୍ଥରେ ନିର୍ଦ୍ଦିଷ୍ଟ ଅଛି । ମୁଖର କୌଣସି ସ୍ଥଳରୁ ଉଚ୍ଚ ସ୍ୱରରେ ଉଚ୍ଚାରଣକୁ ଉଦାତ୍ତ କୁହାଯାଏ* । ସ୍ୱରର ରୁକ୍ଷତା, କଣ୍ଠର ସଙ୍କୋଚ, ଦେହର ଅଙ୍ଗଗୁଡ଼ିକର ଦୃଢ଼ତା ଓ ବାୟୁର ଊର୍ଦ୍ଧ୍ୱଗମନରୁ ଉଦାତ୍ତ ସ୍ୱର ଉଚ୍ଚାରିତ ହୁଏ । ମୁଖର କୌଣସି ସ୍ଥଳରୁ ନୀଚ ସ୍ୱରରେ ଉଚ୍ଚାରଣକୁ ଅନୁଦାତ୍ତ କୁହାଯାଏ† । ସ୍ୱରର ମୃଦୁତା, କଣ୍ଠର ବିକାଶ, ଦେହର ଅଙ୍ଗଗୁଡ଼ିକର ଶିଥିଳତା ଓ ବାୟୁର ଅଧୋଗମନରୁ ଅନୁଦାତ୍ତ ସ୍ୱର ଉଚ୍ଚାରିତ ହୁଏ । ଉଦାତ୍ତ ଅନୁଦାତ୍ତର ମିଶ୍ରିତ ଉଚ୍ଚାରଣକୁ ସ୍ୱରିତ କୁହାଯାଏ । (★)

* ଉଚ୍ଚୈରୁଦାତ୍ତଃ (ଅଷ୍ଟାଧ୍ୟାୟୀ ୧, ୨, ୨୯)
† ନୀଚୈରନୁଦାତ୍ତଃ । (ଅଷ୍ଟା ୧, ୨, ୩୦)
(★) ସମାହାରଃ ସ୍ୱରିତଃ । (ଅଷ୍ଟା ୧, ୨, ୩୧)

ଉଦାତ୍ତାଦି ସ୍ୱରର ସଙ୍କେତ ବା ଚିହ୍ନ ଭାଲକର । ଭିନ୍ନ ଆର୍ଷ ଗ୍ରନ୍ଥଭେଦରେ ବିଭିନ୍ନପ୍ରକାର ପ୍ରଣାଳୀ ଅନୁସରଣ କରନ୍ତି । ପରନ୍ତୁ ଅଧିକାଂଶ ସ୍ୱରଶାସ୍ତ୍ରଙ୍କ ମତ ଏଠାରେ ଉଲ୍ଲେଖ କରାଯାଉଛି । ଉଦାତ୍ତ ସ୍ୱରଯୁକ୍ତ ଅକ୍ଷର ଉପରେ କୌଣସି ଚିହ୍ନ ଦିଆଯାଏ ନାହିଁ, ଯଥା—ଅଗ୍ନିମ ଏଠାରେ 'ଗ୍ନି' ଉପରେ ଚିହ୍ନ ନାହିଁ; ତେଣୁ 'ଗ୍ନି'ର 'ଇ' ସ୍ୱରକୁ ଉଦାତ୍ତ ବୁଝିବାକୁ ହେବ । ଅନୁଦାତ୍ତ ସ୍ୱରଯୁକ୍ତ ଅକ୍ଷରର ତଳଭାଗରେ ଏକ ରେଖା '—' ଦିଆଯାଏ । ଉପର୍ଯ୍ୟୁକ୍ତ 'ଅଗ୍ନିମ୍' ପଦରେ ରେଖାଙ୍କିତ 'ଅ' ଅନୁଦାତ୍ତ ଅଟେ । ସ୍ୱରିତ ସ୍ୱରଯୁକ୍ତ ଅକ୍ଷର ଉପରେ ଏକ ଲମ୍ବ '।' ନିର୍ଦ୍ଦିଷ୍ଟ ହୁଏ । 'ଅଗ୍ନିମୀଳେ' ମନ୍ତ୍ରାଂଶରେ 'ମୀ'ର 'ଈ' ସ୍ୱର ସ୍ୱରିତ ଅଟେ ।

ବୈଦିକ ସ୍ୱର ଯଥାବିଧି ଉଚ୍ଚାରିତ ହେଲେ ଉଚ୍ଚାରଣକର୍ତ୍ତା ଓ ଶ୍ରୋତା ଉଭୟେ ସ୍ୱରଜ୍ଞାନ ସାହାଯ୍ୟରେ ପଦର ଠିକ୍ ଅର୍ଥ ବୁଝନ୍ତି । ଅନ୍ୟ ପକ୍ଷରେ ସ୍ୱରର ବିକୃତ ଉଚ୍ଚାରଣରୁ ଭ୍ରାନ୍ତି ଜାତ ହୁଏ । ନିମ୍ନରେ ଦୁଇଟି ଉଦାହରଣ ଦିଆଯାଉଛି ।

'ଭ୍ରାତୃବ୍ୟସ୍ୟ ବଧାୟ' (ଯଜୁଃ ୧, ୧୮) । ଏଠାରେ 'ଭ୍ରାତୃବ୍ୟ' ଶବ୍ଦ ଆଦ୍ୟୁଦାତ୍ତ ହେଲେ ଅର୍ଥାତ୍ 'ଭ୍ରା' ଅକ୍ଷରର 'ଆ' ସ୍ୱର ଉଦାତ୍ତ ହେଲେ ଶବ୍ଦର ଅର୍ଥ ହୁଏ 'ଶତ୍ରୁ' । ଅନ୍ତସ୍ୱରିତ ହେଲେ ଅର୍ଥାତ୍ 'ବ୍ୟ' ଅକ୍ଷରର 'ଅ' ସ୍ୱର ସ୍ୱରିତ ହେଲେ ଶବ୍ଦର ଅର୍ଥ ହୁଏ 'ଭ୍ରାତୃପୁତ୍ର' । ସ୍ୱରର ଯଥୋଚିତ ଉଚ୍ଚାରଣ ନ କଲେ 'ଶତ୍ରୁକୁ' ମାରିବା ବଦଳରେ 'ପୁତୁରା'କୁ ମାରିବା ଅର୍ଥ ହୁଏ । କୌଣସି ଲୋଭୀ ଲୋକ ଉକ୍ତ ବେଦମନ୍ତ୍ରର ଉଦାହରଣ ଦେଇ ପୁତୁରାର ଦାୟାଦ ସମ୍ପତ୍ତି ହରଣ କରିବା ବେଦସମ୍ମତ କହିପାରେ । ସ୍ୱରର ସ୍ପଷ୍ଟ ଉଚ୍ଚାରଣ ଧୀରେ ଧୀରେ ଲୁପ୍ତପ୍ରାୟ ହେବା ଦେଖି କେତେକ ଶାସ୍ତ୍ରକାର 'ଭ୍ରାତୃବ୍ୟସ୍ୟ' ସ୍ଥଳରେ 'ଦ୍ୱିଷତଃ' (ଅର୍ଥାତ୍ ଶତ୍ରୁର) ପାଠ ପଢ଼ିବା



ଆରମ୍ଭ କଲେ ଯଦ୍ୱାରା ପରବର୍ତ୍ତୀ କାଳରେ ସ୍ୱରଜ୍ଞାନର ଅଭାବରୁ ପାଠକ ଅର୍ଥ ବୁଝିବାରେ ଭୁଲ କରିବେ ନାହିଁ ।

'ନତସ୍ୟପ୍ରତିମା ଅସ୍ତି' (ଯଜୁଃ ୩୨, ୩) । ଏହାର ପଦପାଠ— 'ନ ତସ୍ୟ ପ୍ରତିମା ଅସ୍ତି' ଅଥବା 'ନତସ୍ୟ ପ୍ରତିମା ଅସ୍ତି' ହୋଇପାରେ । ପ୍ରଥମ ପାଠର ଅର୍ଥ 'ତାଙ୍କର (ପ୍ରଭୁଙ୍କର) ପ୍ରତିମା (ମୂର୍ତ୍ତି) ନାହିଁ' । ଦ୍ୱିତୀୟ ପାଠର ଅର୍ଥ '(ଭକ୍ତଙ୍କ ପ୍ରତି) ନମିତ ହେଉଥିବା ପ୍ରଭୁଙ୍କର ପ୍ରତିମା (ମୂର୍ତ୍ତି) ଅଛି' । ଏଠାରେ ସ୍ୱରଜ୍ଞାନ ସାହାଯ୍ୟରେ ସନ୍ଦେହ ଦୂର କରାଯାଇପାରେ । ସ୍ୱରଶାସ୍ତ୍ର ଅନୁସାରେ 'ତବୈ' ପ୍ରତ୍ୟୟାନ୍ତ ଓ 'ବନସ୍ପତି' ଆଦି କେତେକ ପଦ ବ୍ୟତୀତ ଅନ୍ୟ ସମସ୍ତ ସ୍ଥଳରେ ଗୋଟିଏ ପଦରେ ଗୋଟିଏ ମାତ୍ର ଉଦାତ୍ତ ସ୍ୱର ଥାଏ । 'ନତସ୍ୟ' ପଦରେ 'ନ' ଓ 'ତ'ରେ ଉଦାତ୍ତ ସ୍ୱର ଅଛି । ଉଲ୍ଲିଖିତ ନିୟମାନୁସାରେ ଏହା ସମ୍ଭବ ନୁହେଁ । ତେଣୁ ସ୍ୱର ଦୃଷ୍ଟିରୁ 'ନ' ଓ 'ତସ୍ୟ' ଦୁଇଟି ପୃଥକ୍ ଶବ୍ଦ । 'ନ ତସ୍ୟ' ଠିକ୍ ଓ 'ନତସ୍ୟ' ଭୁଲ । ଅତଏବ ପ୍ରଥମପ୍ରକାର ପାଠହିଁ ଗ୍ରହଣୀୟ ।

ସମାନ-ଅକ୍ଷରବିଶିଷ୍ଟ ପଦମାନଙ୍କରେ ସ୍ୱରଭେଦରେ ଅର୍ଥପରିବର୍ତ୍ତନ ହୁଏ । ଏଠାରେ କେତୋଟି ଉଦାହରଣ ଦିଆଯାଉଛି —

| ଶବ୍ଦ | ଅର୍ଥ | ଶବ୍ଦ | ଅର୍ଥ |
|---|---|---|---|
| ଜଠରଃ | ଅଗ୍ନି | ଜ୍ୟେଷ୍ଠଃ | ପ୍ରଶଂସନୀୟ |
| ଜଠରଃ | ଉଦର | ଜ୍ୟେଷ୍ଠଃ | ବୟସାଧିକ |

| | | | |
|---|---|---|---|
| ସତ୍ୟମ୍ | ସତ୍ୟ | ଭୂଷାଳଃ | ଧର୍ମିଷ୍ଠା |
| ସତ୍ୟମ୍ | ଦାରିଦ୍ର୍ୟ | ଭୂଷଣଃ | ମାତ |

ପ୍ରାଚୀନ ସଞ୍ଜନୁଷ୍ଠାନରେ ସ୍ୱରଶାସ୍ତ୍ରକୁ ପ୍ରାଧାନ୍ୟ ଦିଆଯାଉଥିଲା । ବେଦମନ୍ତ୍ର ସସ୍ୱର ପାଠ କରାଯାଉଥିଲା । ସ୍ୱରସଂପନ୍ନ ବାଣୀରେ ଋତ୍ୱିକ୍ ଯଜ୍ଞ କରିବେ । ✳ ସ୍ୱରଦୋଷ ହେଲେ ବାଗ୍‌ରୂପୀ ବଜ୍ର ଯଜମାନଙ୍କୁ ନଷ୍ଟ କରେ । † ପରବର୍ତ୍ତୀ କାଳରେ ସ୍ୱରପାଠ ଶିଥିଳ ହୋଇପଡ଼ିଲା । ବେଦ ସ୍ୱରବର୍ଜିତ ହୋଇଯିବ— ଏହି ଆଶଂକାରେ ବେଦାଚାର୍ଯ୍ୟମାନେ ହସ୍ତାଦି ଅଙ୍ଗ ଚାଳନା କରି ଅର୍ଥାତ୍ ବେଦପାଠରେ ବର୍ଣ୍ଣୋଚ୍ଚାରଣ ସମୟରେ ହାତକୁ ଉପରତଳ କରି ଉଦାତ୍ତ ପ୍ରଭୃତି 'ସ୍ୱରପ୍ରଦର୍ଶନ' ପରିପାଟୀ ଆରମ୍ଭ କଲେ । ★

## ପଦପାଠ

ସଂହିତା ପାଠରୁ ପଦପାଠ କରିବା ବେଦର ପ୍ରଥମ ବ୍ୟାଖ୍ୟାନ ଅଟେ । ପଦପାଠରେ ସଂହିତା ବା ବେଦମଂତ୍ରରେ ଥିବା ପଦଗୁଡ଼ିକୁ ପୃଥକ୍ ପୃଥକ୍ ପଦ କରି ପଢ଼ାଯାଏ । ମନ୍ତ୍ରରେ ପଦଗୁଡ଼ିକ ଏକ ପ୍ରବାହ ମଧ୍ୟରେ ରହିଥାଏ । କାରଣ ସନ୍ଧି ହେତୁ ମଂତ୍ରରେ ସେମାନଙ୍କର ସ୍ୱର ଓ ରୂପ ପରିବର୍ତ୍ତିତ ହୁଏ ।

✳ ବାଚ ସ୍ୱରମିଚ୍ଛେତ୍ । (ଶତପଥ ୧୪, ୪, ୧, ୨୭)

† ସ ବାଗ୍‌ବଜ୍ରୋ ଯଜମାନଂ ହିନସ୍ତି । (ପାଣିନୀୟ ଶିକ୍ଷା)

★ ହସ୍ତେନ ତେ । (ବାଜସନେୟି ପ୍ରାତିଶାଖ୍ୟ ୧, ୧୨୧)



ପଦପାଠ ବେଳେ ପାରମ୍ପରିକ ପ୍ରଭାବ ଦୂର ହୁଏ; ପଦଗୁଡ଼ିକ ମୁକ୍ତ ହୋଇଯାନ୍ତି । ଶାକଲ୍ୟ ପ୍ରଥମ ପଦପାଠକର୍ତ୍ତା ରୂପେ ପ୍ରସିଦ୍ଧ । ତାଙ୍କ ପରେ ଅନ୍ୟାନ୍ୟ ପଦକାରମାନେ ପଦପାଠ କରିଛନ୍ତି ।

ଏଠାରେ ପଦପାଠର କେତୋଟି ଉଦାହରଣ ଦିଆଯାଉଛି—

| ସଂହିତା ବା ମଂତ୍ର ପାଠ | ପଦପାଠ |
|---|---|
| (କ) ଅଗ୍ନିମୀଳେ (ଋକ୍ ୧,୧,୧) | ଅଗ୍ନିମ୍ । ଈଳେ |
| (ଖ) ଅଥାଂ ଦ୍ରେ (ଋକ୍ ୧,୪,୩) | ଅଥ । ଦ୍ରେ । |
| (ଗ) ସଂ ବଦନ୍ତୀ (ଋକ୍ ୨,୧,୮) | ସମ୍ । ବଦନ୍ତୀ ଇତ । |
| (ଘ) ସୂପାୟନୋ ଭବ (ଋକ୍ ୧,୧,୯) | ସୁ । ଉପ । ଅୟନଃ । ଭବ । |
| (ଙ) ପକ୍ୱମନ୍ତଃ ପସ୍ୱଃ (ଋକ୍ ୧,୬୨,୭) | ପକ୍ୱମ୍ । ଅନ୍ତରିତ । ପସ୍ୱଃ । |

ପ୍ରଥମ ଉଦାହରଣରେ 'ଅଗ୍ନିଂ' ଓ 'ଇଳେ' ପଦ ମିଶି ସଂହିତା ପାଠରେ ଅଗ୍ନିମୀଳେ ହୋଇଛି । 'ଅଗ୍ନିଂ' ପଦର 'ଗ୍ନିଂ'ରେ ଥିବା 'ଇ' କାର ଉଦାତ୍ତ ସ୍ୱର । 'ଈଳେ' ପଦର 'ଈ' ଅନୁଦାତ୍ତ ସ୍ୱର । ନିୟମାନୁସାରେ ଉଦାତ୍ତ ପରବର୍ତ୍ତୀ ଅନୁଦାତ୍ତ ସଂହିତାପାଠରେ ସ୍ୱରିତ ହୋଇଯାଏ । ତେଣୁ ସଂହିତା-ପାଠରେ 'ମୀ' ସ୍ୱରିତ ସ୍ୱର ଗ୍ରହଣ କରିଛି । ପରବର୍ତ୍ତୀ 'ଳେ' ପଦରେ ଦ୍ୱିବା

‘ଏ’ ସ୍ୱର ମଧ୍ୟ ଅନୁଦାତ୍ତ ହୁଏ । ପଦପାଠ ସମୟରେ ପଦଗୁଡ଼ିକ ସଂହିତାରୁ ମୁକ୍ତ ହେବାବେଳେ ନିଜ ନିଜ ସ୍ୱରକୁ ଗ୍ରହଣ କରି ନିଅନ୍ତି । ଦ୍ୱିତୀୟ ଉଦାହରଣରେ ପଦପାଠରେ ସ୍ୱରପରିବର୍ତ୍ତନ ସଙ୍ଗେ ସଙ୍ଗେ ସଂହିତାରେ ଦୀର୍ଘ ହୋଇ ରହିଥିବା ‘ଅଥା’ ପଦର ‘ଥା’ର ‘ଆ’ ସ୍ୱର ପଦପାଠରେ ହ୍ରସ୍ୱ ହୋଇଯାଏ, ଅର୍ଥାତ୍ ‘ଅଥା’ ପଦ ସ୍ୱାଭାବିକ ‘ଅଥ’ ହୋଇଯାଏ । ତୃତୀୟ ଉଦାହରଣ ପ୍ରଗୃହ୍ୟ-ସଂବନ୍ଧୀ ନିୟମ ଅଟେ । ଈ, ଊ ଇତ୍ୟାଦି ଦ୍ୱିବଚନାନ୍ତ, ଏ-ପ୍ରତ୍ୟୟାନ୍ତ ଆଦି ପ୍ରଗୃହ୍ୟ ଅଟନ୍ତି, ଯଥା—ଅଗ୍ନୀ, ବାୟୂ, ଅସ୍ମେ ଇତ୍ୟାଦି । ପଦପାଠ ସମୟରେ ପ୍ରଗୃହ୍ୟସଂଜ୍ଞକ ପଦ ପରେ ‘ଇତି’ ଶବ୍ଦ ପ୍ରୟୋଗ କରାଯାଏ । ଯେଣୁ ‘ରୋଦସୀ’ ସଂହିତା ପାଠକୁ ପଦପାଠ କରିବାବେଳେ ‘ରୋଦସୀ ଇତି’ ପଢ଼ା ଯାଇଛି । । ଚତୁର୍ଥ ଉଦାହରଣ ଅବଗ୍ରହବିଷୟକ । ସଂହିତାପାଠ ‘ସୁପାୟନୋ’ ପଦପାଠରେ ‘ସୁଽଉପାୟନଃ’ ହୋଇଛି । ‘ସୁ’ ଉପସର୍ଗ ଓ ‘ଉପାୟନଃ’ ପଦମଧ୍ୟରେ ଅବଗ୍ରହ ଚିହ୍ନ (ଽ) ଦିଆଯାଇଛି । ଅବଗ୍ରହ ସ୍ୱଳ୍ପବ୍ୟବଧାନର ସୂଚକ ଅଟେ । ପଞ୍ଚମ ଉଦାହରଣ ରେଫିତ-ସଂବନ୍ଧୀ ନିୟମ । ସଂହିତାପାଠର ବିସର୍ଗ (ଃ) ପଦପାଠରେ ‘ର୍’ କିମ୍ବା ‘ସ୍’ ହେବ, ତାହା ଜାଣିବା ପାଇଁ ଉକ୍ତ ନିୟମ ରଚିତ ହୋଇଛି । ସଂହିତାପାଠର ‘ପକ୍ଷ୍ମନ୍ତଃ’ ପଦପାଠରେ ‘ପକ୍ଷ୍ମ୍ । ଅନ୍ତରିତି’ ଭାବରେ ପଢ଼ା ଯାଇଛି ।

ସଂହିତାରେ ଥିବା ସନ୍ଧିଯୁକ୍ତ ପଦଗୁଡ଼ିକୁ ପଦପାଠରେ ପୃଥକ୍ ପୃଥକ୍ ପଦ କରି ପଢ଼ିବାବେଳେ କେତେକ ସ୍ଥଳରେ ଭିନ୍ନ ଭିନ୍ନ ମତ ପ୍ରକାଶ ପାଏ । ପଦପାଠୀ ଅର୍ଥକୁ ମନରେ ରଖି ପ୍ରକରଣ ଅନୁସାରେ ପଦଚ୍ଛେଦ କରନ୍ତି । ଉଦାହରଣ ସ୍ୱରୂପ, ‘ମସକୃତ୍’ ପଦକୁ କେହି ‘ମା-ସକୃତ୍’ ଓ କେହି କେହି ‘ମାସକୃତ୍’ ପଢ଼ିଛନ୍ତି । ଶାକଲ୍ୟ ପ୍ରଥମ



ପ୍ରକାରେ ଓ ଯାସ୍କ ଦ୍ୱିତୀୟ ପ୍ରକାରେ ବ୍ୟାଖ୍ୟାନ କରିଛନ୍ତି । ‘ମା-ସକୃତ୍’ର ଅର୍ଥ ଉଦନାହିଁ ଓ ‘ମାସ-କୃତ୍’ର ଅର୍ଥ ଚନ୍ଦ୍ରମା । †

## ବୈଦିକ ବ୍ୟାକରଣ

ବୈଦିକ ଭାଷାର କେତେକ ସ୍ଥଳରେ ଲୌକିକ ବ୍ୟାକରଣର ନିୟମଗୁଡ଼ିକୁ ଉପେକ୍ଷା କରାଯାଇଛି । ପାଣିନୀୟ ବ୍ୟାକରଣ ମୁଖ୍ୟତଃ ଲୌକିକ ଶାସ୍ତ୍ର ପାଇଁ ପ୍ରଯୁଜ୍ୟ । କେବଳ ବ୍ୟାକରଣ ଆଶ୍ରୟରେ ବେଦାର୍ଥ କରି କେହି ସଫଳ ହେବ ନାହିଁ । ବ୍ୟାକରଣ ଓ ନିରୁକ୍ତର ସମନ୍ୱୟରେ ବେଦଭାଷ୍ୟ କରାଯାଏ । ‘ବ୍ୟାକରଣ’ ଶବ୍ଦନିରୂପଣ ଶାସ୍ତ୍ର ଓ ‘ନିରୁକ୍ତ’ ଅର୍ଥ-ନିର୍ବଚନ ଶାସ୍ତ୍ର । ପାଣିନି ଅଷ୍ଟାଧ୍ୟାୟୀରେ ଲେଖିଛନ୍ତି—

“ବ୍ୟତ୍ୟୟୋ ବହୁଳମ୍ ।” (ଅଷ୍ଟାଧ୍ୟାୟୀ ୩,୧,୮୫)

ଉପର୍ଯ୍ୟୁକ୍ତ ସୂତ୍ରର ବ୍ୟାଖ୍ୟାନରେ ପତଞ୍ଜଳି ମହାଭାଷ୍ୟରେ ଲେଖିଛନ୍ତି, ‘ବୈଦିକ ଭାଷାର ଅନେକ ସ୍ଥଳରେ ବିଭକ୍ତି, କ୍ରିୟାର ଶପ୍ ପ୍ରଭୃତି ପ୍ରତ୍ୟୟ, ଆତ୍ମନେ-ପରସ୍ମୈପଦ, ନପୁଂସକ ଓ ସ୍ତ୍ରୀଲିଙ୍ଗ, ଉତ୍ତମ-ମଧ୍ୟମ-ପ୍ରଥମ ପୁରୁଷ, ଲଟ୍ ଆଦି ଲକାର, ବ୍ୟଞ୍ଜନ, ଅ ଆଦି ସ୍ୱରବର୍ଣ୍ଣ, ଉଦାତ୍ତ ଆଦି ସ୍ୱର, କାରକ, ଗଣ ଆଦି ପ୍ରୟୋଗରେ ଲୌକିକ ଭାଷାର ନିୟମ ପ୍ରଯୁଜ୍ୟ ନୁହେଁ ।

ଯାସ୍କ ନିରୁକ୍ତରେ କହିଛନ୍ତି—‘ଅର୍ଥନିତ୍ୟଃ ପରୀକ୍ଷେତ ଯଥାର୍ଥ ବିଭକ୍ତୀଃ ସନ୍ନମୟେତ୍” ଅର୍ଥାତ୍ ଅର୍ଥ ମୁଖ୍ୟ ଅଟେ; ଅର୍ଥର ସଙ୍ଗତିରୁ ବିଭକ୍ତି ବୁଝିବାକୁ

---

† ଏବଂ ଚ କୃତ୍ୱା ବୃକୋ ମାସକୃଦିତ୍ୟବଗ୍ରହଭେଦେଽପି ଭବତି ଚନ୍ଦ୍ରମାଃ ପ୍ରବୃତ୍ତେ ମାସଶବ୍ଦୋଽବଗୃହ୍ୟତେ, ବୃକୋମା ସକୃଦିତି ॥ (ଭର୍ତୃହରି ମହାଭାଷ୍ୟ ଟୀକା)

ହେବ । ଲୌକିକ ବ୍ୟାକରଣରେ ବିଭକ୍ତିର ଭିନ୍ନ ଅର୍ଥ ହୋଇପାରେ । ଲୌକିକ ପଣ୍ଡିତମାନେ 'ବ୍ୟତ୍ୟୟ' ଅର୍ଥାତ୍ ବେଦଭାଷ୍ୟରେ ଲୌକିକ ନିୟମର ବ୍ୟତିକ୍ରମ ବିଷୟ ନ ବୁଝି ବେଦାର୍ଥରେ ପ୍ରବୃତ୍ତ ହେଲେ, ବେଦମନ୍ତ୍ରକୁ ଭୁଲ୍ କରି ଭାଷ୍ୟାନ୍ତର ଟିପ୍ପଣୀ ଦେବେ । ନିମ୍ନରେ ବୈଦିକ ବ୍ୟାକରଣର କେତେକ ବୈଶିଷ୍ଟ୍ୟ ଉଲ୍ଲେଖ କରାଯାଉଛି । †

ବେଦରେ ସ୍ୱରସନ୍ଧିରେ ଅନେକ ସମୟରେ ସନ୍ଧିର ଅଭାବ ଦେଖାଯାଏ । ଯଥା —'ବିଶ୍ୱେ ଅଧି,' 'ବରୁଣସ୍ୟ ଅଗ୍ନେଃ', 'ଯୋ ଅନ୍ତରିକ୍ଷମ୍', 'ସୋ ଅଗ୍ନିଃ' ଇତ୍ୟାଦି । ବ୍ୟଞ୍ଜନସନ୍ଧିରେ ପଦାନ୍ତ ଅନ୍ 'ଆଁ' ହୋଇଯାଏ, ଯଥା— 'ଦେବାଁ ଅକଲ୍ପୟନ୍' । ପାଦପୂର୍ତ୍ତି ପାଇଁ ସନ୍ଧି ହୁଏ, ଯଥା— 'ସେତ' (ସଃ ଇତ) । କେବେ କେବେ ଅନ୍ତଃସନ୍ଧିରେ ନିୟମ ବାହ୍ୟ ସନ୍ଧିରେ ମଧ୍ୟ ବ୍ୟବହୃତ ହୁଏ, ଯଥା —'ମୋ ଷୁ ବରୁଣ' । ଏଠାରେ ଗୋଟିଏ ପୃଥକ୍ ପଦ 'ସୁ' ପୂର୍ବବର୍ତ୍ତୀ 'ମୋ' ଶବ୍ଦର 'ଓ' ହେତୁରୁ 'ଷୁ' ହୋଇଛି ।

ବୈଦିକ ବିଭକ୍ତି ସମ୍ପନ୍ନ ଓ ବହୁରୂପୀ । ତୃତୀୟା ବିଭକ୍ତି ଏକବଚନରେ ଯଜ୍ଞ ଶବ୍ଦରୂପେ ଯଜ୍ଞେନ ଓ ଯଜ୍ଞା, ମନୀଷାର ମନୀଷୟା ଓ ମନୀଷା, ମନ୍ତୁମନ୍ତ୍ର ମନ୍ତ୍ରା, ଷଷ୍ଠୀ ବିଭକ୍ତି ଏକ ବଚନରେ ମଧୁର ମଧ୍ୱଃ, ସପ୍ତମୀ ବିଭକ୍ତିରେ ଅଗ୍ନା, ବେଦୀ ଇତ୍ୟାଦିର ପ୍ରୟୋଗ ଦେଖାଯାଏ । ପ୍ରଥମ ଓ ଦ୍ୱିତୀୟା ବିଭକ୍ତି ଦ୍ୱିବଚନରେ ଅଶ୍ୱିନା, ଦ୍ୟାବା, ଦ୍ୱାରା, ନଦ୍ୟା, ପ୍ରଭୃତିର ବ୍ୟବହାର ମିଳେ ।

† ସୁପ୍-ତିଙ୍-ଉପଗ୍ରହ-ଲିଙ୍ଗ-ନରାଣାଂ କାଳ-ହଲ୍-ଅଚ୍ସ୍ୱର-କର୍ତ୍ତୃ-ଯଙ୍ଗାଞ୍ଚ ।
ବ୍ୟତ୍ୟୟମିଚ୍ଛତି ଶାସ୍ତ୍ରକୃଦେଷାଂ ସୋଽପି ଚ ସିଧ୍ୟତି ବାହୁଲକେନ ॥
( ମହାଭାଷ୍ୟ )



ଅସୃକ୍ ଓ ସୁହୃଦ୍ ଶବ୍ଦର ଦ୍ୱି ବଚନରେ ଯାହୋଟି ବିଭକ୍ତିର ରୂପ ମିଳେ । ପ୍ରଥମା ବିଭକ୍ତି ବହୁବଚନରେ ଅସାସଃ, ଜନାସଃ, ସୁଖାସଃ, ଦେବାଃ, ପୃଥିବୀଃ, ଭୁବନାନି ଇତ୍ୟାଦି; ତୃତୀୟା ବିଭକ୍ତିରେ ଯଦେଭିଃ, ଦେବେଭିଃ ଇତ୍ୟାଦି ପ୍ରୟୋଗ ଦୃଷ୍ଟିଗୋଚର ହୁଏ ।

ଶବ୍ଦରୂପରେ କେତେକ ପ୍ରଭେଦ ପରିଲକ୍ଷିତ ହୁଏ । ଉଦାହରଣ-ସ୍ୱରୂପ, ତନୂ ଶବ୍ଦ ନିମ୍ନପ୍ରକାରେ ବେଦର ବିଭିନ୍ନ ସ୍ଥଳରେ ବ୍ୟବହୃତ ହୋଇଛି ।

| ପ୍ରଥମା | ତନୂଃ | ତନ୍ୱା | ତନ୍ୱଃ |
|---|---|---|---|
| ସଂବୋଧନ | — | ତନ୍ୱ | — |
| ଦ୍ୱିତୀୟା | ତନୂମ୍ | ତନ୍ୱ | ତନ୍ୱଃ |
| ତୃତୀୟା | ତନ୍ୱା | — | — |
| ଚତୁର୍ଥୀ | ତନ୍ୱା | — | — |
| ପଞ୍ଚମୀ | ତନ୍ୱଃ | — | — |
| ଷଷ୍ଠୀ | — | — | ତନୂନାମ୍ |
| ସପ୍ତମୀ | ତନ୍ୱୀ | — | — |

ପାଣିନି ଅଷ୍ଟାଧ୍ୟାୟୀରେ ଉଲ୍ଲେଖ କରିଛନ୍ତି—

'ଛନ୍ଦସି ଲୁଙ୍ ଲଙ୍ ଲିଟଃ' ଅର୍ଥାତ୍ ସବୁକାଳରେ ଲୁଙ୍, ଲଙ୍ ଓ ଲିଟ୍ ଲ-କାର ପ୍ରଯୁକ୍ତ ହୋଇଛି । ଉଦାହରଣ ସ୍ୱରୂପ, 'ଅମନ୍ୟମାନାଞ୍ଛର୍ବା ଜଘାନ' —ଏଥିରେ ଲିଟ୍ ବର୍ତ୍ତମାନ କାଳରେ, 'ଅତ୍ୟତିଷ୍ଠଦ୍ ଦଶାଙ୍ଗୁଳମ୍' ଏଥିରେ ଲଙ୍ ବର୍ତ୍ତମାନ କାଳରେ, 'ଏତେ ତ୍ୟେ ଭାନବୋ ଦର୍ଶତାୟାଶ୍ଚିତ୍ରା ଉଷସୋ ଅମୃତାସ ଆଗୁଃ'—ଏଥିରେ ଲୁଙ୍ ବର୍ତ୍ତମାନ କାଳରେ ବ୍ୟବହୃତ ହୋଇଛି ।

ଶ୍ରୁ, ଶୃଣ୍ୱ ଇତ୍ୟାଦି ଧାତୁରେ ଲୋଟ୍ ଲ - କାର ମଧ୍ୟମ ପୁରୁଷ ଏକବଚନରେ 'ଧି' ଲାଗେ, ଯଥା—ଶ୍ରୁଧି, ଶୃଣୁଧି ଇତ୍ୟାଦି । ଲିଟ୍ ଲକାରରେ ଦୀର୍ଘତ୍ୱ ଦେଖାଯାଏ ଯଥା — ଦାଧାର । ଗୋଟିଏ ଗଣର ଧାତୁରୂପ ଅନ୍ୟ ପ୍ରକାର ହୁଏ, ଯଥା — କୃଣୋମି, ଭରମି ଇତ୍ୟାଦି । ଲୋଟ୍ ଓ ବିଧିଲିଙ୍ଗ୍ ଅର୍ଥରେ ଲେଟ୍ ଲକାରର ପ୍ରଚୁର ପ୍ରୟୋଗ ଦେଖାଯାଏ । କେତେକ ବର୍ଣ୍ଣର ବିକାର ଦେଖାଯାଏ, ଯଥା — ଗୃଭ୍ଣାମି, ସଧସ୍ଥମ୍ ଇତ୍ୟାଦି । କେତେବେଳେ ସଂହିତାରେ ସ୍ୱରଗୁଡ଼ିକ ଦୀର୍ଘ କରି ଦିଆଯାଇଛି, ଯଥା—ସ୍ମା, ପୂରୁଷଃ ଇତ୍ୟାଦି ।

## ଋଗ୍‌ବେଦର ଶାଖା

ଚାରି ବେଦର ୧୧୨୭ ଶାଖା ରହିଥିବା ବିଷୟ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ଅଛି । ପରନ୍ତୁ ବର୍ତ୍ତମାନ କାଳରେ ଅତ୍ୟଳ୍ପସଂଖ୍ୟକ ଶାଖାଗ୍ରନ୍ଥ ଉପଲବ୍ଧ ହୁଏ । ବେଦଶାଖା ବୃକ୍ଷଶାଖା ପରି ବେଦର ଅଙ୍ଗୀଭୂତ ଅଂଶ ନୁହେଁ । ବେଦର ପଠନ - ପାଠନର ସୁବିଧା ପାଇଁ ଶାଖାଗ୍ରନ୍ଥ ରଚିତ ହୋଇଥିଲା । ଏଗୁଡ଼ିକ ଏକପ୍ରକାର ବେଦବ୍ୟାଖ୍ୟା । ମନ୍ତ୍ରର ଋଷି, ଦେବତା ଛନ୍ଦ ତଥା ବ୍ୟାଖ୍ୟାନ ଶାଖାଗ୍ରନ୍ଥମାନଙ୍କରେ ସ୍ଥାନ ପାଇଥିଲା । ବେଦର ମନ୍ତ୍ରାନୁକ୍ରମ ନିତ୍ୟ; ଏହା ଶାଖାଗ୍ରନ୍ଥମାନଙ୍କରେ ପରିବର୍ତ୍ତନଶୀଳ । ଶାଖାମାନଙ୍କରେ ସ୍ଥଳେ ସ୍ଥଳେ ମୂଳବେଦର ପାଠାନ୍ତର ଦେଖିବାକୁ ମିଳେ ।

ଋଗ୍‌ବେଦର ମୋଟ ୨୧ ଶାଖା ଅଛି । ଏହା ମହାଭାଷ୍ୟକର୍ତ୍ତାଙ୍କ ମତ ଅଟେ । † ଏଗୁଡ଼ିକ ଶାକଲ, ବାଷ୍କଳ, ଆଶ୍ୱଳାୟନ, ଶାଂଖ୍ୟାୟନ,

† ଏକବିଂଶତିଧା ବାହ୍ୱୃଚ୍ୟମ୍ । (ମହାଭାଷ୍ୟ)



ମାଣ୍ଡୂକାୟନ, ଶାଟ୍ୟାୟନ, ଔଦୁମ୍ବର, ଐତରେୟ, କୌଷୀତକୀ, ଶାକପୂଣି, ଯାସ୍କ, ମୁଦ୍‌ଗଲ, ବାତ୍ସ୍ୟ, ଶୈଶିରୀୟ, ବାଭ୍ରବ୍ୟ, ପାଲଗାର, ଗର୍ଗୀତର, ବଳାକ, ଇନ୍ଦ୍ରପ୍ରମତି, ପୈଲ, ଅଗ୍ନିମାଠର ଓ ଜାତୂକର୍ଣ୍ଣ୍ୟ । ବର୍ତ୍ତମାନ କାଳରେ ଅଧିକାଂଶ ଶାଖା ଲୁପ୍ତ । ଶାଖା ସମ୍ବନ୍ଧରେ ଅଧିକ ଅନୁସନ୍ଧାନ ଆବଶ୍ୟକ ।

## ବେଦମନ୍ତ୍ରର ସୁରକ୍ଷା

ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ ଆଦିସୃଷ୍ଟି ସମୟରେ ପ୍ରକାଶିତ ହୋଇଥିବା ଋଗ୍‌ବେଦର ସମସ୍ତ ମନ୍ତ୍ର ଏବେ ସୁଦ୍ଧା ଅକ୍ଷୁଣ୍ଣ ରହିଛି । ଏହାର କୌଣସି ଅଂଶ ନଷ୍ଟ କିମ୍ବା ପରିବର୍ତ୍ତିତ ହୋଇନାହିଁ । କୌଣସି ସ୍ଥଳରେ ମିଶ୍ରଣ ବା ପ୍ରକ୍ଷେପ ଜଣାଯାଉ ନାହିଁ । ଲୌକିକ ଶାସ୍ତ୍ର ଓ କାବ୍ୟଗୁଡ଼ିକରେ କାଳଗତିରେ ଅନେକ ପରିବର୍ତ୍ତନ ଦେଖାଯାଉଥିବା ସ୍ଥଳେ ବେଦମନ୍ତ୍ର-ଗୁଡ଼ିକ ସ୍ଥିର ରହିଛି । ଏହା ଦେଖି ପାଶ୍ଚାତ୍ୟ ଆଲୋଚକମାନେ ସ୍ତବ୍ଧ ହୋଇ ପଡ଼ିଛନ୍ତି ।

ମନ୍ତ୍ରଗୁଡ଼ିକର ପୂର୍ବାପର ପ୍ରଣାଳୀ ବା ଆନୁପୂର୍ବୀ ଆଦିକାଳରୁ ସମାନ ରହିଛି । ବର୍ଣ୍ଣ ପରେ ବର୍ଣ୍ଣ, ପଦ ପରେ ପଦ, ମନ୍ତ୍ର ପରେ ମନ୍ତ୍ର ଏହି ଆନୁପୂର୍ବୀରେ ପ୍ରାଚୀନ କାଳରୁ କୌଣସି ପରିବର୍ତ୍ତନ ଘଟିନାହିଁ । ପତଞ୍ଜଳି ଲେଖିଛନ୍ତି—'ବେଦରେ ବର୍ଣ୍ଣାନୁପୂର୍ବୀ ନିତ୍ୟ ଅଟେ ।' * ସେହିପରି ନିରୁକ୍ତକର୍ତ୍ତା ଯାସ୍କ ଲେଖିଛନ୍ତି—'ବେଦବାଣୀ ନିତ୍ୟ । ଏହାର ଆନୁପୂର୍ବୀ ନିତ୍ୟ ।' † ଜୈମିନି, କପିଳ, କଣାଦ, ଗୋତମାଦି ଋଷିମୁନିମାନେ ଉକ୍ତ ମତକୁ ସ୍ୱୀକାର କରିଛନ୍ତି ।

* ବର୍ଣ୍ଣାନୁପୂର୍ବୀ ଖଲ୍ୱପ୍ୟାମ୍ନାୟେ ନିୟତା ॥ (ମହାଭାଷ୍ୟ ୫, ୨, ୫୯)

† ନିୟତବାଚୋଯୁକ୍ତୟୋ ନିୟତାନୁପୂର୍ବ୍ୟା ଭବନ୍ତି ॥ (ନିରୁକ୍ତ ୧, ୧୬)

ମାନବ ପରମ୍ପରାଗତ ଭାବରେ ବେଦମନ୍ତ୍ରକୁ କଣ୍ଠରେ ରକ୍ଷି ଆସିଅଛି । 'ଶ୍ରୁତି' ଅର୍ଥ ବେଦକୁ ଗୁରୁ-ଶିଷ୍ୟ ପରମ୍ପରାରେ ଶୁଣି ଓ ଅକ୍ଷୁଣ୍ଣ ରଖିବା । ଏଥିପାଇଁ ବେଦପାଠରେ କେତେକ କୌଶଳ ସ୍ଥିର କରାଯାଇଛି ।

ମୂଳମନ୍ତ୍ରକୁ ସ୍ୱରସହିତ ପାଠ କରିବା 'ସଂହିତା ପାଠ' । ମନ୍ତ୍ରରେ ଥିବା ପଦଗୁଡ଼ିକୁ ପୃଥକ୍ ପୃଥକ୍ ଭାବରେ ପଢ଼ିବା 'ପଦପାଠ' । ଗୋଟି ଗୋଟି କରି ପଦଗୁଡ଼ିକୁ ଉଚ୍ଚାରଣ କରିବା ଦ୍ୱାରା କୌଣସି ପଦ ଲୋପ ପାଏ ନାହିଁ । ପଦପାଠର ପ୍ରତ୍ୟେକ ପଦକୁ ଏକ ନିୟମିତ ପ୍ରଣାଳୀରେ ଦୁଇଥର ପାଠ କରିବା 'କ୍ରମପାଠ' ଅଟେ । ମନ୍ତ୍ରରେ ପଦଗୁଡ଼ିକ ଯଥାକ୍ରମେ କ ଖ ଗ ଘ ଇତ୍ୟାଦି କ୍ରମରେ ରହିଥିଲେ କ୍ରମପାଠରେ କଖ, ଖଗ, ଗଘ ଏହିରୂପେ ପଢ଼ାଯାଏ । 'ଜଟାପାଠ' ଅନ୍ୟ ଏକ କୌଶଳ । ଏଥିରେ କ୍ରମପାଠ ସହିତ ଦୁଇ ଦୁଇଟି ପଦକୁ ଓଲଟା ଓ ସିଧା କରି ପଢ଼ାଯାଏ : ଯେପରି କଖ, ଖକ, କଖ, ଖଗ, ଗଖ, ଖଗ, ଗଘ, ଘଗ, ଗଘ, ଘଗ, ଗଘ ଇତ୍ୟାଦି । 'ଘନପାଠ'ରେ କ୍ରମପାଠ ସହିତ ପ୍ରତ୍ୟେକପଦକୁ ଓଲଟା କରି ଓ ତିନି ତିନି ପଦକୁ ମିଶାଇ ସିଧା ଓ ଓଲଟା କ୍ରମରେ ପଢ଼ାଯାଏ : ଯେପରି କଖ, ଖକ, କଖଗ, ଗଖକ, କଖଗ, ଖଗ, ଗଖ, ଖଗଘ, ଘଗଖ, ଖଗଘ ଇତ୍ୟାଦି ।

ବେଦପାଠରେ ବିଭିନ୍ନ କୌଶଳ ସଙ୍ଗେ ସଙ୍ଗେ ବେଦର ବିଭିନ୍ନ ବିଷୟରେ ମହତ୍ତ୍ୱପୂର୍ଣ୍ଣ ସୂଚୀଗ୍ରନ୍ଥ ରଚିତ ହୋଇଛି । ଶୌନକ ଋଗ୍‌ବେଦ ପ୍ରାତିଶାଖ୍ୟ ରଚନା କରିଛନ୍ତି । ଏଥିରେ ବ୍ୟାକରଣ, ଛନ୍ଦ, ପଦପାଠାଦି ମିଳେ । କାତ୍ୟାୟନ ଋଗ୍‌ବେଦର ସର୍ବାନୁକ୍ରମଣୀ ପ୍ରଣୟନ କରିଛନ୍ତି । ଏଥିରେ ସୂକ୍ତଗୁଡ଼ିକର ମନ୍ତ୍ରସଂଖ୍ୟା, ଋଷି, ଦେବତା, ଛନ୍ଦ ଇତ୍ୟାଦିର ନାମ ରହିଛି । ଉଲ୍ଲିଖିତ ଚମତ୍କାରକ କୌଶଳଦ୍ୱାରା ବେଦର ପ୍ରତ୍ୟେକ ବର୍ଣ୍ଣ, ପଦ ଓ ମନ୍ତ୍ରର ପୂର୍ବାପର କ୍ରମ ଶୃଙ୍ଖଳିତ ହୋଇ ରହିଛି ଓ ରହିଥିବ ।



## ବେଦଭାଷ୍ୟର ମୌଳିକ ସିଦ୍ଧାନ୍ତ

ବେଦାଧ୍ୟୟନରେ ଉଦ୍ୟତ ହେବା ପୂର୍ବରୁ ପାଠକ କେତେଗୁଡ଼ିଏ ମୌଳିକ ବିଷୟ ପ୍ରତି ଧ୍ୟାନ ଦେବା ଉଚିତ ।

(କ) ବେଦ ମନୁଷ୍ୟର ପ୍ରଥମ ଜ୍ଞାନ । ବେଦାଙ୍ଗ, ଉପାଙ୍ଗ, ବ୍ରାହ୍ମଣ, ଉପନିଷଦ୍, ସ୍ମୃତି, ଦର୍ଶନ ପ୍ରଭୃତି ସମସ୍ତ ଋଷିକୃତ ଶାସ୍ତ୍ର କହିଛନ୍ତି ଯେ, ଆଦିସୃଷ୍ଟିରେ ଶବ୍ଦ ସହିତ ଅର୍ଥରେ ଜ୍ଞାନ ବେଦବାଣୀ ରୂପରେ ପରମାତ୍ମାଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ମନୁଷ୍ୟର ଆଦିଜ୍ଞାନ ଅପୌରୁଷେୟ ହେବା ସ୍ୱାଭାବିକ । *

(ଖ) ବେଦମନ୍ତ୍ରର 'ଋଷି' ମନ୍ତ୍ରଦ୍ରଷ୍ଟା; ସେ ମନ୍ତ୍ରସ୍ରଷ୍ଟା ନୁହନ୍ତି । † ମନ୍ତ୍ର ନିତ୍ୟ; ଋଷି ଅନିତ୍ୟ । ମନ୍ତ୍ରର ରହସ୍ୟ-ଉଦ୍‌ଘାଟକଙ୍କ ନାମ ଋଷି ।

(ଗ) ବେଦମନ୍ତ୍ରର 'ଦେବତା' ମନ୍ତ୍ରର ପ୍ରତିପାଦ୍ୟ ବା ବିଷୟବସ୍ତୁ । ★ ଦେବତା ପୁରୁଷାକୃତିବିଶିଷ୍ଟ ଜୀବ ଯାହାଙ୍କୁ ସନ୍ତୁଷ୍ଟ କରିବା ପାଇଁ ମନ୍ତ୍ରରେ ପ୍ରାର୍ଥନା କରାଯାଏ—ଏଭଳି କଳ୍ପନା ମିଥ୍ୟା । ବେଦରେ ଏକେଶ୍ୱରଙ୍କୁ ହିଁ ବିବିଧ ନାମରେ ପ୍ରାର୍ଥନା କରାଯାଇଛି ।

(ଘ) ବେଦ ସୃଷ୍ଟିର ପ୍ରାରମ୍ଭିକ ଜ୍ଞାନ ହୋଇଥିବାରୁ ସେଥିରେ ମନୁଷ୍ୟର ପରବର୍ତ୍ତୀ ଇତିହାସ ରହିବା ଅସମ୍ଭବ । ଭୂଗୋଳ, ଇତିହାସ ଆଦି ଲୌକିକ ବସ୍ତୁ ବେଦରେ ବର୍ଣ୍ଣିତ ହୋଇନାହିଁ । ବେଦମନ୍ତ୍ରର ସ୍ଥଳେ ସ୍ଥଳେ କୃଷ୍ଣ, ବଶିଷ୍ଠ, ଗଙ୍ଗା, ଅଯୋଧ୍ୟାଦି ଶବ୍ଦରୁ ନାମବାଚକ ପୁରୁଷ, ନଦୀ,

---

* ଦେଖ, 'ବେଦ ମନୁଷ୍ୟକୃତ କି ?' (ବୃହତ୍ ସଂସ୍କରଣ), ଦ୍ୱିତୀୟ ଅଧ୍ୟାୟ
† ଋଷିର୍ଦର୍ଶନାତ୍ । (ନିରୁକ୍ତ ୨, ୧୧)
★ ଯା ତେନୋଚ୍ୟତେ ସା ଦେବତା । (ଋକ୍ ସର୍ବାନୁକ୍ରମଣୀ ୨, ୧)

ନଗବ୍ରତ ଅର୍ଥ ଜଣବା ସ୍ରକ୍ଷଣ୍ୟ । † ଏଗୁଡ଼ିକ ନିତ୍ୟ, ସନାତନ ତତ୍ତ୍ୱର ନିର୍ଦ୍ଦେଶକ । ମନୁଷ୍ୟୋତ୍ପତ୍ତିକାଳ ବେଦପ୍ରକାଶର କାଳ ।

(ଙ) ବେଦସୃଷ୍ଟି ସମୟରେ ମାନବସମାଜରେ କୌଣସି ଗୋଷ୍ଠୀ ବା ସମ୍ପ୍ରଦାୟ ନ ଥିଲା । ତେଣୁ ବେଦମନ୍ତ୍ରରେ ମନୁଷ୍ୟଙ୍କୁ ସମ୍ବୋଧନ କରି ଉପଦେଶ ଦିଆଯାଇଛି । ଏଣୁ ବେଦ ଏକମାତ୍ର ଅସମ୍ପ୍ରଦାୟିକ ଶାସ୍ତ୍ର । ଏଥିରେ ସାର୍ବଭୌମ ସିଦ୍ଧାନ୍ତମାନ ବର୍ଣ୍ଣିତ ହୋଇଛି ।

(ଚ) ଶବ୍ଦ ଦୁଇ ପ୍ରକାର—ଲୌକିକ ଓ ବୈଦିକ ★ । ଉଦାହରଣସ୍ୱରୂପ ଲୌକିକ ଭାଷାରେ ଅହି, ପୁରୀଷ, ଓଦନ, ଘୃତ କହିଲେ ଯଥାକ୍ରମେ ସାପ, ମଳ, ଚାଉଳ ଓ ଘୃତକୁ ବୁଝାଏ । ବେଦରେ ଏଗୁଡ଼ିକ ଯଥାକ୍ରମେ ମେଘ, ଜଳ, ମେଘ ଓ ଜଳ ଅର୍ଥରେ ଅନେକ ସ୍ଥଳରେ ବ୍ୟବହୃତ ହୋଇଛି । 'ଗମ୍' ଧାତୁ ଲୋକରେ ଗମନ ଅର୍ଥରେ ଓ ବେଦରେ ବ୍ୟାପ୍ତି ଅର୍ଥରେ ଦେଖିବାକୁ ମିଳେ ।

(ଛ) ପୂର୍ବରୁ ବୈଦିକ ବ୍ୟାକରଣ ବୈଶିଷ୍ଟ୍ୟ ଉଲ୍ଲେଖ କରାଯାଇଛି । 'ଅର୍ଥନିତ୍ୟଃ ପରୀକ୍ଷେତ' ✳ ଅର୍ଥାତ୍ ବେଦରେ ଅର୍ଥକୁ ସର୍ବଦା ଲକ୍ଷ୍ୟରେ ରଖାଯାଏ । ତଦନୁସାରେ ବିଭକ୍ତି, ବଚନ ଇତ୍ୟାଦିର ସଙ୍ଗତି କରାଯାଏ ।

(ଜ) ଛଅଟି ବେଦାଙ୍ଗ ମଧ୍ୟରେ ନିରୁକ୍ତ ଓ ବ୍ୟାକରଣ ପୃଥକ୍ ପୃଥକ୍ ଭାବରେ ଗଣିତ ହୁଏ । ନିରୁକ୍ତ ବ୍ୟାକରଣର ପୂରକ । ବ୍ୟାକରଣ ଶବ୍ଦଗଠନ

† ଦେଖ, 'ବେଦ ମନୁଷ୍ୟ କୃତ କି ?' (ବୃହତ୍ ସଂସ୍କରଣ) ସପ୍ତମ, ଅଷ୍ଟମ ଓ ନବମ ଅଧ୍ୟାୟ ।

★ ଲୌକିକାନାଂ ବୈଦିକାନାଂ ଚ (ମହାଭାଷ୍ୟ)

✳ ନିରୁକ୍ତ ୨, ୧



ଶାସ୍ତ୍ର; ନିରୁକ୍ତ ଅର୍ଥନିର୍ବଚନ ଶାସ୍ତ୍ର । ନିରୁକ୍ତର ସଙ୍କେତ ଗ୍ରହଣ ନ କରି ବ୍ୟାକରଣ ପଛରେ ଦୌଡ଼ିଲେ ବୈଦିକ ଶବ୍ଦର ରହସ୍ୟ ବୁଝି ହୁଏ ନାହିଁ ।

(ଝ) ଲୌକିକ ପଦଗୁଡ଼ିକ ଗୋଟିଏ ଗୋଟିଏ ଅର୍ଥରେ ପ୍ରସିଦ୍ଧ ବା ରୂଢ଼ ଅଟନ୍ତି । ବେଦରେ ଶବ୍ଦ ରୂଢ଼ ନୁହେଁ । † ପ୍ରଚଳିତ ସଂସ୍କୃତ ଭାଷା ବୈଦିକ ଭାଷାରେ ଅବନତିକୃତ ରୂପ ଅଟେ । ସାଧାରଣ ପକ୍ଷରେ ଏଥିରେ ଶବ୍ଦର ଧାତୁ ଲବ୍ଧ ଅର୍ଥକୁ ଗ୍ରହଣ କରେ ନାହିଁ । ଧାତୁର ଶବ୍ଦାର୍ଥ ପ୍ରକ୍ରିୟା କାଳକ୍ରମେ ହ୍ରାସ ହୋଇଛି । ତେଣୁ ଶବ୍ଦର ବ୍ୟାପକ ଅର୍ଥରେ ଗ୍ଳାନି ବା ସଂକୋଚନ ଉତ୍ପନ୍ନ ହୋଇଛି । ✳ ପରନ୍ତୁ ବେଦାର୍ଥରେ ସମସ୍ତ ନାମକୁ ପ୍ରକୃତି-ପ୍ରତ୍ୟୟଦ୍ୱାରା ନିଷ୍ପନ୍ନ କରିବାକୁ ହୁଏ । †† ଏହାର ନାମ ଯୌଗିକ ପ୍ରକ୍ରିୟା ।

(ଞ) ଏଠାରେ କେତୋଟି ଯୌଗିକ ପ୍ରକ୍ରିୟାର ଉଦାହରଣ ଦିଆଯାଉଛି—

(୧) ଏହି ଗ୍ରନ୍ଥର (ପୃଷ୍ଠା ୬) ରେ ଥିବା 'ଅଗ୍ନିମୀଳେ ପୁରୋହିତଂ' ମନ୍ତ୍ରରେ 'ପୁରୋହିତଂ' ଇତ୍ୟାଦି ଶବ୍ଦ ଅଗ୍ନିର ବିଶେଷଣ । ଲୌକିକ ରୂଢ଼ାର୍ଥରେ ଯଜମାନର କର୍ମକାଣ୍ଡ କରୁଥିବା ବ୍ୟକ୍ତିଙ୍କୁ ପୁରୋହିତ ବୁଝାଯାଏ । ଏହା ଅଗ୍ନିର କିପରି ବିଶେଷଣ ହେବ ? ଏଠାରେ 'ପୁରୋ ଦାଧାତି ଇତି ପୁରୋହିତଃ' ଅର୍ଥାତ୍ ଆକାଂକ୍ଷା କୁ ରଖି ହିତ ସାଧନ କରୁଥିବା ତଥା ହିତମାର୍ଗର ପ୍ରଦର୍ଶକ ପୁରୁଷଙ୍କୁ ପୁରୋହିତ କହିବା ଯଥାର୍ଥ ହେବ । ଅଗ୍ନି ବା ସର୍ବଜ୍ଞ ପରମାତ୍ମା ସୃଷ୍ଟିର ପୁରୋହିତ । ଏଠାରେ ଶବ୍ଦର ଯୌଗିକ ପ୍ରକ୍ରିୟା ସିଦ୍ଧ ହୁଏ ।

† ମହାଭାଷ୍ୟ ୩, ୩, ୧

✳ ଉପଦେଶାୟ ଗ୍ଲାୟନ୍ତୋଽବରେ । (ନିରୁକ୍ତ ୧, ୨୦)

†† ନାମାନ୍ୟାଖ୍ୟାତଜାନୀତି । (ନିରୁକ୍ତ ୧, ୧୨)

(୨) ପୃଷ୍ଠା ୪ ରେ ଉଲ୍ଲେଖ ଥିବା 'ଇନ୍ଦ୍ରଂ ମିତ୍ରଂ' ମନ୍ତ୍ରରେ 'ଅଗ୍ନି' ଶବ୍ଦ ବୁଝାଇବାକୁ ଆସେ । ଏହା ବିଶେଷ୍ୟ ପଦ । ଇନ୍ଦ୍ର, ମିତ୍ର ପ୍ରଭୃତି ଶବ୍ଦ ଏହାର ବିଶେଷଣ । ବିଶେଷଣ ପଦର ଅର୍ଥ ପ୍ରକୃତିପ୍ରତ୍ୟୟସମ୍ବନ୍ଧରୁ ନିର୍ଣ୍ଣିତ କରିବାକୁ ହୁଏ । ଇଦି ପରମୈଶ୍ୱର୍ଯ୍ୟେ—ରନ୍ ପ୍ରତ୍ୟୟରୁ 'ଇନ୍ଦ୍ର' ଶବ୍ଦ ନିଷ୍ପନ୍ନ । ଏହାର ମୁଖ୍ୟ ଅର୍ଥ ଅଖିଳ ଐଶ୍ୱର୍ଯ୍ୟଯୁକ୍ତ ପରମାତ୍ମା । ଅନ୍ୟ ବିଶେଷଣ ପଦଗୁଡ଼ିକୁ ଏହି ପ୍ରଣାଳୀରେ ନିଷ୍ପନ୍ନ କରିବାକୁ ହେବ । ଏଥିରୁ ଯୌଗିକ ପ୍ରକ୍ରିୟା ପ୍ରମାଣିତ ହୁଏ ।

(୩) ଋଗ୍‌ବେଦ (୧, ୧୬୨, ୪,) ମନ୍ତ୍ରରେ 'ସ ପିତା ସ ପୁତ୍ରଃ' ପାଠ ମିଳେ । ଜଣେ ଲୋକ ଏକାଧାରରେ ପିତା ଓ ପୁତ୍ର ଉଭୟ ପଦବୀ ପାଇବେ ? ଏଠାରେ ଯୌଗିକ ପ୍ରକ୍ରିୟାରେ ଅର୍ଥ କରିବା ଭିନ୍ନ ଅନ୍ୟ ଉପାୟ ନାହିଁ । 'ପିତା ପାତା ବା ପାଲୟିତା ବା' * ଅର୍ଥାତ୍ ପାଳନକର୍ତ୍ତା ପିତା ଅଟନ୍ତି । 'ପୁତ୍ରଃ ପୁରୁ ତ୍ରାୟତେ' । † ଅର୍ଥାତ୍ ପାବନକର୍ତ୍ତା ପୁତ୍ର ଅଟନ୍ତି । ପରମାତ୍ମା ପାଳନକର୍ତ୍ତା ଓ ପାବନକର୍ତ୍ତା ।

(୪) ଋଗ୍‌ବେଦ (୭, ୭୧, ୩) ମନ୍ତ୍ରରେ 'ଇନ୍ଦ୍ରତମା' ଓ 'ଅଙ୍ଗିରସ୍ତମା' ପଦ ବ୍ୟବହୃତ ହୋଇଛି । ସେହିପରି (୧୦, ୧୧୫, ୪) ମନ୍ତ୍ରରେ 'ବହ୍ନିତମଃ' ପଦ ରହିଛି । ଏସବୁ ସ୍ଥଳରେ ଇନ୍ଦ୍ର, ଅଙ୍ଗିରା, ବହ୍ନି ପ୍ରଭୃତି ଲୌକିକ ଇତିହାସିକ ପୁରୁଷବିଶେଷ ହେବା ଅସମ୍ଭବ, କାରଣ ଆତିଶାୟିକ ପ୍ରତ୍ୟୟ ତରପ୍, ତମପ୍ ଇତ୍ୟାଦି ବିଶେଷଣ ପଦରେ ବ୍ୟବହୃତ ହୁଏ; ବ୍ୟକ୍ତିବାଚକ ବିଶେଷ୍ୟରେ ନୁହେଁ । ବିଶେଷଣ ପଦଗୁଡ଼ିକ ଯୌଗିକ ପ୍ରକ୍ରିୟାରୁ ହିଁ ସିଦ୍ଧ ହୁଏ ।

* ନିରୁକ୍ତ ୪, ୨୧

† ନିରୁକ୍ତ ୨, ୧୧



(୫) ଅନେକ ସ୍ଥଳରେ ସମାନାର୍ଥକ ପଦ ଏକତ୍ର ଦେଖାଯାଏ, ଯଥା— ଦେବୀ ପୃଥିବୀ (୬, ୪୭, ୨୦), ସେୟଂ ପୃଥିବୀ ମହୀ ଦାଧାର (୧୦, ୬୦, ୯), ବାଜିନ ମଶ୍ୱମ୍ (୧, ୧୬୫, ୫). ଅଘ୍ନ୍ୟାୟା ଧେନୋଃ (୪, ୧, ୬), ନର୍ୟୋମର୍ଯ୍ୟଃ (୫, ୬୩, ୩) ଇତ୍ୟାଦି । ଏହି ସମସ୍ତ ସ୍ଥଳରେ ଗୋଟିଏ ପଦ ବିଶେଷ୍ୟ ଓ ଅନ୍ୟଟି ବିଶେଷଣ ହେବା ଅନିବାର୍ଯ୍ୟ । ବିଶେଷ୍ୟ-ବିଶେଷଣ ଭାବ ଯୌଗିକ ପ୍ରକ୍ରିୟାରୁ ହିଁ ଉତ୍ପନ୍ନ ହୁଏ ଅର୍ଥାତ୍ ବିଶେଷଣ ପଦର ଅର୍ଥ ନିଜ ଧାତୁରୁ ନିଷ୍ପନ୍ନ ହୋଇ ବିଶେଷ୍ୟର ଗୁଣ, ଅବସ୍ଥାଦି ବୁଝାଏ ।

## ବେଦଭାଷ୍ୟକାର ଓ ବେଦାର୍ଥ

ବର୍ତ୍ତମାନ ସମୟରେ ଋଗ୍‌ବେଦର ପ୍ରାୟ କୋଡ଼ିଏ ଜଣ ଭାଷ୍ୟକାରଙ୍କ ଆଂଶିକ ଭାଷ୍ୟ ଉପଲବ୍ଧ ହୁଏ । ଏ ସମସ୍ତେ ମଧ୍ୟକାଳୀନ ଓ ନବୀନ ଭାଷ୍ୟକାର । ଏମାନଙ୍କ ମଧ୍ୟରୁ କେହି ହେଲେ ଅତ୍ୟନ୍ତ ପ୍ରାଚୀନ କାଳର ଭାଷ୍ୟକାର ନୁହନ୍ତି । ପ୍ରାଚୀନ ଋଷିଗଣ ବେଦମନ୍ତ୍ରରୁ ସଙ୍କେତ ଗ୍ରହଣ କରି ଆୟୁର୍ବେଦ, ଜ୍ୟୋତିଷ, ଗଣିତ, ରସାୟନ, ପଦାର୍ଥବିଦ୍ୟା ଇତ୍ୟାଦି ବହୁମୂଲ୍ୟ ରହସ୍ୟ ଆବିଷ୍କାର କରିଥିଲେ ମୁଦ୍ଧା ସେମାନଙ୍କ ଦ୍ୱାରା ରଚିତ କୌଣସି ଭାଷ୍ୟ ମିଳୁନାହିଁ ।

ଋଗ୍‌ବେଦର ଭାଷ୍ୟକାରଙ୍କ ମଧ୍ୟରେ ସ୍କନ୍ଦସ୍ୱାମୀ, ବେଙ୍କଟମାଧବ, ଆନନ୍ଦତୀର୍ଥ, ସାୟଣ, ଦୟାନନ୍ଦ, ମେକ୍ସମୁଲର, ଗ୍ରିଫିଥ୍, ୱିଲସନ୍ ପ୍ରଭୃତି ମୁଖ୍ୟ । ଏମାନଙ୍କ ମଧ୍ୟରେ ପ୍ରଥମ ତିନିଜଣ ସାୟଣଙ୍କ (ଚତୁର୍ଦ୍ଦଶ ଶତାବ୍ଦୀ) ପୂର୍ବବର୍ତ୍ତୀ ଓ ଅନ୍ୟମାନେ ତାହାଙ୍କ ପରବର୍ତ୍ତୀ ଭାଷ୍ୟକାର । ସ୍କନ୍ଦସ୍ୱାମୀ, ବେଙ୍କଟମାଧବ ଓ ଆନନ୍ଦତୀର୍ଥ ଅଳ୍ପ କେତେକ ସୂକ୍ତର ହିଁ ବ୍ୟାଖ୍ୟାନ କରିଛନ୍ତି । ଏମାନଙ୍କ ଭାଷ୍ୟରେ ଯୌଗିକ ପ୍ରକ୍ରିୟା ଅନେକାଂଶରେ ପ୍ରତିଧ୍ୱନିତ ହୁଏ । ପାଶ୍ଚାତ୍ୟ ଭାଷ୍ୟକାରମାନେ ମୂଳତଃ ସାୟଣ ଭାଷ୍ୟକୁ ଆଧାର କରିଛନ୍ତି ।

ସାୟଣ ବିଜୟନଗରର ରାଜ୍ୟର ପ୍ରଧାନମନ୍ତ୍ରୀ ଥିଲେ । ସମ୍ଭବତଃ ଏକ ପଣ୍ଡିତଗୋଷ୍ଠୀର ସହାୟତାରେ ସେ ଋଗ୍‌ବେଦର ଭାଷ୍ୟ ରଚନା କରାଇଥିଲେ । ବିଗତ ଛଅଶହ ବର୍ଷ ବ୍ୟାପି ବେଦଭାଷ୍ୟ କହିଲେ ସାୟଣ ଭାଷ୍ୟକୁ ହିଁ ବୁଝାଉଅଛି । ଏବେ ମଧ୍ୟ ବିଦ୍ୟାଳୟମାନଙ୍କରେ ସାୟଣଭାଷ୍ୟ ପଢ଼ାଯାଉଛି ଓ ପାଶ୍ଚାତ୍ୟ ଭାଷ୍ୟକାରଗଣ ସାୟଣଭାଷ୍ୟକୁ ଭିତ୍ତିକରି ଟୀକା ଲେଖିଛନ୍ତି । ଊନବିଂଶ ଶତାବ୍ଦୀରେ ଦୟାନନ୍ଦ ସରସ୍ୱତୀଙ୍କ ବେଦଭାଷ୍ୟ ପ୍ରକାଶିତ ହେବା ପରେ ସାୟଣଭାଷ୍ୟର ନିକୃଷ୍ଟତା ପ୍ରତିପାଦିତ ହୋଇଛି ।

ସାୟଣଭାଷ୍ୟ ପାଠ କଲେ ମନେ ହୁଏ ଯେ ବେଦ କେବଳ ଯଜ୍ଞପଦ୍ଧତି ବିଷୟକ ଏକ କର୍ମକାଣ୍ଡପ୍ରଧାନ ଗ୍ରନ୍ଥ । ମାନବିକତାର ବିକାଶ ପାଇଁ ଏଥିରେ ପ୍ରେରଣା ନାହିଁ । ଏହି ଭାଷ୍ୟରେ ନାନା ଦେବଦେବୀ ପୂଜା, ଅଳୀକ ଇତିହାସ, ଯଜ୍ଞୀୟ ପଶୁହିଂସା, ସୁରାପାନ, ଜନ୍ମଗତ ଜାତିପ୍ରଥା, ଯାଦୁବିଦ୍ୟା, ଚମତ୍କାର ବର୍ଣ୍ଣନା ଇତ୍ୟାଦି ନିକୃଷ୍ଟ ବ୍ୟାଖ୍ୟାନ ଅଛି । ସାୟଣ ଋଗ୍‌ବେଦ ଭାଷ୍ୟର ଭୂମିକାରେ ସ୍ୱୀକାର କରିଛନ୍ତି ଯେ ଯଜ୍ଞର କର୍ମକାଣ୍ଡ ବୁଝାଇବା ପାଇଁ ସେ ଭାଷ୍ୟ ରଚନା କରୁଛନ୍ତି । ହାୟ, ଋଗ୍‌ବେଦର ନଭଶ୍ଚୁମ୍ବୀ ବିଚାର ପ୍ରତି ସାୟଣଙ୍କ ଦୃଷ୍ଟି ଆକୃଷ୍ଟ ହେଲା ନାହିଁ !

ଶ୍ରୀ ଅରବିନ୍ଦ ଯଥାର୍ଥ ଲେଖିଛନ୍ତି—'ମନ୍ତ୍ରର ନାନାବିଧ ସନାତନ ଅର୍ଥକୁ ତ୍ୟାଗ କରି ଯାଗଯଜ୍ଞମୂଳକ ଭାବନାକୁ ହିଁ ସ୍ୱୀକାର କରିବା ଫଳରେ ସାୟଣଭାଷ୍ୟ ବେଦର ସର୍ବମାନ୍ୟତା, ସ୍ୱତଃପ୍ରାମାଣିକତା ଓ ଅପୌରୁଷେୟତାରୁ ବଞ୍ଚିତ ହୋଇ ଦୁର୍ବଳ ଗ୍ରନ୍ଥ ଓ ଅନ୍ଧବିଶ୍ୱାସ ମଧ୍ୟରେ ପର୍ଯ୍ୟବସିତ ରହିଲା ।'* ସାୟଣଙ୍କ ଅନୁଗାମୀ ପାଶ୍ଚାତ୍ୟ ପଣ୍ଡିତଗଣଙ୍କ

* ବେଦରହସ୍ୟ — ଶ୍ରୀ ଅରବିନ୍ଦ



ସମ୍ବନ୍ଧରେ ସେ ଲେଖିଛନ୍ତି—'ଏମାନେ ବେଦଭାଷ୍ୟର କର୍ମକାଣ୍ଡୀ ପରମ୍ପରାକୁ ଗ୍ରହଣ କଲେ, ପରନ୍ତୁ କେତେକ ସ୍ଥଳରେ ସାୟଣଙ୍କୁ ସମ୍ପୂର୍ଣ୍ଣ ରୂପେ ବର୍ଜନ କରି ନିଜର ଆନୁମାନିକ, ସ୍ୱେଚ୍ଛାକୃତ ଓ କାଳ୍ପନିକ ବ୍ୟାଖ୍ୟା କରିବାକୁ ଲାଗିଲେ ।'†

## ଦୟାନନ୍ଦ ଭାଷ୍ୟର ବୈଶିଷ୍ଟ୍ୟ

ଦୟାନନ୍ଦ ସରସ୍ୱତୀ (୧୮୨୪-୧୮୮୩) ବେଦଭାଷ୍ୟ କରିବା ପୂର୍ବରୁ 'ଋଗ୍‌ବେଦାଦି ଭାଷ୍ୟ ଭୂମିକା' ନାମକ ଏକ ସୁପ୍ରସିଦ୍ଧ ଗ୍ରନ୍ଥ ରଚନା କରିଛନ୍ତି । ବେଦଭାଷ୍ୟର ପ୍ରାଥମିକ ସିଦ୍ଧାନ୍ତଗୁଡ଼ିକ ଏଥିରେ ମୀମାଂସିତ ହୋଇଛି । ଦୟାନନ୍ଦ ସମ୍ପୂର୍ଣ୍ଣ ଯଜୁର୍ବେଦ ଓ ଋଗ୍‌ବେଦର ଅଧିକାଂଶ ମଣ୍ଡଳର ଭାଷ୍ୟ କରିଛନ୍ତି । ଚାରି ବେଦର ଭାଷ୍ୟ ସଂପୂର୍ଣ୍ଣ କରିବା ତାହାଙ୍କ ଅଭିପ୍ରାୟ ଥିଲେ ସୁଦ୍ଧା ଅନ୍ଧବିଶ୍ୱାସୀ, ସ୍ୱାର୍ଥାନ୍ୱେଷୀଙ୍କ ଦ୍ୱାରା ବିଷଦାନ ଯୋଗୁଁ ସେ ଅକାଳ ମୃତ୍ୟୁ ବରଣ କରିଥିଲେ ।

ପୂର୍ବରୁ ଲେଖାଯାଇଥିବା ମୌଳିକ ସିଦ୍ଧାନ୍ତଗୁଡ଼ିକୁ ଦୟାନନ୍ଦ ବେଦ-ଭାଷ୍ୟରେ ସର୍ବତୋଭାବେ ଗ୍ରହଣ କରିଛନ୍ତି । ବେଦରୁ ଏକ, ଅଦ୍ୱିତୀୟ, ନିରାକାର, ସର୍ବବ୍ୟାପକ ପରମାତ୍ମାଙ୍କୁ ସେ ସିଦ୍ଧ କରିଛନ୍ତି । ବହୁ ଦେବତାବାଦ, ସର୍ବୋତ୍କୃଷ୍ଟ ଦେବତାବାଦ ଆଦି ମଧ୍ୟକାଳୀନ କଳ୍ପନାର ମୂଳରେ କୁଠାରା-ଘାତ କରିଛନ୍ତି । ପଶୁଯଜ୍ଞ, ମାଂସଭକ୍ଷଣ, ସୁରାପାନ, ଜନ୍ମଗତ ଜାତିପ୍ରଥା ପ୍ରଭୃତି ହୀନ ବ୍ୟବହାରକୁ ଅବୈଦିକ ନାମରେ ଖଣ୍ଡନ କରିଛନ୍ତି । ମାନବ-ଜୀବନର ବିକାଶ ପାଇଁ ବ୍ରହ୍ମଚର୍ଯ୍ୟାଦି ଚାରି ଧାର୍ମିକ ଆଶ୍ରମ ଓ ସାମାଜିକ

† ଅଗ୍ନିସୂକ୍ତ — ଶ୍ରୀ ଅରବିନ୍ଦ

ବିକାଶ ପାଇଁ ଗୁଣକର୍ମ ସ୍ୱଭାବଗତ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣର ସମର୍ଥନ କରିଛନ୍ତି । ବେଦପାଠରେ ନାରୀର ଅଧିକାରକୁ ସିଦ୍ଧ କରିଛନ୍ତି । ବେଦମନ୍ତ୍ରକୁ ବ୍ୟକ୍ତି-ବିକାଶ, ରାଷ୍ଟ୍ରୋନ୍ନତି, ବିଜ୍ଞାନ, ମନୋବିଜ୍ଞାନ ପ୍ରଭୃତି ବିବିଧ ବର୍ଣ୍ଣନାରେ ଦୟାନନ୍ଦଭାଷ୍ୟ ସମୃଦ୍ଧିଶାଳୀ । ଦୟାନନ୍ଦ ପ୍ରାଚୀନ ଯୌଗିକ ପ୍ରକ୍ରିୟାର ପ୍ରବଳ ସମର୍ଥକ ଥିଲେ । 'ଅଗ୍ନି' ଶବ୍ଦରୁ ଅଗ୍ରଣୀ, ନେତା, ପରମାତ୍ମା, ବିଦ୍ୟୁତ୍ ଇତ୍ୟାଦି ଅର୍ଥ ପ୍ରକାଶ କରିଥିଲେ । ଏଥିରେ ତତ୍କାଳୀନ କଲିକତା ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗରେ ଅଧ୍ୟକ୍ଷ ପଣ୍ଡିତ ମହେଶଚନ୍ଦ୍ର ନ୍ୟାୟରତ୍ନ ପ୍ରଭୃତି ପ୍ରତିବାଦ ଉଠାଇ କହିଥିଲେ ଯେ ଅଗ୍ନିର ନିଆଁ ଭିନ୍ନ ଅନ୍ୟ ଅର୍ଥ କିପରି ସମ୍ଭବ ? କହିବା ବାହୁଲ୍ୟ ଯେ ବେଦାର୍ଥର ଯୌଗିକ ପ୍ରକ୍ରିୟା ଓ ଆର୍ଷ ସିଦ୍ଧାନ୍ତ-ଗୁଡ଼ିକ ଦୟାନନ୍ଦଙ୍କ ସମୟରେ ବିସ୍ମୃତପ୍ରାୟ ହୋଇ ରହିଥିଲା ।

ଯୋଗୀ ଅରବିନ୍ଦ ଦୟାନନ୍ଦଭାଷ୍ୟ ସମ୍ବନ୍ଧରେ ଲେଖିଛନ୍ତି—'ବେଦର ଅନ୍ତିମ ବ୍ୟାଖ୍ୟା ଯାହା ହେଉ ନା କାହିଁକି ଦୟାନନ୍ଦ ବୈଦିକ ସଙ୍କେତର ପୁନରୁଦ୍ଧାରକ ଭାବରେ ଭବିଷ୍ୟତ୍ କାଳରେ ସମ୍ମାନିତ ହେବେ । ଘୋର ଅବ୍ୟବସ୍ଥା ଓ ପୁରୁଣା ଯୁଗର ଭୁଲ ବୁଝାମଣା ମଧ୍ୟରେ ତାହାଙ୍କର ଦିବ୍ୟ ଚକ୍ଷୁ ସତ୍ୟଦର୍ଶନ କରିଥିଲା ଓ ପ୍ରୟୋଜନୀୟ ସିଦ୍ଧାନ୍ତଗୁଡ଼ିକୁ ପୁନରୁଦ୍ଧାର କରିଥିଲା । ଦୟାନନ୍ଦ ଦୀର୍ଘକାଳ ପର୍ଯ୍ୟନ୍ତ ଅବରୁଦ୍ଧ ହୋଇଥିବା ଦ୍ୱାରର କୁଞ୍ଚିକା ପ୍ରାପ୍ତ ହୋଇଥିଲେ ଏବଂ ସତ୍ୟର ଅବରୁଦ୍ଧ ଉତ୍ସର ପଥବନ୍ଧକୁ ସେ ଦୂର କରିଥିଲେ ।'

ଭାରତରେ ବେଦର ଗୌରବ ପୁନଃ ପ୍ରତିଷ୍ଠା କରିବା ପାଇଁ ଦୟାନନ୍ଦ 'ଆର୍ଯ୍ୟ ସମାଜ' ସ୍ଥାପନ କରିଥିଲେ । ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ଆର୍ଯ୍ୟସମାଜ ଆଧୁନିକ କାଳରେ ବୈଦିକ ଶିକ୍ଷା, ସାହିତ୍ୟ ଓ ସଂସ୍କୃତ ପ୍ରସାର କ୍ଷେତ୍ରରେ ଭାରତରେ ଅଗ୍ରଣୀ ଅଟେ ।



## 'ଋଗ୍‌ବେଦ ସୌରଭ'ର ଭୂମିକା

## 'ବେଦ ମନୁଷ୍ୟକୃତ କି ?'

ପ୍ରସ୍ତୁତ ଗ୍ରନ୍ଥରେ ଋଗ୍‌ବେଦର କେତେକ ମନୋରମ ସ୍ଥଳର ଭାଷ୍ୟ କରାଯାଇଛି । ଏହା ସତ୍ୟ ଯେ ବେଦର କେତେକ ସ୍ଥଳକୁ 'ଦୁରୂହତର' କହିବା ଅମୂଳକ । ସବୁ ମନ୍ତ୍ର ସମାନ ଭାବରେ ଉତ୍କୃଷ୍ଟ । ମହର୍ଷି ପତଞ୍ଜଳିଙ୍କ ଭାଷାରେ—'ବେଦର ଗୋଟିଏ ମାତ୍ର ଶବ୍ଦକୁ ଉତ୍ତମରୂପେ ବୁଝି ବ୍ୟବହାର କରିପାରିଲେ ସଂସାର ଓ ନନ୍ଦନଭୂମିରେ ପରିଣତ ହେବ ଓ ତାହା ଆମ୍ଭମାନଙ୍କ କାମନା ପୂର୍ଣ୍ଣକାରିଣୀ କାମଧେନୁ ପରି ଉପଯୋଗୀ ହେବ ।'† ଉକ୍ତ ଦୃଷ୍ଟିକୋଣ ଅନୁସାରେ କେତେକ ମନ୍ତ୍ରକୁ ଚୟନ କରିଛି । ଭବିଷ୍ୟତ୍ କାଳରେ ସମ୍ପୂର୍ଣ୍ଣ ଋଗ୍‌ଭାଷ୍ୟ ପାଇଁ ଏହା ଭୂମିକା ହୋଇପାରେ । ଋଗ୍-ବେଦର ରମଣୀୟ ଉଦ୍ୟାନରେ ବିବିଧ ସୁଗନ୍ଧିତ ପୁଷ୍ପ ରହିଛି । ମୁଁ କେତୋଟି ମାତ୍ର ସଂଗ୍ରହ କରି 'ଋଗ୍‌ବେଦ ସୌରଭ' ପ୍ରସ୍ତୁତ କରିଛି । ବେଦ ସମ୍ବନ୍ଧରେ କେତେକ ପାଶ୍ଚାତ୍ୟ ଓ ଦେଶୀୟ ଆଲୋଚକ ଯେଉଁ ଦୁର୍ଗନ୍ଧ ବିସ୍ତାର କରୁଛନ୍ତି, 'ଋଗ୍‌ବେଦ ସୌରଭ'କୁ ଆଘ୍ରାଣ କଲେ ତାହା ଅନେକାଂଶରେ ଦୂର ହୋଇ ପାରିବ ।

ମୋ ପ୍ରଣୀତ 'ବେଦ ମନୁଷ୍ୟକୃତ କି ?' ୧୯୬୮ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ବେଦର ଭାଷା ଓ ରଚନାକୁ ବୁଝିବା ପାଇଁ ଯେଉଁ ପ୍ରାରମ୍ଭିକ ଜ୍ଞାନ ଆବଶ୍ୟକ, ସେ ସବୁ ସଙ୍କେତ କରିବା ଉକ୍ତ ଗ୍ରନ୍ଥ-ରଚନାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସାତ ବର୍ଷ ପରେ ଗ୍ରନ୍ଥର ପରିବର୍ଦ୍ଧିତ ସଂସ୍କରଣ ପ୍ରକାଶିତ ହେଲା । ଉକ୍ତ ସଂସ୍କରଣର ଭୂମିକାର ପ୍ରାରମ୍ଭରେ ଉଲ୍ଲେଖ

---

† ଏକଃ ଶବ୍ଦଃ ସମ୍ୟଗ୍ ଜ୍ଞାତଃ ସୁପ୍ରଯୁକ୍ତଃ ସ୍ୱର୍ଗେ ଲୋକେ କାମଧୁଗ୍ ଭବତି ॥
(ବ୍ୟାକରଣ ମହାଭାଷ୍ୟ)

କରାଯାଇଥିଲା —"ବେଦର ଯଥାର୍ଥ ସ୍ୱରୂପ ପ୍ରତିପାଦନ ତଥା ବେଦାଧ୍ୟୟନରେ ଲୋକଶ୍ରଦ୍ଧାସଂଗ୍ରହ ନିମିତ୍ତ ପ୍ରସ୍ତୁତ ସନ୍ତୁଷ୍ଟି ଏକ ଭୂମିକାବନ୍ଧ ରଚିତ ହୋଇଛି।"

ବେଦବାଣୀର ଭାଷ୍ୟରେ ପ୍ରବୃତ୍ତ ହେବାବେଳେ ମୁଁ ଉକ୍ତ ଗ୍ରନ୍ଥକୁ ବେଦଭାଷ୍ୟର ଭୂମିକା ସ୍ୱରୂପରେ ଏକାଧିକ ବାର ସ୍ୱାଧ୍ୟାୟ କରିଛି। 'ଋଗ୍‌ବେଦ ସୌରଭ'ର ଶ୍ରଦ୍ଧାଳୁ ପାଠକଗଣ ଉକ୍ତ ଭୂମିକା ଗ୍ରନ୍ଥକୁ ପାଠ କରି ବେଦର ଅଲୌକିକତା ପ୍ରତି ଶ୍ରଦ୍ଧା କରିପାରିଲେ ମନୁଷ୍ୟର ଅଜ୍ଞାନ, ଅବିଶ୍ୱାସ ଓ ଅଧର୍ମମୂଳ ବ୍ୟାଖ୍ୟାନ ସୁଗମ ହେବ। ସେଥିରେ ବେଦସୃଷ୍ଟିବିଷୟକ ଆଧୁନିକ ଜିଜ୍ଞାସୁ ଓ ତର୍କବାଦୀଙ୍କର ବିବିଧ ସନ୍ଦେହର ମୀମାଂସାପାଇଁ ଯଥାସାଧ୍ୟ ପ୍ରଯତ୍ନ କରାଯାଇଛି। ଏଠାରେ ସେ ସମସ୍ତ ପୁନରାଲୋଚନା ଅନାବଶ୍ୟକ।

## ସୂଚକ

ପ୍ରତ୍ୟେକ ବେଦମନ୍ତ୍ରର ଉପରିଭାଗରେ ମଣ୍ଡଳ, ସୂକ୍ତ ଓ ମନ୍ତ୍ରର ସଂଖ୍ୟା ସୂଚିତ ହୋଇଛି ଯଦ୍ଦ୍ୱାରା ଋକ୍‌ସଂହିତାରେ ମନ୍ତ୍ରକୁ ଖୋଜିବାକୁ ଚାହିଁଲେ, ତାହା ସହାୟକ ହେବ। ଅଷ୍ଟକ-ଅଧ୍ୟାୟାଦି ବିଭାଜନ ଦିଆଯାଇ ନାହିଁ, କାରଣ ଉପଲବ୍ଧ ସଂହିତାମାନଙ୍କରେ ମଣ୍ଡଳାନୁକ୍ରମେ ମନ୍ତ୍ର ବାଛିବା ସହଜ ଅଟେ। ପ୍ରତ୍ୟେକ ମନ୍ତ୍ରରେ ସ୍ୱରସଙ୍କେତ ଦିଆଯାଇଛି। ଏଥିପାଇଁ ସାଧାରଣ ବ୍ୟବହୃତ ପ୍ରଣାଳୀ ଅନୁସରଣ କରାଯାଇଛି। ଅନୁଦାତ୍ତସ୍ୱରଯୁକ୍ତ ଅକ୍ଷର ତଳେ '—', ଏବଂ ସ୍ୱରିତ ସ୍ୱରଯୁକ୍ତ ଅକ୍ଷର ପାଇଁ ତାହା ଉପରେ '।' ଚିହ୍ନ ବ୍ୟବହୃତ ହୋଇଛି। ଉଦାତ୍ତସ୍ୱରଯୁକ୍ତ ଅକ୍ଷରରେ କୌଣସି ଚିହ୍ନ ଦିଆଯାଇ ନାହିଁ।

ମନ୍ତ୍ରତଳେ ଚନ୍ଦ୍ରବନ୍ଧନୀ ମଧ୍ୟରେ ଯଥାକ୍ରମେ ମନ୍ତ୍ରର ଋଷି, ଦେବତା ଓ ଛନ୍ଦ ଉଲ୍ଲେଖ କରାଯାଇଛି, ଯଥା—(ମଧୁଚ୍ଛନ୍ଦା ବୈଶ୍ୱାମିତ୍ରଃ। ଅଗ୍ନିଃ।



ଗାୟତ୍ରୀ।) ଇତ୍ୟାଦି। ପୂର୍ବରୁ କୁହାଯାଇଛି ଯେ ଋଷି ମନ୍ତ୍ରର ପ୍ରଥମ ଦ୍ରଷ୍ଟା ଓ ଭାଷ୍ୟକାର; ଦେବତା ମନ୍ତ୍ରର ପ୍ରତିପାଦ୍ୟ ବିଷୟ ଓ ଛନ୍ଦ ମନ୍ତ୍ରର ଅକ୍ଷର-ସଂଖ୍ୟାର ନିୟାମକ ଅଟେ। ମନ୍ତ୍ରତଳେ ପଦପାଠ ଓ ପଦାର୍ଥ ଏବଂ ପରବର୍ତ୍ତୀ ପୃଷ୍ଠାରେ ଭାବାର୍ଥ ପ୍ରସ୍ତୁତ ହୋଇଛି। ଗ୍ରନ୍ଥର ବିଷୟସୂଚୀରେ ମନ୍ତ୍ରର ବିଷୟ ଓ ପ୍ରଥମ ପଦଗୁଡ଼ିକର ସଙ୍କେତ ଦିଆଯାଇଛି।

## କୃତଜ୍ଞତା ଜ୍ଞାପନ

ସର୍ବପ୍ରେରକ ପରମାତ୍ମାଙ୍କୁ କୋଟି କୋଟି ଧନ୍ୟବାଦ ଯାହାଙ୍କ ଐଶ୍ୱରୀ ପ୍ରେରଣା ବଳରୁ ମୁଁ ବେଦରହସ୍ୟ ପ୍ରତି ଉଦ୍‌ବୁଦ୍ଧ ହୋଇ ପାରିଛି। ଅତ୍ୟାଧୁନିକ ଜଡ଼ବାଦୀ ଶିକ୍ଷା ପ୍ରାପ୍ତ ହୋଇ ଏବଂ ଭୋଗବାଦୀ ପରିବେଷ୍ଟନୀ ମଧ୍ୟରେ ରହି ମୁଁ ସେହି କରୁଣାମୟଙ୍କ ଅପାର କୃପା ବଳରୁ ବୈଦିକ ଜୀବନ ପ୍ରତି ଆକୃଷ୍ଟ ହୋଇ ପାରିଛି। ମୋର ପରମାରାଧ୍ୟ ସ୍ୱର୍ଗତ ପିତୃଦେବ ପଣ୍ଡିତ ସନାତନ ବୈଦିକ ଧର୍ମର ଶିକ୍ଷାଦାନ ଦେଇ ଜୀବନର ପ୍ରାରମ୍ଭିକ କାଳରୁ ମୋଠାରେ ଶୁଭସଂସ୍କାର ସ୍ଥାପନ କରିଥିଲେ। ବେଦାଧ୍ୟୟନରେ ମୋର ପ୍ରତ୍ୟେକ ପଦକ୍ଷେପରେ ତାହାଙ୍କ ପବିତ୍ରାତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି।

ବେଦର ସୁସଙ୍ଗତ ଭାଷ୍ୟ କରି ମହର୍ଷି ଦୟାନନ୍ଦ ସରସ୍ୱତୀ ବେଦଭାଷ୍ୟର ପ୍ରାଚୀନତମ ପରମ୍ପରା ପୁନରୁଦ୍ଧାର କରିଛନ୍ତି। ଦୟାନନ୍ଦଭାଷ୍ୟ ଲୋକ-ଲୋଚନକୁ ଆସି ନ ଥିଲେ ବେଦଗୌରବ ପ୍ରତି ଆଧୁନିକବାଦୀଙ୍କ ଶ୍ରଦ୍ଧା ପ୍ରଚଳିତ ଭାଷ୍ୟଗୁଡ଼ିକୁ ଦେଖି କ୍ଷୁଣ୍ଣ ହୋଇ ପଡ଼ିଥାନ୍ତା, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ। ମୋ ପରି ଅଜ୍ଞଜନ ବେଦାଧ୍ୟୟନରେ ପ୍ରବୃତ୍ତ ହେବା ନିମନ୍ତେ ଦୟାନନ୍ଦ ହିଁ ବେଦାର୍ଥର ଯଶସ୍ୱୀ ପଥପ୍ରଦର୍ଶକ ଓ କୃତଜ୍ଞତାର ଅଧିକାରୀ। ବେଦପାଠରେ ତାହାଙ୍କ ଅର୍ଥବିଧି ଅନୁସରଣ କରିବା ଉଚିତ

ସ୍ୱର୍ଗତ ମହାପୁରୁଷ ଯଥା—ବୈଦିକ ଭାଷାର ଅପୂର୍ବ ବ୍ୟାଖ୍ୟାକାର ପଣ୍ଡିତ ବୁଦ୍ଧଦେବ ବିଦ୍ୟାଲଙ୍କାର ( ସନ୍ନ୍ୟାସାଶ୍ରମରେ ସ୍ୱାମୀ ସମର୍ପଣାନନ୍ଦ ), ବୈଦିକବ୍ୟାକରଣର ସୂର୍ଯ୍ୟସମାନ ଓ ଆଦର୍ଶ ବ୍ରହ୍ମଚାରୀ ପଣ୍ଡିତ ବ୍ରହ୍ମଦତ୍ତ ଜିଜ୍ଞାସୁ ତଥା ଭାରତୀୟ ଇତିହାସର ମର୍ମଜ୍ଞ ପଣ୍ଡିତ ଭଗବଦ୍ଦତ୍ତଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସି ସେମାନଙ୍କର ଗମ୍ଭୀର ବିଚାରଧାରାରୁ ଲାଭାନ୍ୱିତ ହୋଇଥିବା ଯୋଗୁଁ ମୁଁ ସେମାନଙ୍କର ଅମର ଆତ୍ମା ପ୍ରତି ଭକ୍ତିପୂର୍ଣ୍ଣ କୃତଜ୍ଞତା ଜ୍ଞାପନ କରୁଅଛି ।

ପରିଶେଷରେ ଉତ୍କଳର ବିଭିନ୍ନ ଅଞ୍ଚଳରେ ଥିବା ମୋର ବହୁ କୃପାଳୁ ମିତ୍ର ଓ ପରିଚିତ ମହାନୁଭବଙ୍କ ହାର୍ଦ୍ଦିକ ସ୍ନେହ ଓ ପ୍ରେରଣାପାଇଁ ଧନ୍ୟବାଦ ଜଣାଉଅଛି । ସେମାନଙ୍କର ଆଶୀର୍ବାଦ ହିଁ ମୋର ଉଦ୍ଦେଶ୍ୟର କାର୍ଯ୍ୟର ପରମ ସହାୟକ ଅଟେ । ପ୍ରସ୍ତୁତ ଗ୍ରନ୍ଥ ପ୍ରକାଶନରେ ପ୍ରୁଫ୍ ସଂଶୋଧନ ଓ ମୁଦ୍ରଣ କାର୍ଯ୍ୟରେ ମୋର ପ୍ରିୟ ବନ୍ଧୁ ଅଧ୍ୟାପକ ଶ୍ରୀ ଗଦାଧର ଷଡ଼ଙ୍ଗୀ ଓ ଅଧ୍ୟାପକ ଶ୍ରୀ ବିଜୟଚନ୍ଦ୍ର ମହାପାତ୍ରଙ୍କ ଅକୁଣ୍ଠିତ ସହାୟତା ଯୋଗୁଁ ମୁଁ ସେମାନଙ୍କଠାରେ ଅନୁଗୃହୀତ ଅଟେ ।

## ଅନ୍ତିମ ନିବେଦନ

ପ୍ରସ୍ତୁତ ରଚନାଦ୍ୱାରା ମୁଁ କାହାର ଉପକାର କରିଅଛି, ଏହି ଭାବନା ଆଦୌ ପୋଷଣ କରୁନାହିଁ । ମନୁଷ୍ୟଜୀବନର ପ୍ରଥମ ଉଦ୍ଦେଶ୍ୟ ଜାଣିବା ପାଇଁ ମନୁଷ୍ୟମାତ୍ରକରେ ଯେଉଁ ସ୍ୱାଭାବିକ ଆତୁରତା ପ୍ରକାଶ କରିବା କଥା, ମୁଁ ସେହି ଭାବନାଦ୍ୱାରା ପ୍ରେରିତ ହୋଇଛି । ସତ୍ୟଦ୍ରଷ୍ଟା ଋଷିଗଣ ସମସ୍ୱରରେ ଯାହାକୁ ଦୈବବାଣୀ ନାମରେ ସମାଦର କରିଛନ୍ତି, ମୁଁ ମୋର ସାଧାରଣ



ବୁଦ୍ଧିରେ ତାହାକୁ ସ୍ୱାଧ୍ୟାୟ କରି ଋଷିଋଣରୁ ମୁକ୍ତ ହେବାପାଇଁ ଅକିଞ୍ଚନ ଉଦ୍ୟମ କରିଅଛି ଓ ସେଥିରୁ ଆନନ୍ଦଲାଭ କରୁଅଛି ।

ଋଗ୍‌ବେଦ ଅନନ୍ତଜ୍ଞାନର ସମୁଦ୍ର । ଏହି ସମୁଦ୍ରରେ ସନ୍ତରଣ କରି ତତ୍ତ୍ୱସଂଗ୍ରହ କରିବା ଅତ୍ୟନ୍ତ ଗମ୍ଭୀର, ପରିଶ୍ରମସାଧ୍ୟ ଓ ଉତ୍ତରଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ । ସନ୍ତରଣ-ଅନଭିଜ୍ଞ ମୋ ଭଳି ଦୁର୍ବଳ, ସାଧାରଣ ମନୁଷ୍ୟ ପକ୍ଷରେ ଏହା ଦୁଃସାହସିକ ବ୍ୟାପାର । ମୋଠାରେ ରଘୁବଂଶର ନିମ୍ନ ଶ୍ଳୋକଟି ପୂର୍ଣ୍ଣରୂପେଣ ଚରିତାର୍ଥ ହୁଏ —

କ୍ୱ ସୂର୍ଯ୍ୟପ୍ରଭବୋ ବଂଶଃ କ୍ୱ ଚାଲ୍ପବିଷୟା ମତିଃ ।
ତିତୀର୍ଷୁର୍ଦୁସ୍ତରଂ ମୋହାଦୁଡୁପେନାସ୍ମି ସାଗରମ୍ ॥

ଭୁବନେଶ୍ୱର
ଶିବରାତ୍ରି, ଶକାବ୍ଦ ୧୮୯୮
ଖ୍ରୀଷ୍ଟାବ୍ଦ ୧୯୭୬

ପ୍ରିୟବ୍ରତ ଦାସ

## ଦ୍ୱିତୀୟ ସଂସ୍କରଣର ଭୂମିକା

ପ୍ରାୟ ଏକ ବର୍ଷ ହେଲା 'ଋଗ୍‌ବେଦ ସୌରଭ'ର ପ୍ରଥମ ସଂସ୍କରଣ ଉପଲବ୍ଧ ହେଉ ନ ଥିଲା । ଅନ୍ୟ ତିନି ବେଦର 'ସୌରଭ' ଗ୍ରନ୍ଥଗୁଡ଼ିକ କ୍ରମାନ୍ୱୟରେ ପ୍ରକାଶିତ ହୋଇ ସାରିବା ପରେ ବେଦପ୍ରେମୀ ପାଠକଗଣ ବର୍ତ୍ତମାନ ଚାରୋଟି ଯାକ ଗ୍ରନ୍ଥ ଏକାଠି ରଖିବାପାଇଁ ଇଚ୍ଛା ପ୍ରକାଶ କରୁଛନ୍ତି । ତେଣୁ ଏହି ଦ୍ୱିତୀୟ ସଂସ୍କରଣ ସେମାନଙ୍କ ଇଚ୍ଛା ପୂର୍ଣ୍ଣ କରିବ । ଏଥିରେ ପୂର୍ବବର୍ତ୍ତୀ ସଂସ୍କରଣର ଅଶୁଦ୍ଧ ସ୍ଥଳଗୁଡ଼ିକୁ ଶୁଦ୍ଧ କରିବାରେ ଯତ୍ନ କରାଯାଇଛି ।

ଋଗ୍‌ବେଦର ସୌରଭ-ଗ୍ରନ୍ଥ ସଙ୍ଗେ ଏକ ସହସ୍ର ସୂକ୍ତ ସମ୍ବଳିତ 'ଚତୁର୍ବେଦ ସୂକ୍ତ-ସହସ୍ରିକା' ମଧ୍ୟ ଲୋକଲୋଚନକୁ ଆସିଅଛି । ଋଗ୍‌ବେଦରେ ଏପରି ଅନେକ ସୂକ୍ତ ରହିଛି, ଯାହାର ସମସ୍ତ ମନ୍ତ୍ର ଗୋଟିଏ ଗୋଟିଏ ଉପାଦେୟ ବିଷୟକୁ ଗମ୍ଭୀର ଭାବରେ ପ୍ରତିପାଦନ କରିଛନ୍ତି । ପରବର୍ତ୍ତୀ ପଦକ୍ଷେପ ରୂପରେ ସେଗୁଡ଼ିକର ସମ୍ପାଦନା ଓଡ଼ିଆ ପାଠକମାନଙ୍କ ପାଇଁ ଅତ୍ୟନ୍ତ କଲ୍ୟାଣକର ହୁଅନ୍ତା । କରୁଣାମୟଙ୍କ କରୁଣାରେ ତାହା ସଫଳ ହେବ ବୋଲି ଆଶା ପ୍ରକାଶ କରୁଅଛି ।

ଭୁବନେଶ୍ୱର
[illegible]
ଖ୍ରୀଷ୍ଟାବ୍ଦ ୧୯୬୯ — ପ୍ରିୟବ୍ରତ ଦାସ

---



ଓଁ

ମନୁର୍ଭବ ଜନୟା ଦୈବ୍ୟଂ ଜନମ୍ ॥

(ମଣ୍ଡଳ ୧୦, ସୂକ୍ତ ୫୩, ମନ୍ତ୍ର ୬)

॥ ମଣ୍ଡଳ ୧, ସୂକ୍ତ ୧, ମନ୍ତ୍ର ୧ ॥

ବିଶ୍ୱ ଏକ ଅଦ୍ଭୁତ ଯଜ୍ଞ

॥ ଓଁ ॥ ଅଗ୍ନିମୀଳେ ପୁରୋହିତଂ ଯଜ୍ଞସ୍ୟ ଦେବମୃତ୍ୱିଜମ୍ ।

ହୋତାରଂ ରତ୍ନଧାତମମ୍ ॥

(ମଧୁଚ୍ଛନ୍ଦା ବୈଶ୍ୱାମିତ୍ରଃ । ଅଗ୍ନିଃ । ଗାୟତ୍ରୀ ।)

ପଦପାଠ : ଅଗ୍ନିମ୍ । ଈଳେ । ପୁରଃଽହିତମ୍ । ଯଜ୍ଞସ୍ୟ । ଦେବମ୍ । ଋତ୍ୱିଜମ୍ । ହୋତାରମ୍ । ରତ୍ନଽଧାତମମ୍ ॥

ପଦାର୍ଥ : ( ଯଜ୍ଞସ୍ୟ ଦେବଂ ) ବ୍ରହ୍ମାଣ୍ଡରୂପକ ଯଜ୍ଞର ପ୍ରକାଶକ, ( ପୁରଃ ହିତମ୍ ) ସୃଷ୍ଟିର ପୂର୍ବକାଳରେ ବିଦ୍ୟମାନ, ସର୍ବହିତକାରକ ( ଋତ୍ୱିଜମ୍ ) ଋତୁ ପ୍ରଭୃତି ସୃଷ୍ଟିପ୍ରକ୍ରିୟାର ସଂଯୋଜକ, ( ରତ୍ନ-ଧାତମମ ) ସୂର୍ଯ୍ୟ, ନକ୍ଷତ୍ରାଦି ରମଣୀୟ ପଦାର୍ଥର ଧାରକ, ( ହୋତାରଂ ) ସୃଷ୍ଟିଯଜ୍ଞର ସମ୍ପାଦକ, ( ଅଗ୍ନିଂ ) ଅଗ୍ରଣୀ, ସର୍ବପ୍ରକାଶକ ପରମେଶ୍ୱରଙ୍କୁ ( ଈଳେ ) ସ୍ତୁତି କରୁଅଛି ।



॥ ମଣ୍ଡଳ ୧, ସୂକ୍ତ ୧, ମନ୍ତ୍ର ୧ ॥

—ଋଗ୍ବେଦର ପ୍ରଥମ ମନ୍ତ୍ର । ବେଦବାଣୀର ପ୍ରଥମ ସ୍ଫୁରଣ । ପ୍ରଥମ ଶବ୍ଦ "ଅଗ୍ନି" । ସୃଷ୍ଟିର ଆଦିମ ଋଷିଙ୍କର ପ୍ରଥମ ଉଦ୍‌ଗାର "ଅଗ୍ନିମୀଳେ" ଅର୍ଥାତ୍ 'ମୁଁ ସୃଷ୍ଟିର ଅଗ୍ରଣୀ ନେତାଙ୍କୁ ସ୍ତୁତି କରୁଅଛି ।' ପ୍ରକାଶସ୍ୱରୂପ, ସର୍ବଜ୍ଞ, ଗତିଦାତା, ଚୈତନ୍ୟମୟ ଓ ଅଗ୍ରଣୀ ହେବାରୁ ପରମାତ୍ମାଙ୍କର ଗୋଟିଏ ନାମ 'ଅଗ୍ନି' । ପଥପ୍ରଦର୍ଶନ, ଜ୍ଞାନ, ଗତି ଓ ଚେତନା ଲାଭପାଇଁ ପରମେଶ୍ୱରଙ୍କୁ ସର୍ବପ୍ରଥମେ ଅଗ୍ନିନାମରେ ସ୍ମରଣ କରାଯାଇଅଛି ।

ବିଶ୍ୱ ଏକ ଅଦ୍ଭୁତ ଯଜ୍ଞ । ଅଗ୍ରଣୀ ପରମାତ୍ମା 'ଯଜ୍ଞଦେବ' ଅର୍ଥାତ୍ ବିଶ୍ୱରୂପୀ ଏହି ଯଜ୍ଞର ପ୍ରକାଶକ ଅଟନ୍ତି । ଜୀବଙ୍କର ହିତସାଧନ ପାଇଁ ସୃଷ୍ଟି-ପ୍ରକ୍ରିୟାର ପୂର୍ବକାଳରେ ବିଦ୍ୟମାନ ଥିବାରୁ ସେ ହିଁ ବିଶ୍ୱଯଜ୍ଞର ପୁରୋହିତ । ଋତୁ ବା ସୃଷ୍ଟି ବ୍ୟବସ୍ଥାର ସଂସ୍ରଷ୍ଟା ହେବାରୁ ସେ ଋତ୍ୱିକ୍ । ସୂର୍ଯ୍ୟ, ନକ୍ଷତ୍ରାଦି ସକଳ ରମଣୀୟ ପଦାର୍ଥର ନିୟନ୍ତ୍ରା ହେବାରୁ ସେ ରତ୍ନଧାରକ ଅଟନ୍ତି । ବିଶ୍ୱ-ରୂପୀ ସମଷ୍ଟି-ଯଜ୍ଞର ସେ ଯଜମାନ, ହୋତା ଓ ସର୍ବସ୍ୱ ।

ହେ ଈଶ୍ୱରାଗ୍ନେ ! ଆପଣଙ୍କର ଅନୁପମ ବିଶ୍ୱଯଜ୍ଞର ଦର୍ଶକ ହୋଇ ମୋର ସମସ୍ତ ଶୁଭ ଭାବନା ଆପଣଙ୍କ ଠାରେ ସମର୍ପଣ କରୁଅଛି । ହେ ପ୍ରକାଶକ ! ଦେବତ୍ୱର ବିକାଶ ପାଇଁ ଆଲୋକ ଦାନ କର । ହେ ଅଗ୍ରଣୀ ! ହେ ଅଗ୍ରଗାମି ! ଯଜ୍ଞମାର୍ଗରେ ମୋତେ ପରିଚାଳନ କର ।

॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୪୬ ॥

ଏକ ପରମାତ୍ମାଙ୍କର ବହୁ ନାମ

ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନିମାହୁ-

ରଥୋ ଦିବ୍ୟଃ ସ ସୁପର୍ଣ୍ଣୋ ଗରୁତ୍ମାନ୍ ।

ଏକଂ ସଦ୍ ବିପ୍ରା ବହୁଧା ବଦ-

ନ୍ତ୍ୟଗ୍ନିଂ ଯମଂ ମାତରିଶ୍ୱାନମାହୁଃ ॥

(ଦୀର୍ଘତମା ଔଚଥ୍ୟଃ । ସୂର୍ଯ୍ୟଃ । ତ୍ରିଷ୍ଟୁପ୍ ।)

**ପଦପାଠ :** ଇନ୍ଦ୍ରମ୍ । ମିତ୍ରମ୍ । ବରୁଣମ୍ । ଅଗ୍ନିମ୍ । ଆହୁଃ । ଅଥୋ ଇତି । ଦିବ୍ୟଃ । ସଃ । ସୁଽପର୍ଣ୍ଣଃ । ଗରୁତ୍ମାନ୍ । ଏକମ୍ । ସତ୍ । ବିପ୍ରାଃ । ବହୁଧା । ବଦନ୍ତି । ଅଗ୍ନିମ୍ । ଯମମ୍ । ମାତରିଶ୍ୱାନମ୍ । ଆହୁଃ ॥

**ପଦାର୍ଥ :** (ବିପ୍ରାଃ) ମେଧାବୀ ବିଦ୍ୱାନ୍‌ଗଣ (ଏକଂ ସତ୍) ଏକ ସନାତନ ପରମାତ୍ମାଙ୍କୁ (ବହୁଧା) ବହୁ ପ୍ରକାରରେ (ବଦନ୍ତି) କହନ୍ତି; (ଅଗ୍ନିଂ) ପ୍ରକାଶମୟ ପରମାତ୍ମାଙ୍କୁ (ଇନ୍ଦ୍ରଂ ମିତ୍ରଂ ବରୁଣଂ ଆହୁଃ) ଇନ୍ଦ୍ର, ମିତ୍ର, ବରୁଣ ନାମରେ ସମ୍ବୋଧନ କରନ୍ତି; (ଅଥ) ଏବଂ (ସଃ) ସେ ହିଁ (ଦିବ୍ୟଃ) ଅଲୌକିକ (ସୁପର୍ଣ୍ଣଃ) ଉତ୍ତମ ପାଳକ (ଗରୁତ୍ମାନ୍) ଗୌରବମୟ ଅଟନ୍ତି; ତାହାଙ୍କୁ ହିଁ (ଅଗ୍ନିଂ) ଅଗ୍ନି (ଯମମ୍) ଯମ (ମାତରିଶ୍ୱାନମ୍) ବାୟୁ ବୋଲି (ଆହୁଃ) କହନ୍ତି ।





॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୪୬ ॥

—ବେଦ ଏକେଶ୍ୱର ସିଦ୍ଧାନ୍ତ ପ୍ରସ୍ତୁତ କରିଛନ୍ତି । ଅନନ୍ତ-ଗୁଣ-ସମନ୍ୱିତ ଏକ, ଅଦ୍ୱିତୀୟ ପରମାତ୍ମାଙ୍କୁ ଅସଂଖ୍ୟ ନାମରେ ବର୍ଣ୍ଣନା କରିଛନ୍ତି । ନିଖିଳ-ଐଶ୍ୱର୍ଯ୍ୟବାନ୍ ହେତୁ ସେ ଇନ୍ଦ୍ର, ସମସ୍ତଙ୍କ ସ୍ନେହୀ ଓ ମୃତ୍ୟୁ ପରେ ମଧ୍ୟ ରକ୍ଷକ ହୋଇଥିବାରୁ ମିତ୍ର, ବରଣୀୟ ଓ ଦୁଃଖନାଶକ ହେତୁ ବରୁଣ, ସର୍ବପ୍ରକାଶକ ହେତୁ ଅଗ୍ନି, ତେଜୋମୟ ହେତୁ ଦିବ୍ୟ, ସୁପାଳକ ହେତୁ ସୁପର୍ଣ୍ଣ, ସର୍ବବ୍ୟାପୀ ମହାନ୍‌ଆତ୍ମା ହେତୁ ଗରୁତ୍ମାନ୍, ସଂଯମକର୍ତ୍ତା ଯୋଗୁଁ ଯମ, ସୂକ୍ଷ୍ମାତିସୂକ୍ଷ୍ମ ରୂପରେ ସର୍ବତ୍ର ବିଦ୍ୟମାନ ଥିବାରୁ ମାତରିଶ୍ୱା ଇତ୍ୟାଦି ଅଟନ୍ତି । ସୂକ୍ଷ୍ମଦର୍ଶୀ ଋଷିଗଣ ସୃଷ୍ଟି ରଚନାକୁ ପର୍ଯ୍ୟାଲୋଚନା କରି ସ୍ରଷ୍ଟାଙ୍କ ବିବିଧ ଗୁଣର ପରିଚୟ ଲାଭ କରନ୍ତି ଓ ତାହାଙ୍କୁ ବିବିଧ ନାମରେ ସଂବୋଧନ କରନ୍ତି ।

କେହି କେହି କହନ୍ତି ଯେ, ପ୍ରାଚୀନ ଋଷିମାନେ ଅଗ୍ନି, ଇନ୍ଦ୍ର ପ୍ରଭୃତି ପୃଥକ୍ ପୃଥକ୍ ଦେବତାଙ୍କୁ ଉପାସନା କରୁଥିଲେ; ସେମାନେ ଜଡ଼ବସ୍ତୁଗୁଡ଼ିକୁ ଦେବତା ନାମ ଦେଇ ପୂଜା କରୁଥିଲେ; ସ୍ୱର୍ଗଲୋକରେ ବାସ କରୁଥିବା ଦେହଧାରୀ ଦେବତାମାନଙ୍କ ଖୋସାମୋଦ ପାଇଁ ସେମାନେ ବିବିଧ ସ୍ତୁତି ପ୍ରାର୍ଥନା କରୁଥିଲେ ଇତ୍ୟାଦି । ଏପରି କଳ୍ପନା ବେଦବିରୁଦ୍ଧ । ପ୍ରକୃତ ପକ୍ଷରେ ବେଦ ଏକ, ସନାତନ ଓ ସର୍ବବ୍ୟାପକ ପରମେଶ୍ୱରଙ୍କୁ ହିଁ ବିବିଧ ନାମରେ ବର୍ଣ୍ଣନା କରିଛନ୍ତି ।

॥ ମଣ୍ଡଳ ୧୦, ସୂକ୍ତ ୧୨୯, ମନ୍ତ୍ର ୩ ॥

ପ୍ରଳୟ କାଳର ଦୃଶ୍ୟ

ତମ ଆସୀତ୍ ତମସା ଗୂଢମଗ୍ରେ

ଽପ୍ରକେତଂ ସଲିଲଂ ସର୍ବମା ଇଦମ୍

ତୁଚ୍ଛ୍ୟେନାଭ୍ୱପିହିତଂ ଯଦାସୀତ୍

ତପସସ୍ତନ୍ମହିନାଜାୟତୈକମ୍ ॥

( ପ୍ରଜାପତିଃ ପରମେଷ୍ଠୀ । ଭାବବୃତ୍ତମ୍ । ତ୍ରିଷ୍ଟୁପ୍ । )

ପଦପାଠ : ତମଃ । ଆସୀତ୍ । ତମସା । ଗୂଢମ୍ । ଅଗ୍ରେ । ଅପ୍ରକେତମ୍ । ସଲିଲମ୍ । ସର୍ବମ୍ । ଆଃ । ଇଦମ୍ । ତୁଚ୍ଛ୍ୟେନ । ଆଭୁ । ଅପିହିତମ୍ । ଯତ୍ । ଆସୀତ୍ । ତପସଃ । ତତ୍ । ମହିନା । ଅଜାୟତ । ଏକମ୍ ॥

ପଦାର୍ଥ : (ଅଗ୍ରେ) ସୃଷ୍ଟିପୂର୍ବରୁ ( ତମସା ) ଅନ୍ଧକାରଦ୍ୱାରା ( ଗୂଢଂ ) ଆବୃତ ( ତମଃ ) ଅନ୍ଧକାର ( ଆସୀତ୍ ) ଥିଲା; ସେତେବେଳେ ( ଇଦଂ-ସର୍ବଂ ) ଏହି ସମସ୍ତ ବ୍ରହ୍ମାଣ୍ଡ ( ଅପ୍ରକେତମ୍ ) ସୂକ୍ଷ୍ମ ରୂପରେ ଅଜ୍ଞେୟ (ସଲିଲଂ ) ସମୁଦ୍ର ( ଆଃ ) ଥିଲା; ( ଯତ୍ ଆଭୁ ) ସେହି ଅବ୍ୟକ୍ତ ଉପାଦାନ ( ତୁଚ୍ଛ୍ୟେନ ) ତୁଚ୍ଛ ଅନ୍ଧକାରଦ୍ୱାରା ( ଅପିହିତମ୍ ) ଆବୃତ ( ଆସୀତ୍ ) ଥିଲା (ଏକଂ ) କାରଣାବସ୍ଥାରେ ଏକରୂପ ଥିବା ( ତତ୍ ) ସେହି ଜଗତ୍ ( ତପସଃ ମହିନା ) ପରମାତ୍ମାଙ୍କ ତପର ମହିମାଦ୍ୱାରା ( ଅଜାୟତ ) ଉତ୍ପନ୍ନ ହେଲା ।





॥ ମଣ୍ଡଳ ୧୦, ସୂକ୍ତ ୧୨୯, ମନ୍ତ୍ର ୩ ॥

— ସୃଷ୍ଟିପୂର୍ବରୁ ଚତୁର୍ଦିଗରେ ଘନ ଅନ୍ଧକାର ବ୍ୟାପି ରହିଥିଲା । ସମସ୍ତ ବ୍ରହ୍ମାଣ୍ଡ ସୂକ୍ଷ୍ମାଣୁ ରୂପରେ ଅଜ୍ଞେୟ ସମୁଦ୍ରପ୍ରାୟ ଭାସମାନ ହେଉଥିଲା । ଅଣୁପରମାଣୁଗୁଡ଼ିକ ଅସ୍ପଷ୍ଟ, ଅବ୍ୟକ୍ତ ଓ ନିଷ୍କ୍ରିୟ ଭାବରେ ଥିଲେ । ଅନନ୍ତ ଜୀବଗଣ ଅଣଶ୍ୱାସୀ ହୋଇ ମ୍ଳାନ ଅବସ୍ଥାରେ ଥିଲେ । ଜଗତର ଶାଶ୍ୱତ ସତ୍ତା ଅର୍ଥାତ୍ ଜୀବ ଓ ପ୍ରକୃତିର ସୂକ୍ଷ୍ମରୂପ ମଧ୍ୟରେ ପରମାତ୍ମା ବିଦ୍ୟମାନ ଥିଲେ । ଜୀବ ଓ ପ୍ରକୃତିର ଏହି ସୂକ୍ଷ୍ମ ଅବ୍ୟକ୍ତ ସ୍ଥିତିକୁ ବେଦମନ୍ତ୍ରରେ 'ଅଭୁ' କୁହାଯାଇଛି ।

ପରମାତ୍ମାଙ୍କର ତପଦ୍ୱାରା ବ୍ରହ୍ମାଣ୍ଡ ଧୀରେ ଧୀରେ ବିକାଶ ଲାଭ କଲା । 'ତପ' ବେଦର ଏକ ପାରିଭାଷିକ ଶବ୍ଦ । ପ୍ରଳୟ ପରେ ସୃଷ୍ଟିନିର୍ମାଣ ପାଇଁ ପ୍ରଜାପତି ପରମାତ୍ମାଙ୍କର ସଂକଳ୍ପକୁ ତପ କୁହାଯାଇଛି । ତପ ଦୃଶ୍ୟମାନ ଜଗତ୍‌ର ସୃଷ୍ଟିପୂର୍ବରୁ ପରମ ସ୍ରଷ୍ଟା ପ୍ରଭୁଙ୍କ ସହଜ ସଂକଳ୍ପ ଅଟେ; ପରନ୍ତୁ ଏହାର କ୍ରିୟା ଅତ୍ୟନ୍ତ ବେଗଶୀଳ ଓ ବିକାଶଶୀଳ । ସର୍ବଶକ୍ତିମାନ୍ ପ୍ରଭୁ ପରମାଣୁମାନଙ୍କ ଠାରେ ଗତିସଂଚାର କରିବା ପରେ ନିଷ୍କ୍ରିୟ ପ୍ରକୃତି ଆନ୍ଦୋଳିତ ହୋଇ ଉଠିଲା । ସତ୍ତ୍ୱ, ରଜଃ ଓ ତମୋଗୁଣର ସାମ୍ୟାବସ୍ଥାରେ ଥିବା ପ୍ରକୃତିରେ ବିକୃତି ଓ ରୂପାନ୍ତର ପ୍ରକଟିତ ହେଲା । ପ୍ରକୃତି ଗତିଶୀଳ ହୋଇ ମହତ୍ତତ୍ତ୍ୱ ରୂପ ଧାରଣ କଲା ଓ ସୃଷ୍ଟିକ୍ରମ ଆରମ୍ଭ ହେଲା ।

॥ ମଣ୍ଡଳ ୧୦, ସୂକ୍ତ ୧୨୯, ମନ୍ତ୍ର ୪ ॥

## ସୃଷ୍ଟିର ପ୍ରୟୋଜନ

କାମସ୍ତଦଗ୍ରେ ସମବର୍ତ୍ତତାଧି

ମନସୋ ରେତଃ ପ୍ରଥମଂ ଯଦାସୀତ୍ ।

ସତୋ ବନ୍ଧୁମସତି ନିରବିନ୍ଦନ୍

ହୃଦି ପ୍ରତୀଷ୍ୟା କବୟୋ ମନୀଷା ॥

(ପ୍ରଜାପତିଃ ପରମେଷ୍ଠୀ । ଭାବବୃତ୍ତମ୍ । ତ୍ରିଷ୍ଟୁପ୍ ।)

ପଦପାଠ: କାମଃ । ତତ୍ । ଅଗ୍ରେ । ସମ୍ । ଅବର୍ତ୍ତତ । ଅଧି । ମନସଃ । ରେତଃ । ପ୍ରଥମମ୍ । ଯତ୍ । ଆସୀତ୍ । ସତଃ । ବନ୍ଧୁମ୍ । ଅସତି । ନିଃ । ଅବିନ୍ଦନ୍ । ହୃଦି । ପ୍ରତିଽଇଷ୍ୟ । କବୟଃ । ମନୀଷା ॥

ପଦାର୍ଥ: ( ଯତ୍ ) ଯେହେତୁ ( ପ୍ରଥମଂ ) ପ୍ରଳୟ ପୂର୍ବରୁ ( ରେତଃ ) ପୂର୍ବସୃଷ୍ଟିର ଜୀବମାନଙ୍କର କର୍ମରୂପ ବୀଜବସ୍ତୁ (ଆସୀତ୍ ) ବିଦ୍ୟମାନ ଥିଲା; ( ତତ୍ ) ତେଣୁ ( ଅଗ୍ରେ ) ଏହି ସୃଷ୍ଟି ପୂର୍ବରୁ ( ମନସଃ ଅଧି) ପରମାତ୍ମାଙ୍କଠାରେ ( କାମଃ ) ଜଗତର ନିର୍ମାଣର ଇଚ୍ଛା ( ସମବର୍ତ୍ତତ ) ଉତ୍ପନ୍ନ ଥିଲା । ଏହାପରେ ( କବୟଃ ) କ୍ରାନ୍ତଦର୍ଶୀ ଋଷିଗଣ ( ହୃଦି ) ହୃଦୟରେ (ମନୀଷା ପ୍ରତୀଷ୍ୟ ) ପୁନଃ ପୁନଃ ବିଚାର କରି ( ଅସତି ) ଅପ୍ରକଟିତ ତତ୍ତ୍ୱରେ ( ସତଃ ବନ୍ଧୁମ୍ ) ସତ୍ ରୂପ ପ୍ରକଟିତ ତତ୍ତ୍ୱକୁ ବାନ୍ଧିଥିବା ବଳ ( ନିରବିନ୍ଦନ୍) ପ୍ରାପ୍ତ ହେଲେ ।





॥ ମଣ୍ଡଳ ୧୦, ସୂକ୍ତ ୧୨୯, ମନ୍ତ୍ର ୪ ॥

—ପ୍ରଳୟର ଅବଧି ସମାପ୍ତ ହେବା ପରେ ପରମାତ୍ମା ସୃଷ୍ଟି ରଚନା ପାଇଁ ସଂକଳ୍ପ କରନ୍ତି । ପୁନର୍ବାର ସୃଷ୍ଟି ରଚନାର ପ୍ରୟୋଜନ କଣ ? ମନ୍ତ୍ରରେ ଏହାର ଉତ୍ତର ଦର୍ଶାଇ ଦିଆଯାଇଛି । ପ୍ରଳୟ ପୂର୍ବରୁ ଯେଉଁ ସୃଷ୍ଟି ଥିଲା, ସେଥିରେ ଜୀବଗଣ ନିଜ ନିଜ ପୁଣ୍ୟାପୁଣ୍ୟ କର୍ମ ସମ୍ପାଦନ କରିଥିଲେ । ପ୍ରଳୟ କାଳରେ ଏମାନେ ପ୍ରସୁପ୍ତ ଅବସ୍ଥାରେ ଥିବାରୁ ସୁଖଦୁଃଖାଦି କର୍ମଫଳ ଭୋଗ କରି ପାରି ନ ଥିଲେ । ଏଣୁ ପୁନର୍ବାର ସୃଷ୍ଟିର ପ୍ରୟୋଜନ ହେଲା । ଜୀବମାନଙ୍କ ପୂର୍ବକଳ୍ପର କର୍ମ ସେମାନଙ୍କ ନୂତନ ସୃଷ୍ଟିର କାରଣ ହୁଏ । ସେଥିପାଇଁ ସେମାନେ ସ୍ୱକୀୟ କର୍ମଫଳାନୁସାରେ ଦେହଧାରଣ କରନ୍ତି ଓ ନିର୍ବାଣ ପାଇଁ ସୁଯୋଗ ଲାଭ କରନ୍ତି । ଏହା ହିଁ ଜଗତର ସୃଷ୍ଟି ଓ ଆତ୍ମାର ପୁନର୍ଜନ୍ମର ରହସ୍ୟ ଅଟେ ।

ବେଦମନ୍ତ୍ରରେ ଜୀବମାନଙ୍କ ସଞ୍ଚିତ କର୍ମସମୂହକୁ ନୂଆ ସୃଷ୍ଟିର 'ରେତ' ବା ବୀଜ କୁହାଯାଇଛି । ଉକ୍ତ କର୍ମର ଫଳଦାନ ପାଇଁ ପରମାତ୍ମା ସୃଷ୍ଟି ରଚନାପୂର୍ବରୁ ଯେଉଁ କାମନା କରନ୍ତି, ତାହାକୁ ପୂର୍ବବର୍ତ୍ତୀ ମନ୍ତ୍ରରେ 'ତପ' କୁହାଯାଇଛି । ସୂକ୍ଷ୍ମଦର୍ଶୀ ଋଷିଗଣ ସୃଷ୍ଟିରୂପକ କାର୍ଯ୍ୟକୁ ଦେଖି ତାହାର ମୂଳକାରଣ ଗବେଷଣା କରି ଥାଆନ୍ତି ଯେପରି ଦେହରଚନାକୁ ପର୍ଯ୍ୟାଲୋଚନା କଲେ ଆତ୍ମାର ପରିଚୟ ମିଳେ । ତଦ୍ୱାରା କର୍ତ୍ତା, କର୍ମ ଓ କର୍ମଫଳର ରହସ୍ୟ ବୁଝିହୁଏ ।

॥ ମଣ୍ଡଳ ୪, ସୂକ୍ତ ୧୭, ମନ୍ତ୍ର ୧୩ ॥

ସୃଷ୍ଟି ଓ ପ୍ରଳୟ

କ୍ଷିୟନ୍ତଂ ତ୍ୱମକ୍ଷିୟନ୍ତଂ କୃଣୋତୀ-

ୟର୍ତି ରେଣୁଂ ମଘବା ସମୋହମ୍

ବିଭଞ୍ଜନୁରଶନିମାଁ ଇବ ଦ୍ୟୌ-

ରୁତ ସ୍ତୋତାରଂ ମଘବା ବସୌ ଧାତ୍ ॥

( ବାମଦେବୋ ଗୌତମଃ । ଇନ୍ଦ୍ରଃ । ତ୍ରିଷ୍ଟୁପ୍ )

ପଦପାଠ: କ୍ଷିୟନ୍ତମ୍ । ତ୍ୱମ୍ । ଅକ୍ଷିୟନ୍ତମ୍ । କୃଣୋତି । ଇୟର୍ତି । ରେଣୁମ୍ । ମଘଽବା । ସମ୍ଽଓହମ୍ । ବିଽଭଞ୍ଜନୁଃ । ଅଶନିମାନ୍ଽଇବ । ଦ୍ୟୌଃ । ଉତ । ସ୍ତୋତାରମ୍ । ମଘଽବା । ବସୌ । ଧାତ୍ ॥

ପଦାର୍ଥ : (ମଘବା) ଐଶ୍ୱର୍ଯ୍ୟଶାଳୀ ପରମାତ୍ମା (ଅକ୍ଷିୟନ୍ତଂ ତ୍ୱଂ କ୍ଷିୟନ୍ତଂ କୃଣୋତି) ସଂଗୁପ୍ତ ଥିବା ଅବ୍ୟକ୍ତକୁ ବ୍ୟକ୍ତ କରନ୍ତି; (ସମୋହଂ ରେଣୁମ୍ ଇୟର୍ତି) ସଂଗଠିତ ପିଣ୍ଡକୁ ଧୂଳିରୂପ କରି ଦିଅନ୍ତି; (ବିଭଞ୍ଜନୁଃ) ପ୍ରତିଦ୍ୱନ୍ଦ୍ୱୀଙ୍କୁ (ଅଶନିମାନ୍ ଇବ ଦ୍ୟୌଃ) ବଜ୍ର ମେଘକୁ ଛିନ୍ନଭିନ୍ନ କରିବା ପରି ଅସ୍ତବ୍ୟସ୍ତ କରନ୍ତି (ଉତ) ଏବଂ (ସ୍ତୋତାରଂ ବସୌ ଧାତ୍) ସ୍ତୁତିଶୀଳକୁ ସୁରକ୍ଷିତ ରଖନ୍ତି ।





॥ ମଣ୍ଡଳ ୪, ସୂକ୍ତ ୧୭, ମନ୍ତ୍ର ୧୩ ॥

—ବିଶ୍ୱପଟର ଚତୁର୍ଦ୍ଦିଗରେ ବିକ୍ଷିପ୍ତ ଥିବା ଅସଂଖ୍ୟ ଅସ୍ପଷ୍ଟ ଅଣୁଗୁଡ଼ିକୁ ବ୍ୟକ୍ତ କରନ୍ତି; ଫଳରେ ସୃଷ୍ଟି ଆରମ୍ଭ ହୁଏ । ସୂର୍ଯ୍ୟାଦି ପୃଥକ୍ ପୃଥକ୍ ପଦାର୍ଥ ପ୍ରକଟିତ ହୁଅନ୍ତି । ଜୀବଗଣ ଦେହଧାରଣ କରନ୍ତି । ସୃଷ୍ଟିକାଳର ଅବଧି ସମାପ୍ତ ହେବା ପରେ ବିଧାତା ସମସ୍ତ ବ୍ରହ୍ମାଣ୍ଡକୁ ପୁନରାୟ ନିଜ ମଧ୍ୟରେ ଅବ୍ୟକ୍ତ ରୂପରେ ରଖନ୍ତି । ଏତେବେଳେ ଜୀବଗଣ ପ୍ରମ୍ଳାନ ଅବସ୍ଥାରେ ରହନ୍ତି । ପରନ୍ତୁ ପରମାତ୍ମା ସର୍ବତ୍ର ଓତପ୍ରୋତ ଥାଆନ୍ତି । ପ୍ରଳୟ ସମୟର ଅବ୍ୟକ୍ତ ଅଣୁକୁ ବେଦମନ୍ତ୍ରରେ 'ରେଣୁ' କୁହାଯାଇଛି ।

ସୃଷ୍ଟି-ପ୍ରଳୟର ଅଲଙ୍ଘ୍ୟ ସଂବିଧାନକୁ ସୂର୍ଯ୍ୟାଦି ଜଡ଼ ପଦାର୍ଥ ଉଲ୍ଲଙ୍ଘନ କରିପାରନ୍ତି ନାହିଁ । ଜୀବଗଣ ଐଶ୍ୱରୀୟ ନିୟମକୁ ପ୍ରତିରୋଧ କରି ପାରନ୍ତି ନାହିଁ । ସୃଷ୍ଟି-ପ୍ରଳୟାଦି କ୍ରମ ବିଧାତାଙ୍କ ଅଟଳ ନିୟମ ଅନୁସାରେ ସରଳ ଓ ସହଜ ଭାବରେ ସଂଗଠିତ ହୁଏ । ସୃଷ୍ଟି ନିୟମର ଅନୁକୂଳ ଆଚରଣ କରୁଥିବା ଜୀବ ତାହାଙ୍କ ଆଶ୍ରୟରେ ସୁରକ୍ଷିତ ରହେ । ପ୍ରଭୁଙ୍କ ପ୍ରସ୍ତୁତ ନିୟମ-ଗୁଡ଼ିକ ପ୍ରତିପାଳନ କରୁଥିବା ମନୁଷ୍ୟକୁ 'ସ୍ତୁତିଶୀଳ' କୁହାଯାଇଛି । ସ୍ତୁତିଶୀଳମାନଙ୍କୁ ପ୍ରଭୁ ଅଭୟ ଦାନ କରନ୍ତି ।

॥ ମଣ୍ଡଳ ୧୦, ସୂକ୍ତ ୭୧, ମନ୍ତ୍ର ୧ ॥

## ବାଣୀର ଉତ୍ପତ୍ତି

ବୃହସ୍ପତେ ପ୍ରଥମଂ ବାଚୋ ଅଗ୍ରଂ

ଯତ୍ ପ୍ରୈରତ ନାମଧେୟଂ ଦଧାନାଃ ।

ଯଦେଷାଂ ଶ୍ରେଷ୍ଠଂ ଯଦରିପ୍ରମାସୀତ୍

ପ୍ରେଣା ତଦେଷାଂ ନିହିତଂ ଗୁହାବିଃ ॥

( ବୃହସ୍ପତିରାଙ୍ଗିରସଃ । ଜ୍ଞାନମ୍ । ତ୍ରିଷ୍ଟୁପ୍ । )

ପଦପାଠ : ବୃହସ୍ପତେ । ପ୍ରଥମମ୍ । ବାଚଃ । ଅଗ୍ରମ୍ । ଯତ୍ । ପ୍ର । ଐରତ । ନାମଽଧେୟମ୍ । ଦଧାନାଃ । ଯତ୍ । ଏଷାମ୍ । ଶ୍ରେଷ୍ଠମ୍ । ଯତ୍ । ଅରିପ୍ରମ୍ । ଆସୀତ୍ । ପ୍ରେଣା । ତତ୍ । ଏଷାମ୍ । ନିଽହିତମ୍ । ଗୁହା । ଆବିଃ ॥

ପଦାର୍ଥ : (ବୃହସ୍ପତେ) ହେ ବେଦବାଣୀର ସ୍ୱାମୀ ! (ନାମଧେୟମ୍) ବିବିଧ ବସ୍ତୁ ଓ କ୍ରିୟାର ନାମକୁ (ଦଧାନାଃ) ଧାରଣ କରୁଥିବା (ଯତ୍) ଯାହା (ବାଚଃ ଅଗ୍ରଂ) ବାଣୀର ଅଗ୍ରଭାଗକୁ (ପ୍ରଥମଂ) ମନୁଷ୍ୟସୃଷ୍ଟି ସମୟରେ (ପ୍ରୈରତ) ଆଦିମ ଋଷିମାନେ ପ୍ରେରଣା ଦେଲେ (ଯତ୍) ଯେହେତୁ (ଏଷାମ୍) ଏହି ଋଷିମାନଙ୍କର (ଶ୍ରେଷ୍ଠମ୍) ଶ୍ରେଷ୍ଠତ୍ୱ (ଯତ୍) ଯେହେତୁ (ଅରିପ୍ରମ୍) ନିଷ୍ପାପତ୍ୱ (ଆସୀତ୍) ଥିଲା, (ତତ୍) ତେଣୁ (ପ୍ରେଣା) ଆପଣଙ୍କ ପ୍ରେମବଶତଃ, ପ୍ରେରଣା ଦ୍ୱାରା (ଏଷାମ୍) ଏମାନଙ୍କର (ଗୁହା) ହୃଦୟଗୁମ୍ଫାରେ ଥିବା (ନିହିତଂ) ଲୁକ୍କାୟିତ ବାଣୀକୁ (ଆବିଃ) ଅନ୍ୟ ମନୁଷ୍ୟଙ୍କ ପାଇଁ ଏମାନେ ଆବିଷ୍କାର କଲେ ।





॥ ମଣ୍ଡଳ ୧୦, ସୂକ୍ତ ୭୧, ମନ୍ତ୍ର ୧ ॥

—ସୃଷ୍ଟିର ଆରମ୍ଭରେ ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ବନସ୍ପତି, ପଶୁପକ୍ଷୀ ପ୍ରଭୃତି ସମସ୍ତଙ୍କ ପ୍ରକାଶଲାଭ କରିବା ପରେ ଜୀବଶ୍ରେଷ୍ଠ ମନୁଷ୍ୟ ସୃଷ୍ଟି ହେଲେ । ଏମାନେ ପୂର୍ବବର୍ତ୍ତୀ କଳ୍ପ ବା ସୃଷ୍ଟିରେ ତପସ୍ୱୀ, ପୁଣ୍ୟାତ୍ମା ଥିଲେ । ଇନ୍ଦ୍ରିୟମାନ ଜଗତର ବିଭିନ୍ନ ବସ୍ତୁର ପରିଚୟ-ଲାଭ ପାଇଁ ଏହି ଆତ୍ମାମାନଙ୍କର ହୃଦୟ ବ୍ୟାକୁଳ ହୋଇଉଠିଲା । ସେତେବେଳେ ପରମେଶ୍ୱର [illegible] ବାଣୀର ପ୍ରେରଣା ଦେଲେ ।

ଏହା ହିଁ ସକଳ ଜ୍ଞାନର ଆଧାର ବେଦବାଣୀ । ପ୍ରତି ସୃଷ୍ଟିର ଆରମ୍ଭରେ ଆଦିମ କାନ୍ତଦର୍ଶୀ ଋଷି ବା ଋଷିମାନଙ୍କ ଅନ୍ତଃକରଣରେ ସ୍ୱତଃସ୍ଫୂର୍ତ୍ତଭାବରେ ବେଦବାଣୀ ପ୍ରକଟିତ ହୁଏ । ଏହି ବାଣୀରୁ ବିବିଧ ମାନୁଷୀ ଭାଷା ପ୍ରସାରଲାଭ କରେ । ବେଦର ପ୍ରତ୍ୟେକ ଶବ୍ଦ ଓ ତାହାର ଅର୍ଥମଧ୍ୟରେ ଯୌଗିକ ସମ୍ବନ୍ଧ ରହିଥାଏ, ତାହା ସବୁ ସୃଷ୍ଟିରେ ସମାନ ରହେ । ସବୁ ସୃଷ୍ଟିରେ ବେଦମନ୍ତ୍ର ସେପରି ସମାନ, ଶବ୍ଦାର୍ଥସମ୍ବନ୍ଧ ସେହିପରି ନିତ୍ୟ । ବେଦଭଣ୍ଡାରରୁ ଶବ୍ଦ ଗ୍ରହଣ କରି ଆଦିମ ଋଷିଗଣ ବିବିଧ ବସ୍ତୁ ଓ କ୍ରିୟାକଳାପର ନାମକରଣ କରନ୍ତି ।

॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୨୦ ॥

ଦୁଇଟି ସହଯୋଗୀ ପକ୍ଷୀ

ଦ୍ୱା ସୁପର୍ଣା ସଯୁଜା ସଖାୟା

ସମାନଂ ବୃକ୍ଷଂ ପରି ଷସ୍ୱଜାତେ ।

ତୟୋରନ୍ୟଃ ପିପ୍ପଲଂ ସ୍ୱାଦ୍ୱ

ଅନଶ୍ନନ୍ନନ୍ୟୋ ଅଭି ଚାକଶୀତି ॥

ପଦପାଠ: ଦ୍ୱା । ସୁଽପର୍ଣା । ସଽଯୁଜା । ସଖାୟା । ସମାନମ୍ । ବୃକ୍ଷମ୍ । ପରି । ସସ୍ୱଜାତେ ଇତି । ତୟୋଃ । ଅନ୍ୟଃ । ପିପ୍ପଲମ୍ । ସ୍ୱାଦୁ । ଅତ୍ତି । ଅନଶ୍ନନ୍ । ଅନ୍ୟଃ । ଅଭି । ଚାକଶୀତି ॥

ପଦାର୍ଥ: (ଦ୍ୱା ସୁପର୍ଣା) ସୁନ୍ଦର ପକ୍ଷ ଥିବା ଦୁଇଟି ପକ୍ଷୀ (ସଯୁଜା) ଏକାଠି ମିଶି (ସଖାୟା) ମିତ୍ର ଭାବରେ (ସମାନଂ ବୃକ୍ଷମ୍) ଗୋଟିଏ ବୃକ୍ଷ ଉପରେ (ପରିଷସ୍ୱଜାତେ) ପରସ୍ପରକୁ ଆଲିଙ୍ଗନ କରନ୍ତି; (ତୟୋଃ) ଉଭୟ ମଧ୍ୟରୁ (ଅନ୍ୟଃ) ଏକ ପିପ୍ପଲଂ ସ୍ୱାଦୁ (ଅତ୍ତି) ସ୍ୱାଦୁ ଫଳ ଭୋଗ କରେ; (ଅନ୍ୟଃ ଅନଶ୍ନନ୍) ଅନ୍ୟ ପକ୍ଷୀଟି କିଛି ନ ଖାଇ (ଅଭି ଚାକଶୀତି) କେବଳ ସାକ୍ଷୀ ରୂପରେ ଦେଖୁଥାଏ ।





॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୨୦ ॥

—ଜୀବ ଓ ବ୍ରହ୍ମ ଉଭୟେ ଚେତନଶୀଳ, ପରସ୍ପରର ମିତ୍ର ଅଟନ୍ତି । ଆଲଂକାରିକ ରୂପରେ କୁହାଯାଇଅଛି ଯେ ଏହି ଦୁହେଁ ଦୁଇଟି ପକ୍ଷୀଭାବରେ ବୃକ୍ଷରୂପକ ଦେହରେ ଏକତ୍ର ନିବାସ କରନ୍ତି । ଜୀବାତ୍ମା ନିଜର ଅଳ୍ପଜ୍ଞତା କାରଣରୁ ପରମାତ୍ମାଙ୍କ ଉପସ୍ଥିତି ଭୁଲିଯାଏ, ବୃକ୍ଷଫଳ ଅର୍ଥାତ୍ କର୍ମସ୍ୱରୂପୀ ସ୍ୱାଦୁ ଫଳ ସଂସ୍ପର୍ଶରେ ଆସକ୍ତ ରହି ସର୍ବଦା ଦୁଃଖୀ ହୁଏ । ପରନ୍ତୁ ପରମାତ୍ମା ଅଧ୍ୟକ୍ଷ ବା ସାକ୍ଷୀ ରୂପରେ ରହିଥାନ୍ତି । ଫଳଭୋଗରେ ତାହାଙ୍କର କୌଣସି ଆବଶ୍ୟକତା ନ ଥାଏ । ଜୀବ ପରମାତ୍ମାଙ୍କ ସାନ୍ନିଧ୍ୟ ଉପଲବ୍ଧି କରିପାରିଲେ ଭବସଂଯୋଗରେ ଲିପ୍ତ ରହେ ନାହିଁ ।

ମନ୍ତ୍ରରେ ବୈଦିକ ତ୍ରୈତ ସିଦ୍ଧାନ୍ତ ପ୍ରତିପାଦିତ ହୋଇଅଛି । ପ୍ରକୃତି, ଜୀବ ଓ ବ୍ରହ୍ମ—ଏହି ତିନି ପଦାର୍ଥ ଅନାଦି, ଅନନ୍ତ ଓ ନିତ୍ୟ ଅଟନ୍ତି । ଏହି ତିନି ତତ୍ତ୍ୱ ଅଟେ । ମୋର ଚକ୍ଷୁ ଜଡ଼ ପଦାର୍ଥ । ମୁଁ (ଜୀବ) ଚକ୍ଷୁର ଭୋକ୍ତା । ପରମାତ୍ମା ଚକ୍ଷୁର ନିର୍ମାତା । ସେ ମୋ ପାଇଁ ଚକ୍ଷୁର ଯୋଜନା କରିଛନ୍ତି, ପରନ୍ତୁ ଚକ୍ଷୁ ଦ୍ୱାରା ଦେଖନ୍ତି ନାହିଁ ।

॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୩୮ ॥

ଜୀବାତ୍ମା

ଅପାଙ୍ ପ୍ରାଙେତି ସ୍ୱଧୟା ଗୃଭୀତୋ

ଽମର୍ତ୍ତ୍ୟୋ ମର୍ତ୍ତ୍ୟେନା ସୟୋନିଃ ।

ତା ଶଶ୍ୱନ୍ତା ବିଷୂଚୀନା ବିୟନ୍ତା

ନ୍ୟନ୍ୟଂ ଚିକ୍ୟୁର୍ନ ନି ଚିକ୍ୟୁରନ୍ୟମ୍ ॥

(ଦୀର୍ଘତମା ଔଚଥ୍ୟଃ । ବିଶ୍ୱେଦେବାଃ । ତ୍ରିଷ୍ଟୁପ୍ ।)

ପଦପାଠ: ଅପାଙ୍ । ପ୍ରାଙ୍ । ଏତି । ସ୍ୱଧୟା । ଗୃଭୀତଃ । ଅମର୍ତ୍ତ୍ୟଃ । ମର୍ତ୍ତ୍ୟେନ । ସଽୟୋନିଃ । ତା । ଶଶ୍ୱନ୍ତା । ବିଷୂଚୀନା । ବିୟନ୍ତା । ନି । ଅନ୍ୟମ୍ । ଚିକ୍ୟୁଃ । ନ । ନି । ଚିକ୍ୟୁଃ । ଅନ୍ୟମ୍ ॥

ପଦାର୍ଥ: ଜୀବାତ୍ମା (ସ୍ୱଧୟା ଗୃଭୀତଃ) ନିଜ କାର୍ଯ୍ୟରେ ବନ୍ଧା ହୋଇ (ଅପାଙ୍ ଏତି) ଅତ୍ୟନ୍ତ ନୀଚ ଗତି ପ୍ରାପ୍ତ ହୁଏ, ତଥା (ପ୍ରାଙ୍ ଏତି) ଉତ୍କୃଷ୍ଟ ଗତି ପ୍ରାପ୍ତ ହୁଏ; (ଅମର୍ତ୍ତ୍ୟଃ) ଅବିନାଶୀ (ମର୍ତ୍ତ୍ୟେନ ସୟୋନିଃ) ମରଣଶୀଳ ଦେହ ସହିତ ରହିଥାଏ; (ତା) ଏହି ଦୁହେଁ (ଶଶ୍ୱନ୍ତା) ସର୍ବଦା ଗୋଟିଏ ଅନ୍ୟ ସହିତ ରହନ୍ତି; (ବିଷୂଚୀନା) ପରସ୍ପର ବିରୁଦ୍ଧ ଗତିଶୀଳ (ବିୟନ୍ତା) ବିୟୋଗ ପ୍ରାପ୍ତ ଅଟନ୍ତି; ସଂସାରୀ ଜୀବମାନେ (ଅନ୍ୟମ୍) ସେଥିରୁ ଗୋଟିକୁ (ନିଚିକ୍ୟୁଃ) ଭଲ ଭାବରେ ଜାଣନ୍ତି; (ଅନ୍ୟମ୍) ଅନ୍ୟଟିକୁ (ନ ନିଚିକ୍ୟୁଃ) ଜାଣନ୍ତି ନାହିଁ ।



॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୩୮ ॥

—ବେଦ ଏଠାରେ ଜୀବାତ୍ମାର ଲକ୍ଷଣ ବର୍ଣ୍ଣନା କରୁଛନ୍ତି । ଏଠାରେ କୁହାଯାଉଅଛି—(କ) ଜୀବାତ୍ମା ନିଜ କର୍ମଫଳ ଅନୁସାରେ ନିକୃଷ୍ଟ ବା ଉତ୍କୃଷ୍ଟ ଦେହ ପାଏ । (ଖ) ସେ ସ୍ୱୟଂ ଅବିନାଶୀ, ପରନ୍ତୁ ବିନାଶଶୀଳ ଦେହରେ ରହେ । ଦେହ ତାର ସାଧନ ଅଟେ । କଲ୍ୟାଣ ପାଇଁ ଏହି ସାଧନାକୁ ସେ ବ୍ୟବହାର କରେ । (ଗ) ଜୀବାତ୍ମା ଓ ଦେହ ଭିନ୍ନ ଭିନ୍ନ ତତ୍ତ୍ୱ । ପ୍ରଥମଟି ଚେତନ ଓ ଦ୍ୱିତୀୟଟି ଜଡ଼ । (ଘ) ଆତ୍ମା ଓ ଶରୀରର ସଂଯୋଗବିୟୋଗ ଘଟୁଥାଏ । ସଂଯୋଗର ନାମ ଜନ୍ମ ଓ ବିୟୋଗର ନାମ ମୃତ୍ୟୁ । (ଙ) ସାଧାରଣ ଲୋକେ ଏହି ଉଭୟ ମଧ୍ୟରୁ ଦେହ ବିଷୟରେ ଅଧିକ ଜାଣନ୍ତି, କାରଣ ଏହା ପ୍ରତ୍ୟକ୍ଷ ବସ୍ତୁ ଅଟେ । ତେଣୁ ଆତ୍ମୋନ୍ନତି ପାଇଁ ଚେଷ୍ଟା ନ କରି ସେମାନେ ଦେହସୁଖରେ ନିବିଷ୍ଟ ରହନ୍ତି ।

ହେ ମନୁଷ୍ୟ ! ତୁମେ ଆତ୍ମସ୍ୱରୂପ ଅଟ । ଦେହ ତୁମର; ତୁମେ ସ୍ୱୟଂ ଦେହ ନୁହଁ । ଦେହ ମଧ୍ୟରେ ବାସ କରିବାବେଳେ ସର୍ବଦା ତୁମର ପ୍ରକୃତ ସ୍ୱରୂପକୁ ଭୁଲିଯାଅ ନାହିଁ । ଦେହକୁ ସ୍ୱାମୀ ବୋଲି ଭାବି କଦାପି ଅପବିତ୍ର ଆଚରଣ କର ନାହିଁ ।

॥ ମଣ୍ଡଳ ୬, ସୂକ୍ତ ୪୫, ମନ୍ତ୍ର ୨୬ ॥

ଚିରନ୍ତନ ମିଶ୍ର

ଦୂଣାଶଂ ସଖ୍ୟଂ ତବ ଗୌରସି ବୀର ଗବ୍ୟତେ ।

ଅଶ୍ୱୋ ଅଶ୍ୱାୟତେ ଭବ ॥

( ଶଂଯୁର୍ବାର୍ହସ୍ପତ୍ୟଃ । ଇନ୍ଦ୍ରଃ । ଗାୟତ୍ରୀ )

ପଦପାଠ: ଦୁଃନଶମ୍ । ସଖ୍ୟମ୍ । ତବ । ଗୌଃ । ଅସି । ବୀର । ଗବ୍ୟତେ । ଅଶ୍ୱଃ । ଅଶ୍ୱଯତେ । ଭବ ॥

ପଦାର୍ଥ: (ବୀର) ହେ ବଳବାନ୍ ପ୍ରଭୋ ! (ତବ ସଖ୍ୟଂ) ତୁମ୍ଭ ସହିତ ମିତ୍ରତା (ଦୁଣାଶଂ) ନଷ୍ଟ ହୁଏନାହିଁ; (ଗବ୍ୟତେ) ଗାଈକୁ ଇଚ୍ଛା କରୁଥିବା ଲୋକପାଇଁ (ଗୌଃ ଅସି) ତୁମ୍ଭେ ଗାଈ ଅଟ; ( ଅଶ୍ୱାୟତେ ) ଘୋଡ଼ାକୁ ଇଚ୍ଛା କରୁଥିବା ଲୋକ ପାଇଁ (ଅଶ୍ୱଃ ଭବ) ତୁମ୍ଭେ ଘୋଡ଼ା ହୁଅ ଅର୍ଥାତ୍ ଉପାସକର ସମସ୍ତ ଅଭାବ ପୂର୍ଣ୍ଣ କର ।





॥ ମଣ୍ଡଳ ୬, ସୂକ୍ତ ୪୫, ମନ୍ତ୍ର ୨୬ ॥

—ଶତଦାଶ ମୁଦ୍ରା ଦେଇ ଆମେ ବଜାର ସଉଦା କରୁଁ । ମୁଦ୍ରାର ବଦଳରେ ମିଷ୍ଟାନ୍ନ ଭଣ୍ଡାରରୁ ମିଷ୍ଟ ପଦାର୍ଥ, କପଡ଼ାଦୋକାନରୁ ବସ୍ତ୍ର ଇତ୍ୟାଦି ପାଉ, ପରନ୍ତୁ ମୁଦ୍ରା ଦ୍ୱାରା ଆମର ସବୁ ଆକାଂକ୍ଷା ପୂର୍ଣ୍ଣ ହୁଏ ନାହିଁ । ଗୋଟିଏ ଦେଶର ମୁଦ୍ରା ଅନ୍ୟ ଦେଶରେ ଅଚଳ ହୋଇଯାଏ । ପରନ୍ତୁ ପ୍ରଭୁଙ୍କ ସହିତ ମିତ୍ରତା ବାନ୍ଧିଲେ ଏଭଳି ମୁଦ୍ରାଧନ ମିଳେ ଯଦ୍ୱାରା ସବୁ ଆକାଂକ୍ଷା ପୂର୍ଣ୍ଣ ହୁଏ । ଇହଲୋକ ଓ ପରଲୋକର ସବୁ ପ୍ରକାର ଶାନ୍ତି ମିଳେ । ଏହାକୁ ଆଲଙ୍କାରିକ ଭାଷାରେ ବେଦ କହୁଛନ୍ତି ଯେ ଗାଈ ମାଗିଲେ ପ୍ରଭୁ ଗାଈ ଏବଂ ଘୋଡ଼ା ମାଗିଲେ ଘୋଡ଼ା ହୋଇ ଅଭାବ ପୂର୍ଣ୍ଣ କରନ୍ତି ।

ବିଦ୍ୟାଲାଭ ପାଇଁ ଶିଷ୍ୟ ଗୁରୁଙ୍କ ପାଖକୁ ଯାଏ । ସ୍ୱାସ୍ଥ୍ୟଲାଭ ପାଇଁ ରୋଗୀ ଚିକିତ୍ସକଙ୍କ ନିକଟକୁ ଯାଏ । ଏହାର କାରଣ ଯେ ଗୁରୁଙ୍କ ପାଖରେ ଶିଷ୍ୟର ଓ ଚିକିତ୍ସକଙ୍କ ପାଖରେ ରୋଗୀର ଇଷ୍ଟ ପଦାର୍ଥ ରହିଥାଏ । ସେହିପରି ଉପାସକ ପାଖରେ ଯାହା ଅଭାବ ଥାଏ, ତାହା ଉପାସ୍ୟ ପାଖରେ ସଞ୍ଚିତ ଥାଏ । ପ୍ରଭୁ ସମସ୍ତ ପଦାର୍ଥର ଉତ୍ସ ହୋଇଥିବାରୁ ତାହାଙ୍କ ଦ୍ୱାରା ଉପାସକର ସମସ୍ତ ଅଭାବ ପୂର୍ଣ୍ଣ ହୁଏ ।

॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୩୭ ॥

ଅଲ୍ପଜ୍ଞ ଜୀବ

ନ ବି ଜାନାମି ଯଦିବେଦମସ୍ମି

ନିଣ୍ୟଃ ସଂନଦ୍ଧୋ ମନସା ଚରାମି ।

ଯଦା ମାଗନ୍ ପ୍ରଥମଜା ଋତସ୍ୟା-

ଦିଦ୍ ବାଚୋ ଅଶ୍ନୁବେ ଭାଗମସ୍ୟାଃ ॥

( ଦୀର୍ଘତମା ଔଚଥ୍ୟଃ । ବିଶ୍ୱେଦେବାଃ । ତ୍ରିଷ୍ଟୁପ୍ । )

ପଦପାଠ: ନ । ବି । ଜାନାମି । ଯତ୍ଽଇବ । ଇଦମ୍ । ଅସ୍ମି । ନିଣ୍ୟଃ । ସଂଽନଦ୍ଧଃ । ମନସା । ଚରାମି । ଯଦା । ମା । ଆ । ଅଗନ୍ । ପ୍ରଥମଽଜାଃ । ଋତସ୍ୟ । ଆତ୍ । ଇତ୍ । ବାଚଃ । ଅଶ୍ନୁବେ । ଭାଗମ୍ । ଅସ୍ୟାଃ ॥

ପଦାର୍ଥ: (ଯତ୍ ଇବ) ଯେଉଁପରି (ଇଦମ୍ ଅସ୍ମି, ନ ବିଜାନାମି) ଏହି ମୁଁ ଅଛି—ଏହା ଜାଣେ ନାହିଁ; (ମନସା ସନ୍ନଦ୍ଧଃ) ମନୋବୃତ୍ତି ଦ୍ୱାରା ବାନ୍ଧି ହୋଇ (ନିଣ୍ୟଃ) ସେଥିରେ ଲୁକ୍‌କାୟିତ ହୋଇ (ଚରାମି) ବିଚରଣ କରେ; (ଯଦା) ଯେବେ (ଋତସ୍ୟ ପ୍ରଥମଜାଃ) ପରମାତ୍ମାଙ୍କ ନିୟମରୁ ଜାତ ବିଷୟଗ୍ରାହୀ ଇନ୍ଦ୍ରିୟାଦି ଜ୍ଞାନସାଧନ (ମା ଆ ଆଗନ୍) ମୋତେ ପ୍ରାପ୍ତ ହୁଏ (ଆତ୍ ଇତ୍) ତେବେ (ଅସ୍ୟାଃ ବାଚଃ ଭାଗମ୍ ଅଶ୍ନୁବେ) ଏହି ବାଣୀର ଭାଗ ଅର୍ଥାତ୍ ସତ୍ୟଜ୍ଞାନକୁ ଲାଭ କରେ ।





॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୩୭ ॥

—ଦେହର ସ୍ୱାମୀ ଦେହମଧ୍ୟରେ ଲୁକ୍‌କାୟିତ ରହି ନିଜକୁ ଜାଣି ପାରେ ନାହିଁ । ଦେହରୂପୀ ପେଟିକାମଧ୍ୟରେ ଲୋଭ, ମୋହାଦି ଆବେଗମୟୀ ରଜ୍ଜୁଦ୍ୱାରା ସେ ବନ୍ଧା ହୋଇ ରହିଅଛି । ଏଣୁ ସେ ମୁକ୍ତ ଭାବରେ ବିଚରଣ, ଆଚରଣ କରିପାରେ ନାହିଁ ।

ଆତ୍ମା ଇନ୍ଦ୍ରିୟାଦି ସାଧନଗୁଡ଼ିକ ଉପଯୋଗ କଲାବେଳେ ପ୍ରଥମେ ବାଣୀଦ୍ୱାରା 'ମୁଁ କହୁଅଛି', ମୁଁ କରୁଅଛି' ବୋଲି ଅନୁଭବ କରେ । କିନ୍ତୁ 'ମୁଁ କିଏ ?'—ଏହି ରହସ୍ୟ ସେ ଭଲ ଭାବରେ ଜାଣି ପାରେ ନାହିଁ । ଅଲ୍ପଜ୍ଞତା ହେତୁରୁ ସେ ନିଜର ପ୍ରୟୋଜନ, କର୍ତ୍ତବ୍ୟ ଓ ଲକ୍ଷ୍ୟପଥ ସ୍ଥିର କରିପାରେ ନାହିଁ ।

ବାକ୍‌ଶକ୍ତି ହେଉଛି ମନୁଷ୍ୟକୁ ପ୍ରଭୁଙ୍କର ମହାନ୍ ଦାନ । ମନୁଷ୍ୟଭିନ୍ନ ଅନ୍ୟ ଦେହରେ ବାଣୀର ଏହି ପ୍ରକାର ବିକାଶ ଦେଖିବାକୁ ମିଳେ ନାହିଁ । ବାଣୀର ସାଧନ ଜିହ୍ୱା ଅଟେ । ଏହା ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ଉଭୟର କର୍ମ କରେ । ବାଣୀର ସାଧନା ଓ ସଂଯମ ଫଳରେ ମନୁଷ୍ୟ ଧୀରେ ଧୀରେ ଆତ୍ମା ସହିତ ପରିଚିତ ହୁଏ । ଦେହ ଓ ମନର ବନ୍ଧନ କ୍ରମଶଃ ହ୍ରାସପ୍ରାପ୍ତ ହୁଏ । 'ମୁଁ କିଏ ?'—ଏହି ରହସ୍ୟ ଉପଲବ୍ଧ ହୁଏ । ଅଲ୍ପଜ୍ଞ ହେଲେ ମଧ୍ୟ ମନୁଷ୍ୟ ମହତ୍ ଆକାଙ୍କ୍ଷା ଚରିତାର୍ଥ କରିବା ପାଇଁ ଅଣ୍ଟା ବାନ୍ଧି ଠିଆ ହୁଏ । ନିଜ ଭିତରେ ଥିବା ସବଙ୍କ ସଖା ହେବା ପାଇଁ ସେ ଯୋଗ୍ୟ ହୁଏ ।

॥ ମଣ୍ଡଳ ୨, ସୂକ୍ତ ୧୨, ମନ୍ତ୍ର ୧ ॥

ସର୍ବମୁଖ୍ୟ ପ୍ରଭୁ

ଯୋ ଜାତ ଏବ ପ୍ରଥମୋ ମନସ୍ୱାନ୍
ଦେବୋ ଦେବାନ୍ କ୍ରତୁନା ପର୍ଯ୍ୟଭୂଷତ୍
ଯସ୍ୟ ଶୁଷ୍ମାଦ୍ ରୋଦସୀ ଅଭ୍ୟସେତାଂ
ନୃମ୍ଣସ୍ୟ ମହ୍ନା ସ ଜନାସ ଇନ୍ଦ୍ରଃ ॥

(ଗୃତ୍ସମଦଃ । ଇନ୍ଦ୍ରଃ । ତ୍ରିଷ୍ଟୁପ୍ ।)

ପଦପାଠ: ଯଃ । ଜାତଃ । ଏବ । ପ୍ରଥମଃ । ମନସ୍ୱାନ୍ । ଦେବଃ । ଦେବାନ୍ । କ୍ରତୁନା । ପରିଅଭୂଷତ୍ । ଯସ୍ୟ । ଶୁଷ୍ମାତ୍ । ରୋଦସୀ ଇତି । ଅଭ୍ୟସେତାମ୍ । ନୃମ୍ଣସ୍ୟ । ମହ୍ନା । ସଃ । ଜନାସଃ । ଇନ୍ଦ୍ରଃ ॥

ପଦାର୍ଥ: (ଯଃ) ଯେ (ଜାତଃ ଏବ) ଜାତ ହେବା ମାତ୍ରେ (ପ୍ରଥମଃ) ମୁଖ୍ୟ (ମନସ୍ୱାନ୍) ମନସ୍ୱୀ (ଦେବଃ) ଦିବ୍ୟଗୁଣସମ୍ପନ୍ନ ବା ଦାତା (ଦେବାନ୍ କ୍ରତୁନା ପର୍ଯ୍ୟଭୂଷତ୍) ସୂର୍ଯ୍ୟାଦି ଦିବ୍ୟ ପଦାର୍ଥଗୁଡ଼ିକୁ ନିଜକର୍ମ ଦ୍ୱାରା ନିୟମବଦ୍ଧ କରନ୍ତି; (ଯସ୍ୟ ଶୁଷ୍ମାତ୍) ଯାହାଙ୍କ ବଳରୁ (ରୋଦସୀ) ଦ୍ୟୌ ଓ ପୃଥିବୀ (ଅଭ୍ୟସେତାଂ) କମ୍ପିତ ହୁଅନ୍ତି (ଜନାସଃ) ହେ ମନୁଷ୍ୟଗଣ ! (ନୃମ୍ଣସ୍ୟ ମହ୍ନା) ଐଶ୍ୱର୍ଯ୍ୟର ମହତ୍ତ୍ୱ ଦ୍ୱାରା (ସଃ) ସେ (ଇନ୍ଦ୍ରଃ) ପରମୈଶ୍ୱର୍ଯ୍ୟଶାଳୀ ପରମାତ୍ମା ଅଟନ୍ତି ।





॥ ମଣ୍ଡଳ ୨, ସୂକ୍ତ ୧୨, ମନ୍ତ୍ର ୧ ॥

—ଐଶ୍ୱର୍ଯ୍ୟଶାଳୀ ହୋଇଥିବାରୁ ପରମେଶ୍ୱରଙ୍କର ଗୋଟିଏ ନାମ ଇନ୍ଦ୍ର । ତାହାଙ୍କ ଐଶ୍ୱର୍ଯ୍ୟର କେତୋଟି ସୂଚନା ମନ୍ତ୍ରରେ ଦିଆଯାଇଅଛି । ପରମାତ୍ମା ଅଜନ୍ମା ଓ ଅନାଦି ଅଟନ୍ତି । ତଥାପି ଆଲଂକାରିକ ରୂପରେ କୁହାଯାଇଅଛି ଯେ ସୃଷ୍ଟିରଚନା ସହିତ ସେ ସର୍ବପ୍ରଥମେ ପ୍ରାଦୁର୍ଭୂତ ହୁଅନ୍ତି । ସୃଷ୍ଟି-ପ୍ରାରମ୍ଭରେ ସେ ଏକମାତ୍ର ଅଦ୍ୱିତୀୟ ସଂଯୋଜକ ଅଟନ୍ତି । ଭଗବାନ୍ ନିଜର ଐଶ୍ୱର୍ଯ୍ୟକୁ ନିଜପାଇଁ ପ୍ରୟୋଗ କରନ୍ତି ନାହିଁ । ସେ ପରମଦେବ ଜୀବମାନଙ୍କ କଲ୍ୟାଣ ଓ ଉଦ୍ଧାର ପାଇଁ ଏହି ସୃଷ୍ଟି ରଚନା କରିଛନ୍ତି । ସେ ଜୀବମାନଙ୍କୁ ସେମାନଙ୍କର କର୍ମାନୁସାରେ ଶରୀର ଦାନ କରନ୍ତି ।

ମନସ୍ୱୀ ପ୍ରଭୁଙ୍କ ନିୟନ୍ତ୍ରଣରେ ସୂର୍ଯ୍ୟ, ଚନ୍ଦ୍ରାଦି ଜଡ଼ପିଣ୍ଡ ନିୟମବଦ୍ଧ ହୋଇ ରହିଛନ୍ତି । ତାଙ୍କ ତେଜରୁ ଏହି ତେଜପୁଞ୍ଜ ତେଜସ୍ୱାନ୍ ହୁଅନ୍ତି । ପରମ ଐଶ୍ୱର୍ଯ୍ୟଶାଳୀ ପରମାତ୍ମାଙ୍କ ଆଜ୍ଞାକୁ ଉଲ୍ଲଙ୍ଘନ କରି ସେମାନେ ତାହାଙ୍କ ନିର୍ଦ୍ଧାରିତ ପଥରେ ନିୟମିତ ଗତି କରନ୍ତି । ଯାହାଙ୍କ ସଂକଳ୍ପରୁ ସୂର୍ଯ୍ୟାଦି ପଦାର୍ଥ ଗତିଶୀଳ ଓ ବ୍ରତଶୀଳ ଏବଂ ଯେ ଜୀବମାନଙ୍କୁ ଆଲୋକ, ଆରୋଗ୍ୟ ତଥା ଆରାମ ପ୍ରଦାନ କରନ୍ତି, ସେ ହିଁ ଇନ୍ଦ୍ର ଅଟନ୍ତି । ଏହି ପରମ-ଐଶ୍ୱର୍ଯ୍ୟଶାଳୀ ପରମାତ୍ମାଙ୍କ ନିୟମରେ ପରିଚାଳିତ ଉକ୍ତ ଜ୍ୟୋତିଷ୍ମାନଙ୍କୁ ଅନୁକରଣ କରି ଆମ୍ଭମାନଙ୍କର ସରଳ ଜୀବନ ଯାପନ କରିବା ବିଧେୟ ।

॥ ମଣ୍ଡଳ ୨, ସୂକ୍ତ ୧୨, ମନ୍ତ୍ର ୩ ॥

ଗଉଦାତା ଇନ୍ଦ୍ର

ଯୋ ହତ୍ୱାହିମରିଣାତ୍ ସପ୍ତ ସିନ୍ଧୂନ୍
ଯୋ ଗା ଉଦାଜଦପଧା ବଳସ୍ୟ
ଯୋ ଅଶ୍ମନୋରନ୍ତରଗ୍ନିଂ ଜଜାନ
ସଂବୃକ୍ ସମତ୍ସୁ ସ ଜନାସ ଇନ୍ଦ୍ରଃ ॥

( ଗୃତ୍ସମଦଃ । ଇନ୍ଦ୍ରଃ । ତ୍ରିଷ୍ଟୁପ୍ । )

ପଦପାଠ : ଯଃ । ହତ୍ୱା । ଅହିଂ । ଅରିଣାତ୍ । ସପ୍ତ । ସିନ୍ଧୂନ୍ । ଯଃ । ଗାଃ । ଉତ୍‌ଆଜତ୍ । ଅପଧା । ବଳସ୍ୟ । ଯଃ । ଅଶ୍ମନୋଃ । ଅନ୍ତଃ । ଅଗ୍ନିଂ । ଜଜାନ । ସଂବୃକ୍ । ସମତ୍‌ସୁ । ସଃ । ଜନାସଃ । ଇନ୍ଦ୍ରଃ ।

ପଦାର୍ଥ : (ଯଃ) ଯେ (ଅହିଂ ହତ୍ୱା) ମେଘକୁ ବିଦାରଣ କରି (ସପ୍ତ ସିନ୍ଧୂନ୍ ଅରିଣାତ୍) ପ୍ରବାହିତ ଜଳକୁ ଦାନ କରନ୍ତି; (ଯଃ) ଯେ (ବଳସ୍ୟ ଅପଧ.) ଅଳ୍ପ ବଳ ଧାରଣ କରୁଥିବା (ଗାଃ) କିରଣକୁ (ଉଦାଜତ୍) ସ୍ଖଳନ କରନ୍ତି; (ଯଃ) ଯେ (ଅଶ୍ମନୋଃ ଅନ୍ତଃ) ମେଘ ମେଘ ମଧ୍ୟରେ (ଅଗ୍ନିଂ ଜଜାନ) ଅଗ୍ନି ଉତ୍ପନ୍ନ କରନ୍ତି ଏବଂ (ସମତ୍ସୁ ସଂବୃକ୍) ସଂଗ୍ରାମରେ ଦୁଷ୍ଟ ଶତ୍ରୁଙ୍କୁ ଦଣ୍ଡ ଦିଅନ୍ତି, (ଜନାସଃ) ହେ ମନୁଷ୍ୟଗଣ ! (ସଃ) ସେ (ଇନ୍ଦ୍ରଃ) ପରମୈଶ୍ୱର୍ଯ୍ୟଶାଳୀ ପରମାତ୍ମା ।



॥ ମଣ୍ଡଳ ୨, ସୂକ୍ତ ୧୨, ମନ୍ତ୍ର ୩ ॥

—ପ୍ରଭୁଙ୍କ ଇନ୍ଦ୍ରତ୍ୱର ପଟାନ୍ତର ନାହିଁ । ମୁକ୍ତ ଆକାଶରେ ସୂର୍ଯ୍ୟଙ୍କର ପ୍ରଚଣ୍ଡ ଅଗ୍ନିବର୍ଷା ହେଉଥିବାବେଳେ ହଠାତ୍ କେଉଁଠାରୁ କଳାମେଘ ଘୋଟିଆସେ । ଶୀତଳ ବାୟୁ ପ୍ରବାହିତ ହୋଇ ଅମୃତରୂପୀ ଜଳଧାରା ଅକାଡ଼ ହୁଏ । ପ୍ରଭୁଙ୍କ ଐଶ୍ୱର୍ଯ୍ୟରୁ ଦୂର ମହାକାଶର ଅନନ୍ତ ଜ୍ୟୋତିଷ୍କ - ପିଣ୍ଡମାନଙ୍କରୁ ବିବିଧଶକ୍ତିସମ୍ପନ୍ନ କିରଣରାଜି ନିୟମପୂର୍ବକ ବ୍ରହ୍ମାଣ୍ଡର ସବୁଆଡ଼େ ବିଚ୍ଛୁରିତ ହୁଏ । ଜଳପୂର୍ଣ୍ଣ ମେଘଖଣ୍ଡର ପରସ୍ପର ଆଘାତରୁ ଅନ୍ତରୀକ୍ଷରେ ବିଦ୍ୟୁଦଗ୍ନି ଉଦ୍ଭାସିତ ହୁଏ । ଆକାଶ ଓ ମହାକାଶର ଏହି ସବୁ ଯୋଜନାବଦ୍ଧ ଘଟଣାବଳୀର ସଂଘଟକ ଇନ୍ଦ୍ର ଅଟନ୍ତି ।

ଐଶ୍ୱରୀୟ ନିୟମର ପ୍ରତିକୂଳ ଆଚରଣ,କରୁଥିବା ବ୍ୟକ୍ତି ପ୍ରଭୁଙ୍କ ଦ୍ରୋହୀ ଅଟେ । ଐଶ୍ୱର୍ଯ୍ୟମୟଙ୍କ ସୃଷ୍ଟି ମଧ୍ୟରେ ରହି ଯେ ନିଜର ଓ ଅନ୍ୟର ଉନ୍ନତି ପାଇଁ ସଙ୍କଳ୍ପ ଗ୍ରହଣ କରେ ନାହିଁ, ତାହାର ଜୀବନ ବ୍ୟର୍ଥ । ଇନ୍ଦ୍ରସୃଷ୍ଟିରେ ରହି ମଧ୍ୟ ଯେ ଇନ୍ଦ୍ରତ୍ୱ ସଞ୍ଚୟ କରେ ନାହିଁ, ସେ ଅଜ୍ଞ ଅଟେ । ଜୀବଙ୍କ କଲ୍ୟାଣ-କାମନା ଈଶ୍ୱରତ୍ୱର ସହଜ ଲକ୍ଷଣ । ପରନ୍ତୁ ଇନ୍ଦ୍ରଙ୍କ ରାଜ୍ୟରେ ରହି ଯେଉଁ ପ୍ରଜା ଉଦ୍ୟୋଗୀ ନ ହୋଇ ଆଳସ୍ୟରତ ହୁଏ, ସେ ଇନ୍ଦ୍ରଙ୍କ କୃପାପାତ୍ର ହୁଏ ନାହିଁ ।

॥ ମଣ୍ଡଳ ୧୦, ସୂକ୍ତ ୪୮, ମନ୍ତ୍ର ୫ ॥

ଇନ୍ଦ୍ରଙ୍କ ପରାଜୟ ନାହିଁ

ଅହମିନ୍ଦ୍ରୋ ନ ପରା ଜିଗ୍ୟ ଇଦ୍ଧନଂ

ନ ମୃତ୍ୟବେଽବ ତସ୍ଥେ କଦା ଚନ

ସୋମମିନ୍ମା ସୁନ୍ୱନ୍ତୋ ଯାଚତା ବସୁ

ନ ମେ ପୂରବଃ ସଖ୍ୟେ ରିଷାଥନ ॥

( ବୈକୁଣ୍ଠ ଇନ୍ଦ୍ରଃ । ଇନ୍ଦ୍ରଃ । ଜଗତୀ । )

ପଦପାଠ: ଅହମ୍ । ଇନ୍ଦ୍ରଃ । ନ । ପରା । ଜିଗ୍ୟେ । ଇତ୍ । ଧନମ୍ । ନ । ମୃତ୍ୟବେ । ଅବ । ତସ୍ଥେ । କଦା । ଚନ । ସୋମମ୍ । ଇତ୍ । ମା । ସୁନ୍ୱନ୍ତଃ । ଯାଚତ । ବସୁ । ନ । ମେ । ପୂରବଃ । ସଖ୍ୟେ । ରିଷାଥନ ॥

ପଦାର୍ଥ : (ଅହମ୍ ଇନ୍ଦ୍ରଃ) ମୁଁ ଐଶ୍ୱର୍ଯ୍ୟର ସ୍ୱାମୀ ; (ଧନମ୍ ଇତ୍) ମୋର ଧନ ନିଶ୍ଚୟରେ (ନ ପରା ଜିଗ୍ୟେ) ପରାଜିତ ହୁଏ ନାହିଁ; (କଦାଚନ) କଦାପି (ମୃତ୍ୟବେ) ମୃତ୍ୟୁପାଇଁ (ନ ଅବତସ୍ଥେ) ରହେ ନାହିଁ; (ପୂରବଃ) ହେ ମନୁଷ୍ୟଗଣ ! (ମା) ମୋ ପାଇଁ (ସୋମମ୍ ଇତ୍ ସୁନ୍ୱନ୍ତଃ) ଭକ୍ତିରସକୁ ଶ୍ରଦ୍ଧାପୂର୍ବକ ସଂପାଦନ କରି (ବସୁ ଯାଚତ) ଧନ ଯାଚନା କର; (ମେ ସଖ୍ୟେ) ମୋର ମିତ୍ରତାରେ (ନ ରିଷାଥନ) ତୁମ୍ଭେ ନଷ୍ଟ ହୁଅ ନାହିଁ ।





॥ ମଣ୍ଡଳ ୧୦, ସୂକ୍ତ ୪୮, ମନ୍ତ୍ର ୫ ॥

ପରମେଶ୍ୱର ଉଦ୍‌ବୋଧନ କରନ୍ତି—

ହେ ଜୀବ ! ମୋର ଐଶ୍ୱର୍ଯ୍ୟ ଶାଶ୍ୱତ ଅଟେ । ମୋର ସ୍ୱତଃସିଦ୍ଧ ଧନ କଦାପି ହ୍ରାସ ପାଏ ନାହିଁ । ମୁଁ ଅମୃତ । ମୁଁ ଜନ୍ମମରଣଚକ୍ରରୁ ପୃଥକ୍ ଅଟେ । ଯେଉଁମାନେ ମୋର ପ୍ରକୃତ ଉପାସକ, ସେମାନେ କାହାକୁ ପୀଡ଼ା ଦିଅନ୍ତି ନାହିଁ କି ସ୍ୱୟଂ ପୀଡ଼ିତ ହୁଅନ୍ତି ନାହିଁ । ଯେଉଁମାନେ ସଙ୍କୀର୍ଣ୍ଣ ସ୍ୱାର୍ଥ ସାଧନ ପାଇଁ ମୋ ନାମ ନେଇ ଭଣ୍ଡାମି କରନ୍ତି, ସେମାନେ ନିଜେ ସୁଖ ପାଆନ୍ତି ନାହିଁ ଓ ଅନ୍ୟମାନଙ୍କୁ ଦୁଃଖୀ କରନ୍ତି । ଯେଉଁମାନେ ଜଡ଼ବାଦୀ ଏବଂ ଜଡ଼ ପ୍ରକୃତିର ଉପାସକ, ସେମାନେ କାମକ୍ରୋଧାଦି ମନୋବେଗରେ ଆକ୍ରାନ୍ତ ହୋଇ ଅନ୍ୟର ଅଧିକାର ଛିନ୍ନ କରନ୍ତି । କିନ୍ତୁ ମୋର ଉପାସକ ସତ୍ୟାଚରଣ କରେ । ସେ ମୋଠାରେ ମିତ୍ରତା ସ୍ଥାପନ କରି କଦାପି ହତାଶ ହୁଏ ନାହିଁ ।

ହେ ପ୍ରିୟ ଜୀବାତ୍ମନ୍ ! ତୁମେ ଚେତନଶୀଳ । ଜଡ଼ ପ୍ରକୃତି ମଧ୍ୟରେ ତୁମେ ନିଜକୁ ହଜାଇ ନ ଦେଇ ମୋର ସଚ୍ଚିଦାନନ୍ଦସ୍ୱରୂପକୁ ଉପଲବ୍ଧି କର । ମୁଁ ତୁମର ପ୍ରକୃତ ମିତ୍ର । ସଂସାରର ମିତ୍ର ନିଜ ସ୍ୱାର୍ଥ ଆଶାରେ ମିତ୍ର ହୋଇଯାଏ; କିନ୍ତୁ ସ୍ୱାର୍ଥସିଦ୍ଧି ନହେଲେ ଦିନେ ନା ଦିନେ ଶତ୍ରୁ ପାଲଟିଯାଏ । ପାର୍ଥିବ ଅତିମିତ୍ରତା ପରିଶେଷରେ ବିଷମୟ ହୋଇଯାଏ । ମୋର ଅଭାବ ଓ ସ୍ୱାର୍ଥ ବୋଲି କିଛି ନାହିଁ । ତେଣୁ ମୋ ସହିତ ମିତ୍ରତା ସ୍ଥାପନ କରି ଅଭୟ ଓ କଲ୍ୟାଣ ଲାଭ କର ।

॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୩୯ ॥

କିଂ ଋଚା କରିଷ୍ୟତି ?

ଋଚୋ ଅକ୍ଷରେ ପରମେ ବ୍ୟୋମନ୍

ଯସ୍ମିନ୍ ଦେବା ଅଧି ବିଶ୍ୱେ ନିଷେଦୁଃ ।

ଯସ୍ତନ୍ନ ବେଦ କିମୃଚା କରିଷ୍ୟତି

ଯ ଇତ୍ ତଦ୍ ବିଦୁସ୍ତ ଇମେ ସମାସତେ ॥

( ଦୀର୍ଘତମାଃ । ବିଶ୍ୱେଦେବାଃ । ତ୍ରିଷ୍ଟୁପ୍ । )

ପଦପାଠ: ଋଚଃ । ଅକ୍ଷରେ । ପରମେ । ବିଓମନ୍ । ଯସ୍ମିନ୍ । ଦେବାଃ । ଅଧି । ବିଶ୍ୱେ । ନିଃସେଦୁଃ । ଯଃ । ତତ୍ । ନ । ବେଦ । କିମ୍ । ଋଚା । କରିଷ୍ୟତି । ଯେ । ଇତ୍ । ତତ୍ । ବିଦୁଃ । ତେ । ଇମେ । ସମ୍ । ଆସତେ ॥

ପଦାର୍ଥ : (ଯସ୍ମିନ୍) ଯାହାଙ୍କ ଠାରେ (ବିଶ୍ୱେଦେବାଃ) ସମସ୍ତ ଦେବଗଣ (ଅଧି ନିଷେଦୁଃ) ରହନ୍ତି, (ଋଚଃ) ବେଦମନ୍ତ୍ର (ପରମେ) ପରମ (ବ୍ୟୋମନ୍) ବ୍ୟାପକ (ଅକ୍ଷରରେ) ଅବିନାଶୀ ଭଗବାନଙ୍କ ନିମିତ୍ତ ଅଟନ୍ତି (ଯଃ ତତ୍ ନ ବେଦ) ଯେ ତାହାଙ୍କୁ ଜାଣେନାହିଁ ସେ (ଋଚା କିମ୍ କରିଷ୍ୟତି) ବେଦଦ୍ୱାରା କଣ କରିବ ? (ଯେ ତତ୍ ବିଦୁଃ ଇତ୍) ଯେଉଁମାନେ ତାହାଙ୍କୁ ଜାଣନ୍ତି (ତେ ଇମେ) ସେମାନେ ଏହି । ସମାସତେ) ସମଭାବେ ରହନ୍ତି ।



॥ ମଣ୍ଡଳ ୧, ସୂକ୍ତ ୧୬୪, ମନ୍ତ୍ର ୩୯ ॥

—ସମ୍ପୂର୍ଣ୍ଣ ବେଦପାଠ କରି ମଧ୍ୟ ପରମତତ୍ତ୍ୱ ପରମାତ୍ମାଙ୍କୁ ଉପଲବ୍ଧି ନ କରିବା ବୃଥା । ବେଦର ମର୍ମ ବୁଝିବା ଅର୍ଥ ଆତ୍ମବିତ୍ ହେବା । ଯେ ଆତ୍ମବିତ୍, ସେ ସର୍ବଜ୍ଞ ପରମେଶ୍ୱରଙ୍କୁ ଅନୁଭବ କରନ୍ତି ।

କଠୋପନିଷଦ କହୁଛନ୍ତି—"ସମସ୍ତ ବେଦ ଯେଉଁ ପଦକୁ ପ୍ରକାଶ କରୁଛନ୍ତି, ସମସ୍ତ ତପ ଯାହାଙ୍କୁ ଉଦ୍‌ବୋଧନ କରନ୍ତି, ଯାହାଙ୍କ ପ୍ରାପ୍ତି ପାଇଁ ବ୍ରହ୍ମଚର୍ଯ୍ୟ ଧାରଣ କରାଯାଏ, ତାହାଙ୍କୁ ସଂକ୍ଷେପରେ ବର୍ଣ୍ଣନା କରୁଅଛୁ । ସେ ଓଁକାରରୂପୀ ପରମାତ୍ମା ଅଟନ୍ତି ।"

ଫୁଲମାଳକୁ ଦେଖି ଆମ୍ଭେମାନେ ଫୁଲଗୁଡ଼ିକୁ ଗୁନ୍ଥି ରଖିଥିବା ସୂତାଟିକୁ ବୁଝିବା ଉଚିତ । ସେହିପରି ବେଦପାଠୀ ବେଦମନ୍ତ୍ରଗୁଡ଼ିକର ଅନ୍ତରାଳରେ ଥିବା ସର୍ବଉଦ୍‌ବୋଧକ ପରମେଶ୍ୱରଙ୍କୁ ହୃଦୟଙ୍ଗମ କରିବା ବିଧେୟ । ନଚେତ୍ ବେଦର ପାଠକ ଓ ଅପାଠକ ମଧ୍ୟରେ କିଛି ପ୍ରଭେଦ ରହେନାହିଁ । ମୁଣ୍ଡକୋପନିଷଦ୍ ଯଥାର୍ଥ କହୁଛନ୍ତି —"ବେଦ-ବେଦାଙ୍ଗାଦି ଶାସ୍ତ୍ର ଅପରା ବିଦ୍ୟା ଅଟେ । ଯେଉଁ ବିଦ୍ୟାଦ୍ୱାରା ଅବିନାଶୀ ପରମାତ୍ମା ପ୍ରାପ୍ତ ହୁଅନ୍ତି, ତାହା ହିଁ ପରା ବିଦ୍ୟା ।" ପରା ବିଦ୍ୟା ଲକ୍ଷ୍ୟସ୍ଥଳ ଅଟେ, ଅପରା ବିଦ୍ୟାର ସୋପାନରେ ଯଥାବିଧି ଗତିକଲେ ପରା ବିଦ୍ୟା ଉପଲବ୍ଧ ହୁଏ । ବେଦ-ପାଠ କରିବା ବ୍ୟର୍ଥ ନୁହେଁ, ପରନ୍ତୁ ବେଦପାଠ କରି ଆତ୍ମବିତ୍ ନ ହେବା ନିଷ୍ଫଳ ଅଟେ । ବେଦପାଠଦ୍ୱାରା ମନ୍ତ୍ରବିତ୍ ହୋଇ ସୃଷ୍ଟିରେ ଥିବା ପରମତତ୍ତ୍ୱ ତଥା ଦେହରେ ଥିବା ଆତ୍ମତତ୍ତ୍ୱକୁ ଉପଲବ୍ଧି ନ କରିବା ବ୍ୟର୍ଥ ଅଟେ ।

॥ ମଣ୍ଡଳ ୮, ସୂକ୍ତ ୧, ମନ୍ତ୍ର ୫ ॥

ଅମୂଲ୍ୟ ସମ୍ପଦ

ମହେ ଚନ ତ୍ୱାମଦ୍ରିବଃ

ପରା ଶୁଲ୍‌କାୟ ଦେୟାମ୍ ।

ନ ସହସ୍ରାୟ ନାୟୁତାୟ ବଜ୍ରିବୋ

ନ ଶତାୟ ଶତାମଘ ॥

( ମେଧାତିଥି-ମେଧ୍ୟାତିଥୀ କାଣ୍ୱୌ । ଇନ୍ଦ୍ରଃ । ବୃହତୀ ।)

ପଦପାଠ: ମହେ । ଚନ । ତ୍ୱାମ୍ । ଅଦ୍ରିଽବଃ । ପରା । ଶୁଲ୍‌କାୟ । ଦେୟାମ୍ । ନ । ସହସ୍ରାୟ । ଅୟୁତାୟ । ବଜ୍ରିଽବଃ । ନ । ଶତାୟ । ଶତଽମଘ ।

ପଦପାଠ : (ଅଦ୍ରିବଃ) ହେ ଅବିନାଶୀ ପ୍ରଭୋ ! (ତ୍ୱାମ୍) ତୁମ୍ଭକୁ (ମହେଚନ ଶୁଲ୍‌କାୟ) ଅତ୍ୟନ୍ତ ମୂଲ୍ୟବାନ ପଦାର୍ଥ ପାଇଁ (ନ ପରାଦେୟାମ୍) କଦାପି ତ୍ୟାଗ କରି ନପାରେ; (ବଜ୍ରିବଃ) ହେ ପରାକ୍ରମୀ ! (ଶତାମଘ) ଶତ ଐଶ୍ୱର୍ଯ୍ୟଶାଳୀ (ଶତାୟ) ଶତଗୁଣ ପାଇଁ (ସହସ୍ରାୟ) ସହସ୍ରଗୁଣ ପାଇଁ (ଅୟୁତାୟ) ଅୟୁତ ଗୁଣ ପାଇଁ (ନ ପରାଦେୟାମ୍) ତ୍ୟାଗ କରି ନ ପାରେ ।





॥ ମଣ୍ଡଳ ୮, ସୂକ୍ତ ୧, ମନ୍ତ୍ର ୫ ॥

—ଜୀବନର ବିଚିତ୍ର ଦଶା ! ଏକ ଦିଗରେ ପାର୍ଥିବ ଧନସମ୍ପଦ, ଅନ୍ୟ ଦିଗରେ ପରମେଶ୍ୱର । ଏକ ପକ୍ଷରେ ପ୍ରତ୍ୟକ୍ଷ ଭୋଗ୍ୟବସ୍ତୁ, ଅନ୍ୟ ପକ୍ଷରେ ସାଧନାସାପେକ୍ଷ ପରମସତ୍ତା ପରମାତ୍ମା । ଉଭୟେ ଆକର୍ଷଣୀୟ । ଥରେ ବ୍ରହ୍ମଜ୍ଞ ନଚିକେତାଙ୍କ ସମକ୍ଷରେ ଏହି ଦୁରୂହ ପ୍ରଶ୍ନ ଉପସ୍ଥାପିତ ହୋଇଥିଲା । ସ୍ତ୍ରୀ, ପୁତ୍ରପୌତ୍ର, ପଶୁ, ସୁବର୍ଣ୍ଣ, ଭୂସମ୍ପତ୍ତି ଇତ୍ୟାଦିର ବନ୍ଧନମଧ୍ୟରେ ଆତ୍ମତତ୍ତ୍ୱର ଜିଜ୍ଞାସାରୁ ତାହାଙ୍କୁ ନିବୃତ୍ତ କରାଗଲା । କିନ୍ତୁ ନଚିକେତା ଏସବୁ ନଶ୍ୱର ବସ୍ତୁରେ ପ୍ରଲୁବ୍ଧ ହେଲେନାହିଁ । କହିଲେ—'ନ ବିତ୍ତେନ ତର୍ପଣୀୟୋ ମନୁଷ୍ୟଃ'—ହେ ଯମରାଜ ! ମନୁଷ୍ୟ ଧନଦ୍ୱାରା ଯଥାର୍ଥ ତୃପ୍ତି ଲାଭ କରେ ନାହିଁ । ଏଣୁ ମୁଁ କ୍ଷଣସ୍ଥାୟୀ ଧନ ସଂପତ୍ତିର ପ୍ରତ୍ୟାଶୀ ନୁହେଁ ।

ମନ୍ତ୍ର କହୁଛନ୍ତି—'ହେ ପ୍ରଭୋ ! ଶତ, ସହସ୍ର, ଅୟୁତ, ଅସଂଖ୍ୟ ବୈଭବ ପାଇଁ ତୁମକୁ ଭୁଲି ଯାଇ ନ ପାରେ । ତୁମେ ଧନର କାମଧେନୁ । ତୁମକୁ ଆଶ୍ରୟ କଲେ ଧନର ଅକ୍ଷତ ସ୍ରୋତ ପ୍ରବାହିତ ହେବ । ଏଣୁ ଧନ ବଦଳରେ ମୁଁ ତୁମକୁ ଚାହେଁ ।'

ଧନର ଆବଶ୍ୟକତା ଅନିବାର୍ଯ୍ୟ । ପରନ୍ତୁ ଧନର ସଞ୍ଚୟ ଓ ବ୍ୟୟ ସମୟରେ ଧର୍ମଯୁକ୍ତ ବ୍ୟବହାର କରିବା ଅଧିକ ଆବଶ୍ୟକ । ନୀତିକୁ ଭୁଲିଯିବା ଅର୍ଥାତ୍ ପ୍ରଭୁଙ୍କ ନିୟମକୁ ଉଲ୍ଲଂଘନ କରିବା କଦାପି ଶ୍ରେୟସ୍କର ନୁହେଁ ।

॥ ମଣ୍ଡଳ ୨, ସୂକ୍ତ ୧୨, ମନ୍ତ୍ର ୫ ॥

## ଆସ୍ତିକ ହୁଅ

ଯଂ ସ୍ମା ପୃଚ୍ଛନ୍ତି କୁହ ସେତି ଘୋର-

ମୁତେମାହୁର୍ନୈଷୋ ଅସ୍ତୀତ୍ୟେନମ୍ ।

ସୋ ଅର୍ଯ୍ୟଃ ପୁଷ୍ଟୀର୍ବିଜ ଇବା ମିନାତି

ଶ୍ରଦସ୍ମୈ ଧତ୍ତ ସ ଜନାସ ଇନ୍ଦ୍ରଃ ॥

( ଗୃତ୍ସମଦଃ । ଇନ୍ଦ୍ରଃ । ତ୍ରିଷ୍ଟୁପ୍ । )

**ପଦପାଠ :** ଯମ୍ । ସ୍ମ । ପୃଚ୍ଛନ୍ତି । କୁହ । ସଃ । ଇତି । ଘୋରମ୍ । ଉତ । ଈମ୍ । ଆହୁଃ । ନ । ଏଷଃ । ଅସ୍ତି । ଇତି । ଏନମ୍ । ସଃ । ଅର୍ଯଃ । ପୁଷ୍ଟୀଃ । ବିଜଃଇବ । ଆ । ମିନାତି । ଶ୍ରତ୍ । ଅସ୍ମୈ । ଧତ୍ତ । ସଃ । ଜନାସଃ ଇନ୍ଦ୍ରଃ ॥

**ପଦାର୍ଥ :** (ସଃ କୁହ) ସେ କାହାନ୍ତି ? (ଇତି) ଏହି ପ୍ରକାର (ଯଂ ପୃଚ୍ଛନ୍ତି ସ୍ମ) ଯାହାଙ୍କ ବିଷୟରେ ପ୍ରଶ୍ନ କରନ୍ତି (ଉତ) ଏବଂ (ଏଷଃ) ଏହି ପରମାତ୍ମା (ନ ଅସ୍ତି ଇତି) ନାହାନ୍ତି ବୋଲି (ଈମ୍) ଏହାଙ୍କୁ (ଘୋରଂ) ଦୁଷ୍ଟ ଲୋକେ (ଏନଂ ଆହୁଃ) ଏହାଙ୍କ ବିଷୟରେ ପ୍ରଚାର କରନ୍ତି; (ସଃ ଅର୍ଯଃ) ସେ ଜଗତ୍ପତି (ପୁଷ୍ଟୀଃ) ଦୁଷ୍ଟମାନଙ୍କ ବୈଭବକୁ (ବିଜଃ ଇବ ଆ ମିନାତି) ନଷ୍ଟ କରି ଦିଅନ୍ତି; (ଜନାସଃ) ହେ ମନୁଷ୍ୟଗଣ ! (ସଃ) ସେ (ଇନ୍ଦ୍ରଃ) ସର୍ବୈଶ୍ୱର୍ଯ୍ୟଶାଳୀ ପରମାତ୍ମା ଅଟନ୍ତି (ଅସ୍ମୈ) ଏହାଙ୍କ ପାଇଁ (ଶ୍ରତ୍ ଧତ୍ତ) ଶ୍ରଦ୍ଧା କର ।





॥ ମଣ୍ଡଳ ୨, ସୂକ୍ତ ୧୨, ମନ୍ତ୍ର ୫ ॥

— ମନୁଷ୍ୟର ଚକ୍ଷୁ ରୂପରଙ୍ଗକୁ ହିଁ ଦେଖିପାରେ । ଚକ୍ଷୁର ଦୃଷ୍ଟିପଥରେ ଯେତିକି ପଡ଼େ, ସେତିକି ପଦାର୍ଥ ମନୁଷ୍ୟର ଦୃଷ୍ଟିଗୋଚର ହୁଏ । ଚକ୍ଷୁ ସ୍ଥୂଳ ପଦାର୍ଥ, ତଦ୍ୱାରା ସୂକ୍ଷ୍ମ ପଦାର୍ଥମାନଙ୍କୁ ଦେଖିବା ସମ୍ଭବ ନୁହେଁ । ଏଣୁ ଆଖିରେ ଦେଖୁଥିବା ବସ୍ତୁଗୁଡ଼ିକୁ ହିଁ ସତ୍ୟ ଓ ପ୍ରାମାଣିକ ମାନି ଅନ୍ୟ ସବୁ ମିଥ୍ୟା କହିଲେ ସୃଷ୍ଟିର ଅସଂଖ୍ୟ ପଦାର୍ଥ ଅଜ୍ଞାତ ରହିଯାଏ ।

ପରମାତ୍ମାଙ୍କୁ ରୂପରଙ୍ଗରେ ଦର୍ଶନ କରିବାର ପ୍ରୟାସ ବ୍ୟର୍ଥ ଅଟେ । ସୂକ୍ଷ୍ମ ଅନ୍ତଃକରଣ ଦ୍ୱାରା ହିଁ ତାହାଙ୍କୁ ଉପଲବ୍ଧ କରାଯାଇପାରେ । ଚର୍ମଚକ୍ଷୁ ବଦଳରେ ଜ୍ଞାନଚକ୍ଷୁ ଖୋଲିଲେ ସେ ଅନୁଭୂତ ହୁଅନ୍ତି । ଆଖିରେ ଦିଶୁନାହାନ୍ତି ବୋଲି 'ପ୍ରଭୁ ନାହାନ୍ତି' କହିବା ଅଜ୍ଞତାର ପରିଚାୟକ । ଉଡ଼ାଜାହାଜ ବା ବୁଡ଼ାଜାହାଜ ଠାରୁ ପକ୍ଷୀ ଓ ମାଛର ରଚନାକୌଶଳ ବହୁଗୁଣରେ ବିସ୍ମୟକର । ସୃଷ୍ଟି ଅଦ୍ଭୁତ । ଏହାକୁ ବିବେଚନା କଲେ ସୃଷ୍ଟିକର୍ତ୍ତାଙ୍କ ରହସ୍ୟମୟ ସ୍ୱରୂପ କିଂଚିତ୍ ଜ୍ଞାତ ହୁଏ ।

ପ୍ରଭୁଙ୍କ ପରାକ୍ରମ ପରୀକ୍ଷା କରି ତାହାଙ୍କୁ ଚାହିଁବାର କଳ୍ପନା ଧୃଷ୍ଟତା ଅଟେ । ପୃଥିବୀର କ୍ଷୁଦ୍ର କମ୍ପନ ମନୁଷ୍ୟର ଅପାର ବୈଭବକୁ ମୁହୂର୍ତ୍ତକରେ ଧୂଳିସାତ୍ କରିଦିଏ । ମୃତ୍ୟୁର ଚକ୍ର ମନୁଷ୍ୟକୁ ନିଷ୍ପ୍ରଭ, ନିର୍ବାକ୍ କରିଦିଏ । ଏଣୁ ବେଦମନ୍ତ୍ର କହୁଛନ୍ତି—'ଶ୍ରଦ୍ ଅସ୍ମୈ ଧତ୍ତ' ଅର୍ଥାତ୍ ଆସ୍ତିକ ହୁଅ, ପ୍ରଭୁଙ୍କୁ ଶ୍ରଦ୍ଧା କର । ତାହାଙ୍କ ଶାସନର ଅନୁକୂଳ ଆଚରଣ କର ।

॥ ମଣ୍ଡଳ ୧୦, ସୂକ୍ତ ୮୨, ମନ୍ତ୍ର ୭ ॥

ପ୍ରଭୁଦର୍ଶନରେ ବିଫଳତା

ନ ତଂ ବିଦାଥ ଯ ଇମା ଜଜାନା-

ନ୍ୟଦ୍ୟୁଷ୍ମାକମନ୍ତରଂ ବଭୂବ ।

ନୀହାରେଣ ପ୍ରାବୃତା ଜଲ୍ପ୍ୟା ଚା-

ସୁତୃପ ଉକ୍ଥଶାସଶ୍ଚରନ୍ତି ॥

( ବିଶ୍ୱକର୍ମା ଭୌବନଃ ॥ ବିଶ୍ୱକର୍ମା ॥ ତ୍ରିଷ୍ଟୁପ୍ )

ପଦପାଠ : ନ । ତମ୍ । ବିଦାଥ । ଯଃ । ଇମା । ଜଜାନ । ଅନ୍ୟତ୍ । ଯୁଷ୍ମାକମ୍ । ଅନ୍ତରମ୍ । ବଭୂବ । ନୀହାରେଣ । ପ୍ରାବୃତାଃ । ଜଲ୍ପ୍ୟାଃ । ଚ । ଅସୁତୃପଃ । ଉକ୍ଥଶାସଃ । ଚରନ୍ତି ।

ପଦାର୍ଥ: (ଯଃ ଇମା ଜଜାନ) ଯେ ଏହି ସବୁ (ଲୋକଲୋକାନ୍ତରର) ସୃଷ୍ଟି କରିଛନ୍ତି (ଯୁଷ୍ମାକମ୍ ଅନ୍ୟତ୍) ସେ ତୁମଠାରୁ ଭିନ୍ନ, ପରନ୍ତୁ (ଅନ୍ତରଂ ବଭୂବ) ସେ ତୁମ ଅନ୍ତରରେ ବିଦ୍ୟମାନ; (ନ ତଂ ବିଦାଥ) ତୁମେ ତାହାଙ୍କୁ ଜାଣ ନାହିଁ । ତୁମ ପରି ଲୋକେ ( ନୀହାରେଣ ପ୍ରାବୃତାଃ ) ଅନ୍ଧକାରମୟ କୁହୁଡ଼ି ମଧ୍ୟରେ ଆବୃତ ହୋଇଥାନ୍ତି ; ( ଜଲ୍ପ୍ୟାଃ ) ବ୍ୟର୍ଥ ବାର୍ତ୍ତାଳାପ କରନ୍ତି , (ଅସୁତୃପଃ) କେବଳ ନିଜର ପ୍ରାଣପୋଷଣରେ ତତ୍ପର ରହନ୍ତି; (ଉକ୍ଥଶାସଃ) ବେଦମନ୍ତ୍ରର ଉଚ୍ଚାରଣମାତ୍ର କରନ୍ତି ( ଚରନ୍ତି ଚ ) ଏବଂ ଏଣେତେଣେ ବିଚରଣ କରନ୍ତି ।





॥ ମଣ୍ଡଳ ୧୦, ସୂକ୍ତ ୮୨, ମନ୍ତ୍ର ୭ ॥

—ହେ ମନୁଷ୍ୟ ! ସୃଷ୍ଟିକର୍ତ୍ତା ଏହି ଚରାଚର ବ୍ରହ୍ମାଣ୍ଡରେ ଓତପ୍ରୋତ ହୋଇ ରହିଛନ୍ତି । ସେ ତୁମଠାରେ ମଧ୍ୟ ଅଧିଷ୍ଠିତ । ହାୟ, ଏତେ ନିକଟରେ ରହି ସୁଦ୍ଧା ତୁମେ ତାହାଙ୍କ ଦର୍ଶନ ପାଉନାହିଁ ! ନିଜର କେତୋଟି ଦୋଷ କାରଣରୁ ତୁମେ ବିଫଳ ହେଉଅଛ ।

'ନୀହାରେଣ ପ୍ରାବୃତାଃ'—ତୁମ ହୃଦୟରେ ଅଜ୍ଞାନ ଓ ଅଶ୍ରଦ୍ଧା ରୂପକ କୁହୁଡ଼ି ବ୍ୟାପି ରହିଛି । ଜ୍ଞାନ ଓ ଶ୍ରଦ୍ଧା ଦ୍ୱାରା ହୃଦୟକୁ ଆଲୋକିତ କରି ପାରିଲେ ତୁମେ ପ୍ରଭୁଙ୍କ ଦର୍ଶନ ପାଇବ । 'ଅସୁତୃପଃ'—ନିଜର ଉଦର-ପୋଷଣ ଓ କ୍ଷୁଦ୍ର ସ୍ୱାର୍ଥସାଧନରେ ତୁମେ ମାତିଛ । ସେବାର ମହତ୍ତ୍ୱ ବୁଝି ପାରିଲେ ତୁମେ ପ୍ରଭୁଙ୍କ ସାକ୍ଷାତ୍କାର କରିବ । 'ଜଲ୍ପ୍ୟାଃ'—ତୁମେ ବ୍ୟର୍ଥ ଆଳାପରେ ସମୟ କଟାଉଛ । ତଦ୍ଦ୍ୱାରା ତୁମ ମନ ଅଶାନ୍ତ ହେଉଛି । ପ୍ରଭୁଙ୍କୁ ପାଇବାକୁ ହେଲେ ମନକୁ ଶାନ୍ତ କର । 'ଉକ୍ଥଶାସଃ'—ଶାସ୍ତ୍ରଗୁଡ଼ିକ ମୁଖସ୍ଥ କରି ପ୍ରଗଲ୍‌ଭ ଭାଷଣ କରୁଅଛ । ଅର୍ଥ ନ ବୁଝି କେବଳ ମନ୍ତ୍ରୋଚ୍ଚାରଣ କରୁଅଛ । ପ୍ରଭୁ ଏଭଳି ବାକ୍ୟାଡମ୍ବରକୁ ଆଦର କରନ୍ତି ନାହିଁ । ପ୍ରଭୁ ତୁମ ମଧ୍ୟରେ ଅଧିଷ୍ଠିତ, ପରନ୍ତୁ ଅଶାନ୍ତ ମନରେ ତୁମେ ଏଣେତେଣେ ବୃଥା ଦୌଡ଼ୁଅଛ । ସ୍ଥିରଚିତ୍ତ ଓ ଶ୍ରଦ୍ଧାଳୁ ହୋଇ ତୁମ ମଧ୍ୟରେ ତାହାଙ୍କୁ ଅନୁସନ୍ଧାନ କର, ଅନୁଭବ କର ।

॥ ମଣ୍ଡଳ ୬, ସୂକ୍ତ ୯, ମନ୍ତ୍ର ୬ ॥

## ସାଧନାରେ ବିଘ୍ନ

ବି ମେ କର୍ଣ୍ଣା ପତୟତୋ ବି ଚକ୍ଷୁ-

ର୍ବୀଦଂ ଜ୍ୟୋତିର୍ହୃଦୟ ଆହିତଂ ଯତ୍ ।

ବି ମେ ମନଶ୍ଚରତି ଦୂରଆଧୀଃ

କିଂ ସ୍ୱିଦ୍ ବକ୍ଷ୍ୟାମି କିମୁ ନୂ ମନିଷ୍ୟେ ॥

( ବାର୍ହସ୍ପତ୍ୟୋ ଭରଦ୍ୱାଜଃ ॥ ବୈଶ୍ୱାନରୋଽଗ୍ନିଃ ॥ ତ୍ରିଷ୍ଟୁପ୍ )

ପଦପାଠ : ବି । ମେ । କର୍ଣ୍ଣା । ପତୟତଃ । ବି । ଚକ୍ଷୁଃ । ବି । ଇଦଂ । ଜ୍ୟୋତିଃ । ହୃଦୟେ । ଆଽହିତଂ । ଯତ୍ । ବି । ମେ । ମନଃ । ଚରତି । ଦୂରେଽଆଧୀଃ । କିଂ । ସ୍ୱିତ୍ । ବକ୍ଷ୍ୟାମି । କିଂ । ଉଁଇତି । ନୂ । ମନିଷ୍ୟେ ॥

ପଦାର୍ଥ : ( ମେ କର୍ଣ୍ଣା ବି ପତୟତଃ ) ମୋର ଦୁଇ କାନ ବାହାର ଜଗତକୁ ଆକୃଷ୍ଟ ହୋଇ ଯାଉଅଛି; ( ଚକ୍ଷୁଃ ବି ) ଚକ୍ଷୁ ମଧ୍ୟ ଦୌଡ଼ୁଅଛି; ( ଇଦଂ ଜ୍ୟୋତିଃ ) ଏହି ଜ୍ୟୋତି ( ଯତ୍ ହୃଦୟେ ଆହିତଂ ) ଯାହା ହୃଦୟରେ ସ୍ଥିତ, ତାହା ( ବି ପତୟତି ) ଏଣେତେଣେ ଦୌଡ଼ୁଅଛି; ( ମେ ମନଃ ) ମୋର ମନ ( ଦୂରେ ଆଧୀଃ ) ଦୂରଦୂରାନ୍ତରରେ ଧ୍ୟାନ ରଖି ( ବି ଚରତି ) ବିଚରଣ କରୁଅଛି । ( କିଂ ସ୍ୱିଦ୍ ବକ୍ଷ୍ୟାମି ) କଣ ବା କହିବି ? ( କିମ୍ ଉ ନୂ ମନିଷ୍ୟେ ) କଣ ବା ବିଚାର କରିବି ?





॥ ମଣ୍ଡଳ ୬, ସୂକ୍ତ ୯, ମନ୍ତ୍ର ୬ ॥

—ଇନ୍ଦ୍ରିୟଗୁଡ଼ିକର ସାହାଯ୍ୟରେ ଆତ୍ମଜ୍ଞାନ ପାଇବା ପାଇଁ ଉପାସକ ଏଣେ ତେଣେ ଦୌଡ଼ୁଛି । ଆତ୍ମାର ଅମୃତବାଣୀ ଶୁଣିବା ପାଇଁ ସେ ନିଜର କର୍ଣ୍ଣକୁ ନିର୍ଦ୍ଦେଶ ଦେଉଛି । ହାୟ ! କର୍ଣ୍ଣ କ୍ଷୁଦ୍ର ବାସନାରେ ରତ ହୋଇ ପାର୍ଥିବ ମଧୁର ସଙ୍ଗୀତର ମୂର୍ଚ୍ଛନାରେ ମୁଗ୍ଧ ହେଉଛି । ଆତ୍ମଜ୍ଞାନ ପାଇଁ ଅଗ୍ରସର ହୋଇପାରୁ ନାହିଁ । ସୃଷ୍ଟି ରହସ୍ୟ ଦେଖିବା ପାଇଁ ଉପାସକ ଚକ୍ଷୁକୁ ପରାମର୍ଶ ଦେଉଛି । କିନ୍ତୁ ରୂପ-ପିପାସୁ ନୟନ ବିଳାସୀ ଦୃଶ୍ୟରେ ତନ୍ମୟ ହୋଇପଡ଼ୁଛି । ଏହିରୂପେ ସବୁ ଇନ୍ଦ୍ରିୟ ନିଜ ନିଜ ବାସନାରେ ଜଡ଼ିତ ରହିଛନ୍ତି । ମନ ଦୂର ଦୂରାନ୍ତରରେ ବିଚରଣ କରୁଅଛି ।

ପ୍ରଜାଗଣ ବିଦ୍ରୋହୀ ହେଲେ ଶାସକଙ୍କର ଅଧିକାର ସ୍ୱୀକାର କରନ୍ତି ନାହିଁ । ଦେହ ମଧ୍ୟରେ ଇନ୍ଦ୍ରିୟଗଣ ପ୍ରଜା-ସ୍ୱରୂପ ଏବଂ ଆତ୍ମା ରାଜା-ସ୍ୱରୂପ ଅଟନ୍ତି । ମନ ପ୍ରଜାମାନଙ୍କୁ ନିୟନ୍ତ୍ରଣ କରୁଥିବା ରାଜ-କର୍ମଚାରୀ ଅଟେ । ଯେତେବେଳେ ପ୍ରଜା ବିଦ୍ରୋହୀ ହୁଅନ୍ତି, ରାଜ କର୍ମଚାରୀ ଆଳସ୍ୟଗ୍ରସ୍ତ ହୁଅନ୍ତି, ସେତେବେଳେ ରାଷ୍ଟ୍ରରେ ଅରାଜକତା ବ୍ୟାପିଯାଏ । ଏହି ସଙ୍କଟ ଦଶାରେ ରାଜା ବା ଆତ୍ମା କରୁଣ ପ୍ରଳାପ କରେ —"କିଂ ସ୍ୱିଦ୍ ବକ୍ଷ୍ୟାମି, କିମୁ ନୂ ମନିଷ୍ୟେ"—କି କହିବି ? କି ଚିନ୍ତା କରିବି ? ଇନ୍ଦ୍ରିୟଗୁଡ଼ିକ ବିପଥଗାମୀ ହୋଇଛନ୍ତି । ସ୍ୱାଧୀନ ଭାବରେ ଆଚରଣ ପାଇଁ ମୋର ଶକ୍ତି ନାହିଁ ? ପ୍ରଭୋ ! ସାଧନା-ପଥରେ ଏହି ବିଘ୍ନଗୁଡ଼ିକୁ ଦୂର କର, ଦୂର କର ।

॥ ମଣ୍ଡଳ ୧୦, ସୂକ୍ତ ୪୭, ମନ୍ତ୍ର ୭ ॥

## ମୋର ଭଜନ, ମୋର ଦୂତ

ବନୀବାନୋ ମମ ଦୂତାସ ଇନ୍ଦ୍ରଂ

ସ୍ତୋମାଶ୍ଚରନ୍ତି ସୁମତୀରିୟାନାଃ ।

ହୃଦିସ୍ପୃଶୋ ମନସା ବଚ୍ୟମାନା

ଅସ୍ମଭ୍ୟଂ ଚିତ୍ରଂ ବୃଷଣଂ ରୟିଂ ଦାଃ ।

( ସପ୍ତଗୁରାଂଗିରସଃ ॥ ବୈକୁଣ୍ଠ ଇନ୍ଦ୍ରଃ ॥ ତ୍ରିଷ୍ଟୁପ୍ )

ପଦପାଠ : ବନୀବାନଃ । ମମ । ଦୂତାସଃ । ଇନ୍ଦ୍ରମ୍ । ସ୍ତୋମାଃ । ଚରନ୍ତି । ସୁମତୀଃ । ଇୟାନାଃ । ହୃଦିସ୍ପୃଶଃ । ମନସା । ବଚ୍ୟମାନାଃ । ଅସ୍ମଭ୍ୟମ୍ । ଚିତ୍ରମ୍ । ବୃଷଣମ୍ । ରୟିମ୍ । ଦାଃ ॥

ପଦାର୍ଥ : ( ସୁମତୀଃ ଇୟାନାଃ ) ଶୁଭ ବୁଦ୍ଧିକୁ ଇଚ୍ଛା କରୁଥିବା (ହୃଦିସ୍ପୃଶଃ) ହୃଦୟସ୍ପର୍ଶୀ ( ମନସା ବଚ୍ୟମାନାଃ ) ମନରେ ଉଚ୍ଚାରିତ ହେଉଥିବା ( ବନୀବାନଃ ) ଅତ୍ୟନ୍ତ ଭକ୍ତିପୂର୍ଣ୍ଣ ( ସ୍ତୋମାଃ ) ସ୍ତୁତିସମୂହ ( ମମ ) ମୋର ( ଦୂତାସଃ ) ଦୂତସମାନ (ଇନ୍ଦ୍ରଂ) ଐଶ୍ୱର୍ଯ୍ୟବାନ୍ ପ୍ରଭୁଙ୍କ ପର୍ଯ୍ୟନ୍ତ ( ଚରନ୍ତି ) ଯାଆନ୍ତି । ହେ ପ୍ରଭୋ ! ( ଅସ୍ମଭ୍ୟଂ ) ଆମ୍ଭମାନଙ୍କୁ ( ଚିତ୍ରମ୍ ) ମନୋମୁଗ୍ଧକର ( ବୃଷଣଂ ରୟିମ୍ ) ସୁଖବର୍ଦ୍ଧକ ଧର୍ମପ୍ରାପ୍ତ ଧନ ( ଦାଃ) ପ୍ରଦାନ କର ।





॥ ମଣ୍ଡଳ ୧୦, ସୂକ୍ତ ୪୭, ମନ୍ତ୍ର ୭ ॥

—ଭକ୍ତ ଭଗବାନଙ୍କ ପାଖକୁ ଦୂତ ପଠାଇବା ପ୍ରସଙ୍ଗ ଏଠାରେ ବର୍ଣ୍ଣିତ ହୋଇଛି । ମନୁଷ୍ୟ ଯଦି ସିଧା ପ୍ରଭୁଙ୍କ ନିକଟରେ ପହଞ୍ଚି ପାରନ୍ତା, ତାହାହେଲେ ଦୂତର କୌଣସି ଆବଶ୍ୟକତା ରହନ୍ତା ନାହିଁ । ମନ୍ତ୍ରରେ ଭକ୍ତର ସ୍ତୁତି-ପ୍ରାର୍ଥନାକୁ ଦୂତ ଆଖ୍ୟା ଦିଆଯାଇଛି । ଦୂତର ଲକ୍ଷଣ ହେଉଛି ଉଭୟ ପକ୍ଷର ମନକୁ ଭଲ ଭାବରେ ବୁଝିବା । ଦୂତ ହେବାପାଇଁ ନମ୍ରତା, ଧୀରତା ଗୁଣଗୁଡ଼ିକୁ ସଞ୍ଚୟ କରିବାକୁ ହୁଏ । ଏଣୁ ଭକ୍ତର ସ୍ତୁତିପ୍ରାର୍ଥନା 'ବନୀବାନଃ' ବା ଭକ୍ତିପୂର୍ଣ୍ଣ ହେବା ଉଚିତ । ତାହା କେବଳ କଣ୍ଠରୁ ନିର୍ଗତ ନ ହୋଇ 'ମନସା ବଚ୍ୟମାନାଃ' ମନ ମଧ୍ୟରୁ ଉଚ୍ଚାରିତ ହେବା ଆବଶ୍ୟକ । ତାହା 'ହୃଦିସ୍ପୃଶଃ' ଅର୍ଥାତ୍ ହୃଦୟସ୍ପର୍ଶୀ ହେବା ବିଧେୟ । ପ୍ରଭୁ ଭକ୍ତର ବାକ୍‌ଚାତୁରୀ, ପଦବିନ୍ୟାସ ଚାହାନ୍ତି ନାହିଁ । ସେ ଚାହାନ୍ତି ତାହାର ହୃଦୟର ପବିତ୍ରତା, କର୍ମରେ ଶ୍ରଦ୍ଧା ଓ ସଂକଳ୍ପ ।

ସ୍ତୁତିପ୍ରାର୍ଥନା ଛଡ଼ା ପ୍ରଭୁଙ୍କ ପାଖକୁ ସମ୍ବାଦ ପଠାଇବା ପାଇଁ ଅନ୍ୟ କୌଣସି ଉପାୟ ନାହିଁ । ପରନ୍ତୁ ଭକ୍ତ ସ୍ୱୟଂ ସ୍ତୁତି-ଭଜନର ଅନୁକୂଳ ଆଚରଣ ନ କଲେ, ମୂର୍ଖ ଓ ଉଦ୍ଧତ ବାର୍ତ୍ତାବାହକ ଯେପରି ଅକୃତକାର୍ଯ୍ୟ ହୋଇ ଫେରିଆସେ, ସେହିପରି ସ୍ତୁତିପ୍ରାର୍ଥନାର ମୂଲ୍ୟ କିଛି ରହେ ନାହିଁ । ପ୍ରଭୁ ସ୍ତୁତିର ଅନ୍ତରାଳରେ ଭକ୍ତ ହୃଦୟର ଶ୍ରଦ୍ଧା ଓ ତାହାର କର୍ତ୍ତବ୍ୟ-ପରାୟଣତାକୁ ଲକ୍ଷ୍ୟ କରନ୍ତି ।

॥ ମଣ୍ଡଳ ୧, ସୂକ୍ତ ୯୭, ମନ୍ତ୍ର ୬ ॥

## ପାପନିବୃତ୍ତିର ଉପାୟ

ତ୍ୱଂ ହି ବିଶ୍ୱତୋମୁଖ ବିଶ୍ୱତଃ ପରିଭୂରସି ।

ଅପ ନଃ ଶୋଶୁଚଦଘମ୍ ॥

( କୁତ୍ସ ଆଙ୍ଗିରସଃ ॥ ଅଗ୍ନିଃ ॥ ଗାୟତ୍ରୀ )

ପଦପାଠ : ତ୍ୱମ୍ । ହି । ବିଶ୍ୱତଃମୁଖ । ବିଶ୍ୱତଃ । ପରିଭୂଃ । ଅସି । ଅପ । ନଃ । ଶୋଶୁଚତ୍ । ଅଘମ୍ ॥

ପଦାର୍ଥ : (ବିଶ୍ୱତୋମୁଖ) ହେ ସର୍ବଦ୍ରଷ୍ଟା ପରମେଶ୍ୱର ! ହି ( ଯେହେତୁ ) ( ତ୍ୱଂ ) ତୁମ୍ଭେ ( ବିଶ୍ୱତଃ ) ସର୍ବତ୍ର ( ପରିଭୂଃ ଅସି ) ବିରାଜମାନ ଓ ବ୍ୟାପ୍ତ ଅଛ, ଅତଏବ ( ନଃ ) ଆମ୍ଭମାନଙ୍କର ( ଅଘମ୍ ) ଦୁଷ୍କର୍ମ ବା ପାପକୁ ( ଅପ ଶୋଶୁଚତ୍ ) ସର୍ବଥା ଦୂର କର ।





॥ ମଣ୍ଡଳ ୧, ସୂକ୍ତ ୯୭, ମନ୍ତ୍ର ୬ ॥

—ଅଗ୍ନି, ଜ୍ଞାନ ଆଉ ଇନ୍ଦ୍ରିୟଗୁଡ଼ିକର ତପସ୍ୟାସ୍ଥଳୀ ମୁଖ ଅଟେ । ଏହି ଜ୍ଞାନେନ୍ଦ୍ରିୟଗୁଡ଼ିକ ଦ୍ୱାରା ମୁଖ ସମସ୍ତ ଦେହକୁ ପରିଚାଳନା କରେ । ସର୍ବଜ୍ଞ ପ୍ରଭୁ ମୁଖସଦୃଶ ସମସ୍ତ ବ୍ରହ୍ମାଣ୍ଡକୁ ଦେଖନ୍ତି ଓ ଶାସନ କରନ୍ତି । ଈଶ୍ୱର ସର୍ବଦା ତାହାଙ୍କ ଅଲଂଘ୍ୟ ନିୟମ କାର୍ଯ୍ୟ କରେ । ଅନ୍ତର୍ଯ୍ୟାମୀ ଆମ୍ଭମାନଙ୍କ ଅନ୍ତରରେ ଜାଗ୍ରତ ହେଉଥିବା ସଂକଳ୍ପ-ବିକଳ୍ପଗୁଡ଼ିକୁ ଜାଣନ୍ତି । ଗୁପ୍ତ ବୋଲି ଯେଉଁ ସବୁ କର୍ମ ଏକାକୀ କରୁଅଛୁଁ, ସର୍ବଦ୍ରଷ୍ଟା ସେ ସବୁ ଦେଖନ୍ତି । ମନୁଷ୍ୟ ପାପକର୍ମ ପାଇଁ ଏକାନ୍ତ ସ୍ଥଳ ଖୋଜେ । ପରନ୍ତୁ 'ବିଶ୍ୱତୋମୁଖ' ପରମ ପ୍ରଭୁଙ୍କ ସର୍ବବ୍ୟାପୀ ସ୍ୱରୂପକୁ ହୃଦୟଙ୍ଗମ କଲେ ପାପୀ କେଉଁଠାରେ ହେଲେ ଏକାନ୍ତ ସ୍ଥଳ ପାଏ ନାହିଁ । ସେ ସର୍ବଦା ତାହାଙ୍କ ଉପସ୍ଥିତି ଅନୁଭବ କରେ ଓ ମନରୁ ପାପବୃତ୍ତିର ଦୂର କରେ ।

ବେଦ ଅନ୍ୟ ସ୍ଥଳରେ କହୁଛନ୍ତି—'ହେ ମନୁଷ୍ୟ ! ତୁମେ ଏକାକୀ କୌଣସି କର୍ମ କରୁଥିବା ବେଳେ ପ୍ରଭୁ ଦ୍ୱିତୀୟ ହୋଇ ତୁମ ପାଖରେ ଥାଆନ୍ତି । ଦୁଇଜଣ ଏକାନ୍ତରେ କର୍ମରତ ଥିବାବେଳେ ସେ ତୃତୀୟ ହୋଇ ଥାଆନ୍ତି, ଇତ୍ୟାଦି ।'

ହେ ଜଗଦୀଶ୍ୱର ! ଆପଣଙ୍କ ସର୍ବବ୍ୟାପୀ ସ୍ୱରୂପକୁ ଆମ୍ଭେମାନେ ଉପଲବ୍ଧି କରି ପାପକର୍ମରୁ ନିବୃତ୍ତ ହେବୁଁ—ଏହି ପ୍ରେରଣା ପ୍ରଦାନ କରନ୍ତୁ ।

॥ ମଣ୍ଡଳ ୪, ସୂକ୍ତ ୫, ମନ୍ତ୍ର ୨ ॥

ତାହାଙ୍କ ଦାନକୁ ନିନ୍ଦା କର ନାହିଁ

ମା ନିନ୍ଦତ ଯ ଇମାଂ ମହ୍ୟଂ ରାତିଂ

ଦେବୋ ଦଦୌ ମର୍ତ୍ୟାୟ ସ୍ୱଧାବାନ ।

ପାକାୟ ଗୃତ୍ସୋ ଅମୃତୋ ବିଚେତା

ବୈଶ୍ୱାନରୋ ନୃତମୋ ଯହ୍ୱୋ ଅଗ୍ନିଃ ॥

( ବାମଦେବୋ ଗୌତମଃ ॥ ବୈଶ୍ୱାନରୋଽଗ୍ନିଃ ॥ ତ୍ରିଷ୍ଟୁପ୍ )

ପଦପାଠ : ମା । ନିନ୍ଦତ । ଯଃ । ଇମାମ୍ । ମହ୍ୟମ୍ । ରାତିମ୍ । ଦେବଃ । ଦଦୌ । ମର୍ତ୍ୟାୟ । ସ୍ୱଧାଽବାନ୍ । ପାକାୟ । ଗୃତ୍ସଃ । ଅମୃତଃ । ବିଽଚେତାଃ । ବୈଶ୍ୱାନରଃ । ନୃଽତମଃ । ଯହ୍ୱଃ । ଅଗ୍ନିଃ ॥

ପଦାର୍ଥ : ( ମା ନିନ୍ଦତ ) ନିନ୍ଦା କର ନାହିଁ; ( ଯଃ ) ଯେ ( ସ୍ୱଧାବାନ୍ ) ସ୍ୱଶକ୍ତିସମ୍ପନ୍ନ (ଅମୃତଃ) ଅବିନାଶୀ ( ବିଚେତାଃ ) ବିଶେଷଜ୍ଞ ( ବୈଶ୍ୱାନରଃ ) ସମସ୍ତ ନରଙ୍କ ହିତକାରୀ ( ନୃତମଃ ) ଜୀବଙ୍କ ମଧ୍ୟରେ ଶ୍ରେଷ୍ଠ ( ଯହ୍ୱଃ ) ବଳଧାରକ ( ଗୃତ୍ସଃ ) ଉପଦେଶକ ( ଅଗ୍ନିଃ ) ଅଗ୍ରଣୀ ( ଦେବଃ ) ଦାତା (ମହ୍ୟମ ମର୍ତ୍ୟାୟ) ମରଣଶୀଳ ମୋ ପାଇଁ (ପାକାୟ) ପରିପକ୍ୱ କରିବାପାଇଁ (ଇମାଂ) ଏହି (ରାତିମ୍) ଜ୍ଞାନ, ଧନାଦି ( ଦଦୌ ) ପ୍ରଦାନ କରିଛନ୍ତି ।





॥ ମଣ୍ଡଳ ୪, ସୂକ୍ତ ୫, ମନ୍ତ୍ର ୨ ॥

—ନିଜର କାମନା ପୂର୍ଣ୍ଣ ନ ହେଲେ ମନୁଷ୍ୟ ପରମେଶ୍ୱରଙ୍କୁ ନିନ୍ଦା କରେ । ସେ ପକ୍ଷପାତୀ, ସେ ଅଦାର ପାଣ । ପରନ୍ତୁ ପରମାତ୍ମା ନିରପେକ୍ଷ ଭାବରେ ଜୀବମାନଙ୍କୁ ସେମାନଙ୍କର କର୍ମାନୁସାରେ ଫଳ ପ୍ରଦାନ କରନ୍ତି । ତାହାଙ୍କ ସାମ୍ରାଜ୍ୟରେ ପକ୍ଷପାତିତା ବା ଅନ୍ୟାୟବିଚାର ନ ଥାଏ ।

ଏଠାରେ ପ୍ରଭୁଙ୍କର ଏପରି ଗୁଣାବଳୀ ବର୍ଣ୍ଣିତ ହୋଇଛି, ଯାହା ହୃଦୟଙ୍ଗମ କଲେ ତାହାଙ୍କୁ ନିନ୍ଦା କରିବା ଧୃଷ୍ଟତାରୁ ମନୁଷ୍ୟ ନିବର୍ତ୍ତିଯାଏ । ସେ ସ୍ୱଧାବାନ୍ ଅର୍ଥାତ ବର୍ତ୍ତନକାଳେ କାହାଠାରୁ କୌଣସିପ୍ରକାର ସହାୟତା ଅପେକ୍ଷା କରନ୍ତି ନାହିଁ । ସେ ସର୍ବଶକ୍ତିମାନ୍ ଓ ଅବିନାଶୀ । ଏଣୁ ତାହାଙ୍କ ସମସ୍ତ ଦାନ ନିଃସ୍ୱାର୍ଥପର । ସେ ବିଶେଷଜ୍ଞ, ସର୍ବଜ୍ଞ । ଏଣୁ ନ୍ୟାୟପୂର୍ବକ ଦାନ କରନ୍ତି । ଦୋଷୀକୁ ଦଣ୍ଡ ଓ ଗୁଣବାନ୍‌କୁ ପୁରସ୍କାର ଦେବା କଲ୍ୟାଣକାରକ ଓ ଦୟାଶୀଳ ସ୍ୱଭାବ ଅଟେ । ପ୍ରଭୁ ଜୀବଙ୍କ କଲ୍ୟାଣ ପାଇଁ ବେଦବାଣୀଦ୍ୱାରା ସମସ୍ତଙ୍କୁ ସମାନପ୍ରକାର ଉପଦେଶ ଦେଇଛନ୍ତି । ସେ ଅଗ୍ନି, ଅଗ୍ରଣୀ । ପଥଭ୍ରଷ୍ଟ ଜୀବକୁ ମାର୍ଗ ପ୍ରଦର୍ଶନ କରାନ୍ତି । ଦଣ୍ଡ ଦେବାବେଳେ ପିତାମାତାଙ୍କୁ ନିଷ୍ଠୁର ବା ନିର୍ଦ୍ଦୟ ବଚନ କହିବା ମୂର୍ଖତା ଅଟେ । ସେହିପରି ନିଜ କର୍ମଫଳ ଭୋଗିବାବେଳେ କର୍ମଫଳଦାତାଙ୍କୁ ନିନ୍ଦା କରିବା ନିର୍ବୋଧତା ଅଟେ ।

॥ ମଣ୍ଡଳ ୧, ସୂକ୍ତ ୧୦୫, ମନ୍ତ୍ର ୧୭ ॥

## କୂପ ମଧ୍ୟରେ ତ୍ରିତ

ତ୍ରିତଃ କୂପେଽବହିତୋ ଦେବାନ୍ ହବତ ଊତୟେ ।
ତଚ୍ଛୁଶ୍ରାବ ବୃହସ୍ପତିଃ କୃଣ୍ୱନ୍ନଂହୂରଣାଦୁରୁ
ବିତ୍ତଂ ମେ ଅସ୍ୟ ରୋଦସୀ ॥

( ତ୍ରିତ ଆପ୍ତ୍ୟଃ ॥ ବିଶ୍ୱେଦେବାଃ ॥ ପଂକ୍ତିଃ )

ପଦପାଠ : ତ୍ରିତଃ । କୂପେ । ଅବଽହିତଃ । ଦେବାନ୍ । ହବତେ । ଊତୟେ । ତତ୍ । ଶୁଶ୍ରାବ । ବୃହସ୍ପତିଃ । କୃଣ୍ୱନ୍ । ଅଂହୁରଣାତ୍ । ଉରୁ । ବିତ୍ତଂ । ମେ । ଅସ୍ୟ । ରୋଦସୀ ଇତି ॥

ପଦାର୍ଥଃ ( କୂପେ ଅବହିତଃ ) କୂଅରେ ପଡ଼ିଥିବା ( ତ୍ରିତଃ ) ତିନିପ୍ରକାର ସନ୍ତାପରେ ଦୁଃଖୀ ବ୍ୟକ୍ତି ( ଊତୟେ ) ରକ୍ଷାପାଇଁ ( ଦେବାନ୍ ) ବିଦ୍ୱାନ ମାନଙ୍କୁ ( ହବତେ ) ଅନୁରୋଧ କରେ—( ରୋଦସୀ ) ହେ ଉପଦେଶକ ସ୍ତ୍ରୀ-ପୁରୁଷ ! ( ମେ ଅସ୍ୟ ବିତ୍ତଂ ) ତୁମ୍ଭେ ଦୁହେଁ ମୋର ଏହି ସ୍ଥିତିକୁ ଜାଣ । (ଅଂହୁରଣାତ୍) ଚତୁର୍ଦିଗରୁ ଆସୁଥିବା ସନ୍ତାପରୁ ରକ୍ଷା ପାଇବାପାଇଁ (ଉରୁ କୃଣ୍ୱନ ବୃହସ୍ପତିଃ) ଅତ୍ୟନ୍ତ ଯତ୍ନଶୀଳ ସ୍ୱାମୀ (ତତ୍) ସେହି ଆହ୍ୱାନକୁ ( ଶୁଶ୍ରାବ ) ଶୁଣନ୍ତି ।





॥ ମଣ୍ଡଳ ୧, ସୂକ୍ତ ୧୦୫, ମନ୍ତ୍ର ୧୭ ॥

ସଂସାରରେ ତିନିପ୍ରକାର ଦୁଃଖ, ସନ୍ତାପ ଦେଖାଯାଏ । କାମ, କ୍ରୋଧ, ଲୋଭ ପ୍ରଭୃତି ଆଧ୍ୟାତ୍ମିକ ତାପ, ହିଂସ୍ରକ ଜୀବାଦିଙ୍କ ଠାରୁ ଆଧିଭୌତିକ ତାପ ଓ ଅତିବର୍ଷାଦିଷ୍ଟୋଭଣାଦିରୁ ଆଧିଦୈବିକ ତାପ ମିଳେ । ତିନିପ୍ରକାର ତାପଦ୍ୱାରା ସନ୍ତପ୍ତ ଜୀବ 'ତ୍ରିତ' ଅଟେ । ତ୍ରିବିଧ ତାପରେ ଦଗ୍ଧ ହୋଇ ଜୀବାତ୍ମା ସଂସାରରୂପକ କୂପମଧ୍ୟରେ ପଡ଼ି ରହି ଚିତ୍କାର କରେ ।

କୂପମଧ୍ୟରେ ପଡ଼ିବା ଅର୍ଥ ବିପନ୍ନ ଓ ପତିତ ହେବା । କୂପ ମଧ୍ୟରେ ପଡ଼ିଥିବା ଲୋକ କୂପର କ୍ଷୁଦ୍ର ବେଷ୍ଟନୀକୁ ସମସ୍ତ ବ୍ରହ୍ମାଣ୍ଡ ବୋଲି ମଣିଥାଏ । ଭିତରୁ ତାହାର ଚିତ୍କାର ସହଜରେ ବାହାର ଲୋକଙ୍କୁ ଶୁଭେନାହିଁ । ପରନ୍ତୁ ଯେଉଁ ପରୋପକାରୀ ବ୍ୟକ୍ତି ଏହି କରୁଣ ଚିତ୍କାର ଶୁଣନ୍ତି, ତାହାର ଉଦ୍ଧାର ପାଇଁ ଦୌଡ଼ି ଆସନ୍ତି ।

ମନୁଷ୍ୟ କୂପମଧ୍ୟରେ ଯେ ତ ଭଳି କ୍ଷୁଦ୍ର ବିଷୟସ୍ୱାର୍ଥଗର୍ତ୍ତରେ ସନ୍ତପ୍ତ ହୁଏ । ଦୁଃଖରୁ ଉଦ୍ଧାରପାଇଁ ସଂସାରର ସାଧୁଜନଙ୍କ ଉପରକୁ ସତୃଷ୍ଣ ନୟନରେ ଚାହିଁଲେ, ସେମାନେ ତାହାର ସହାୟକ ହୁଅନ୍ତି । ତାହାକୁ ବାହାର କଢ଼ାଇ ନିଅନ୍ତି । ସଙ୍କେତ ପାଇବା ମାତ୍ରେ ସଂତପ୍ତ ହୃଦୟକୁ ଶାନ୍ତି କରିବାପାଇଁ ସାଧୁସନ୍ଥ ବ୍ୟାକୁଳ ହୋଇ ରହିଛନ୍ତି । ପରନ୍ତୁ ଶାନ୍ତିଲାଭ ପାଇଁ ସଂତପ୍ତ ମୁଖରେ ଆତୁର ସଂକେତ ଦେଖାଦେବା ଆବଶ୍ୟକ ।

॥ ମଣ୍ଡଳ ୧୦, ସୂକ୍ତ ୧୧୯, ମନ୍ତ୍ର ୨ ॥

ଉକ୍ତିର ସୋମପାନ

ପ୍ର ବାତା ଇବ ଦୋଧତ ଉନ୍ମା ପୀତା ଅୟଂସତ ।

କୁବିତ୍ ସୋମସ୍ୟାପାମିତି ॥

( ଐନ୍ଦ୍ରୋଲବଃ ॥ ଆତ୍ମା ॥ ଗାୟତ୍ରୀ )

ପଦପାଠ : ପ୍ର । ବାତାଃଽଇବ । ଦୋଧତ । ଉତ୍ । ମା । ପୀତାଃ । ଅୟଂସତ । କୁବିତ୍ । ସୋମସ୍ୟ । ଅପାମ୍ ଇତି । ॥

ପଦାର୍ଥ : ( ଦୋଧତଃ ) ଗତିଶୀଳ ( ବାତାଃଇବ ) ବାୟୁ ପରି ( ମା ) ମୋତେ ( ପୀତାଃ ) ପିଇଥିବା ଭକ୍ତିରସ ( ପ୍ର ) ଅତ୍ୟନ୍ତ ( ଉତ୍-ଅୟଂସତ ) ଉତ୍ସାହିତ କରୁଅଛି ( ଇତି ) ସେହେତୁ ( କୁବିତ୍ ) ବହୁବାର ( ସୋମସ୍ୟ ଅପାମ୍ ) ମୁଁ ସୋମରସ ପାନ କରିଅଛି ।



॥ ମଣ୍ଡଳ ୧୦, ସୂକ୍ତ ୧୧୯, ମନ୍ତ୍ର ୨ ॥

—ଏଠାରେ ବର୍ଣ୍ଣିତ ହୋଇଥିବା ସୋମରସ କୌଣସି ଫଳସ୍ୱରସ ନୁହେଁ । ଏହା ବୁଦ୍ଧିନାଶ କରୁଥିବା କୌଣସି ମାଦକଦ୍ରବ୍ୟ ନହେଁ । ବେଦର ଅନ୍ୟାନ୍ୟ ସ୍ଥଳରେ କୁହାଯାଇଛି— "ବ୍ରହ୍ମବିତ୍‌ମାନେ ଯେଉଁ ସୋମରସ ପାନ କରନ୍ତି, ତାହାର ସ୍ୱାଦୁ ଅନନ୍ୟତମାସ୍ତ । ଯେ ତାହା ଉପଭୋଗ କରିନାହିଁ, ସେ ଏହି ସ୍ୱାଦୁ କପଣ ବା ଜାଣିବ ?" ଭକ୍ତ-ହୃଦୟରେ ଉଦ୍‌ବେଳିତ ହେଉଥିବା ଆନନ୍ଦରସକୁ ବେଦରେ ସୋମରସ କୁହାଯାଇଛି ।

ସୋମରସ ପାନକରି ମନୁଷ୍ୟ ବ୍ରତଶୀଳ ବା କର୍ମତତ୍ପର ହୋଇଉଠେ । ବ୍ରାହ୍ମଣ-ପ୍ରକୃତିର ମନୁଷ୍ୟଙ୍କ ହୃଦୟରେ ଏହି ରସ ପ୍ରବାହିତ ହେବା ମାତ୍ରେ ସେମାନେ ମନୁଷ୍ୟସମାଜରୁ 'ଅଜ୍ଞାନ' ନାଶ କରିବା ପାଇଁ ଉଦ୍‌ବୁଦ୍ଧ ହୋଇ ଉଠନ୍ତି । କ୍ଷାତ୍ର ପୁରୁଷଙ୍କ ହୃଦୟରେ ଏହି ରସ ସଂଚାଳିତ ହେବାମାତ୍ରେ ସେମାନେ ସମାଜରୁ 'ଅନ୍ୟାୟ' ଦୂର କରିବା ପାଇଁ ଉତ୍ସାହୀ ହୋଇ ଉଠନ୍ତି । ବୈଶ୍ୟ-ସ୍ୱଭାବପନ୍ନ ଲୋକେ ସୋମପାନ କରି ସମାଜରୁ 'ଅଭାବ' ଦୂରପାଇଁ କଟିବଦ୍ଧ ହୁଅନ୍ତି । ସୋମରସ ମନୁଷ୍ୟର ଆନ୍ତରିକ ପ୍ରବୃତ୍ତିକୁ ଶୁଭ-ସଂକଳ୍ପ କରେ ।

ସୋମପାୟୀ କହନ୍ତି—"ବୃକ୍ଷର ଶାଖା-ପ୍ରଶାଖା ବାୟୁତାପରେ ଉଦ୍‌ବେଳିତ ହେବା ପରି, ମୋର ଅଙ୍ଗପ୍ରତ୍ୟଙ୍ଗ, ମନପ୍ରାଣ ସୋମପାନ କରି ଉତ୍ସାହିତ ହେଉଅଛି । ଅତଏବ ଜାଣେଁ, ବହୁବାର ପ୍ରଭୁଙ୍କୁ ଉପଲବ୍ଧି କରି ମୁଁ ଆନନ୍ଦରସରେ ଉଲ୍ଲସିତ ହୋଇଉଠୁଛି ।

|| ମଣ୍ଡଳ ୭, ସୂକ୍ତ ୮୯, ମନ୍ତ୍ର ୪ ||

ଜଳ ମଧ୍ୟରେ ପିପାସୁ

ଅପାଂ ମଧ୍ୟେ ତସ୍ଥିବାଂସଂ

ତୃଷ୍ଣାବିଦଜ୍ଜରିତାରମ୍ ।

ମୃଳା ସୁକ୍ଷତ୍ର ମୃଳୟ

( ମୈତ୍ରାବରୁଣିର୍ବଶିଷ୍ଠଃ ।। ବରୁଣଃ ।। ଗାୟତ୍ରୀ )

ପଦପାଠ : ଅପାମ୍ । ମଧ୍ୟେ । ତସ୍ଥିଽବାଂସମ୍ । ତୃଷ୍ଣା । ଅବିଦତ୍ । ଜରିତାରମ୍ । ମୃଳ । ସୁଽକ୍ଷତ୍ର । ମୃଳୟ ।।

ପଦାର୍ଥ : ( ଅପାଂ ମଧ୍ୟେ ) ଜଳମଧ୍ୟରେ ( ତସ୍ଥିବାଂସଂମ୍ ) ଠିଆ ହୋଇଥିବା ( ଜରିତାରଂ ) ଶୀର୍ଣ୍ଣ, ଅସଂଯମୀ ବ୍ୟକ୍ତିକୁ ( ତୃଷ୍ଣା ) ପିପାସା ( ଅବିଦତ୍ ) ଅନୁଭୂତ ହୁଏ । ( ସୁକ୍ଷତ୍ର ) ହେ ଉତ୍ତମ ରକ୍ଷକ ! ( ମୃଳ ) ହେ ସୁଖକାରକ ! ( ମୃଳୟ ) ତାହାକୁ ସୁଖୀ କର ।





|| ମଣ୍ଡଳ ୭, ସୂକ୍ତ ୮୯, ମନ୍ତ୍ର ୪ ||

—ପରମାତ୍ମା ଜଳସଦୃଶ ବ୍ୟାପକ ଅନନ୍ତ, ସର୍ବତ୍ର ତାଙ୍କର ଆନନ୍ଦସ୍ରୋତ ପ୍ରବାହିତ ହେଉଅଛି । ଜଳ, ସ୍ଥଳ, ଆକାଶ ସବୁଠାରୁ ତାହାଙ୍କ ଅମୃତରସ ଛୁଟିକି ଆସୁଛି । ଯେ ବିଷୟଭୋଗୀ, ସେ ଅମୃତର ସ୍ୱାଦ ବୁଝେନାହିଁ । ଅମୃତ ତାହାକୁ ବିଷବତ୍ ବୋଧହୁଏ । ବିଷୟପିପାସାରେ ସେ ଜର୍ଜରିତ ହୁଏ । ଘୃତାହୁତି ପାଇ ଅଗ୍ନି ବଢ଼ିବା ପରି ଭୋଗଦ୍ୱାରା ଭୋଗୀର ଲାଳସା ବୃଦ୍ଧି ପାଏ । ଲାଳସାର ବୃଦ୍ଧି ସଙ୍ଗେ ସଙ୍ଗେ ଦୁଃଖ ମଧ୍ୟ ବଢ଼ିଚାଲେ । ପରନ୍ତୁ ଆନନ୍ଦ ରସ ପାନ କରି କେହି କେବେ ଦୁଃଖୀ ହୋଇନାହିଁ । ଯେ ବିଷୟ ଭୋଗକୁ ସଂଯମ କରିପାରେ, ସେ ଦୁଃଖୀ ହୁଏ ନାହିଁ ।

ଅମୃତର ସମୁଦ୍ର ମଧ୍ୟରେ ରହି ସୁଦ୍ଧା ବିଷୟଲାଳସା ପୂର୍ତ୍ତି କରିବା ପାଇଁ ବିଷୟଭୋଗୀର କି ବା ବସ୍ତୁ ଅଛି ? ଅମୃତସମୁଦ୍ର ମଧ୍ୟରେ ରହି ସୁଦ୍ଧା ଭୋଗର ଅନ୍ୱେଷଣରେ ସେ ସର୍ବଦା ଚଞ୍ଚଳ ଥିବାରୁ ତାହାର ପିପାସା ମେଣ୍ଟେ ନାହିଁ । ଅନ୍ୟ ପକ୍ଷରେ ପ୍ରଭୁଦର୍ଶନ ପାଇଁ ସେ ବ୍ୟାକୁଳ, ଭୋଗର ପାରାବାର ମଧ୍ୟରେ ସେ ନିଜକୁ ଅସହାୟ ମନେକରେ । କୋଟି କୋଟି ଭୋଗର ସ୍ୱାଦ ବୁଝି ବୁଝି ଶେଷରେ ସେ ଦୁଃଖୀ ହୋଇଛି । ତେଣୁ ଭୋଗ ମଧ୍ୟରେ ତାହାର ପିପାସା ମେଣ୍ଟେ ନାହିଁ ।

॥ ମଣ୍ଡଳ ୮, ସୂକ୍ତ ୧, ମନ୍ତ୍ର ୧୦ ॥

ବ୍ରହ୍ମଗବୀ

ଆ ତ୍ୱଦ୍ୟ ସବର୍ଦୁଘାଂ
ହୁବେ ଗାୟତ୍ରବେପସମ୍ ।
ଇନ୍ଦ୍ରଂ ଧେନୁଂ ସୁଦୁଘାମନ୍ୟାମିଷ-
ମୁରୁଧାରାମରଂକୃତମ୍ ॥

( ମେଧାତିଥି-ମେଧ୍ୟାତିଥୀ କାଣ୍ୱୌ । ଇନ୍ଦ୍ରଃ । ବୃହତୀ । )

ପଦପାଠ : ଆ । ତୁ । ଅଦ୍ୟ । ସବଃଦୁଘାମ୍ । ହୁବେ । ଗାୟତ୍ରଃବେପସମ୍ । ଇନ୍ଦ୍ରମ୍ । ଧେନୁମ୍ । ସୁଃଦୁଘାମ୍ । ଅନ୍ୟାମ୍ । ଇଷମ୍ । ଉରୁଃଧାରାମ୍ । ଅରମ୍‌ଃକୃତମ୍ ॥

ପଦାର୍ଥ : ( ଅଦ୍ୟ ) ଆଜି ( ତୁ ) ତେବେ ( ସବର୍ଦୁଘାଂ ) ଉତ୍ତମ ପଦାର୍ଥର ଦାତ୍ରୀ (ଗାୟତ୍ରବେପସମ୍) ଗାୟତ୍ରୀ ପରି ଗତିଶୀଳା ( ସୁଦୁଘାମ୍ ) ସହଜରେ ଦୁହାଁ ହେଉଥିବା ( ଅନ୍ୟାମ୍ ) ଲୌକିକ ଗାଈଠାରୁ ଭିନ୍ନା, ପ୍ରାଣଦାତ୍ରୀ ( ଇଷମ୍ ) ଇଚ୍ଛାଯୋଗ୍ୟା ( ଉରୁଧାରାମ୍ ) ପ୍ରଶସ୍ତ ଧାରଯୁକ୍ତା ( ଅରଂକୃତମ୍ ) ଅଳଂକୃତା ( ଇନ୍ଦ୍ରଂ ) ଐଶ୍ୱର୍ଯ୍ୟଶାଳିନୀ ( ଧେନୁମ୍ ) ଗାଈକୁ ( ଆ ହୁବେ ) ମୁଁ ଆହ୍ୱାନ କରୁଅଛି ।





॥ ମଣ୍ଡଳ ୮, ସୂକ୍ତ ୧, ମନ୍ତ୍ର ୧୦ ॥

—ଆଜି ଅପୂର୍ବ ଧେନୁକୁ ଦୋହନ କରିବ । ଲୌକିକ ଧେନୁ କେବଳ ଦୁଗ୍ଧ ଦାନ କରେ । ପରନ୍ତୁ ପ୍ରଭୁ ସର୍ବଦୁଘା ଧେନୁରୂପରେ ଚତୁର୍ଦ୍ଦିଗରେ ସମସ୍ତଙ୍କ ପାଇଁ ଓତପ୍ରୋତ ହୋଇ ବିରାଜମାନ ଅଛନ୍ତି । ଏପରି କୌଣସି ବସ୍ତୁ ନାହିଁ, ଯାହା ଏହି ବ୍ରହ୍ମଗବୀଙ୍କ ଠାରୁ ଦୋହନ କରି ପାରିବ ନାହିଁ । ଲୌକିକ ଧେନୁର ଗୋରସ-ଦାନର ସୀମା ଅଛି । ପରନ୍ତୁ ପ୍ରଭୁଙ୍କ ରସଧାରର ପାରାବାର ନାହିଁ ।

ବ୍ରହ୍ମଗବୀ ଚତୁଷ୍ପାଦରେ ଅଛି ନାହାନ୍ତି । ସେ ଗାୟତ୍ରୀ ଉପରେ ଅନ୍ୱେଷଣ କରି ଭ୍ରମଣ କରନ୍ତି । ତାହାଙ୍କ କଲ୍ୟାଣମୟୀ ବେଦବାଣୀ ଚତୁର୍ଦ୍ଦିଗରେ ଗୁଞ୍ଜରି ଉଠୁଅଛି, ଶୁଣିବା ଲୋକ ତାହା ଶୁଣି ପାରନ୍ତି । ଯେ ଜିଜ୍ଞାସୁ, ଯେ ଶ୍ରଦ୍ଧାଳୁ ସେ ତାହାଙ୍କ ଅମୃତମୟ ରସ ସଂଗ୍ରହ କରନ୍ତି ଓ ରସିକ ହୋଇ ଉଠନ୍ତି । ବ୍ରହ୍ମଗବୀ ମୁକ୍ତ ହସ୍ତରେ ଜ୍ଞାନରସ ବିତରଣ କରନ୍ତି ।

ସର୍ବମୟୀ ବ୍ରହ୍ମଗବୀ ଗୋମାତାଙ୍କୁ ଆହ୍ୱାନ କରୁଅଛି । ଦିବ୍ୟରସର ଆସ୍ୱାଦନ ପାଇଁ ତାହାଙ୍କୁ ଦୋହନ କରିବ ।

॥ ମଣ୍ଡଳ ୮, ସୂକ୍ତ ୧୦୨, ମନ୍ତ୍ର ୧୯ ॥

ହାୟ ! ମୋ ପାଖରେ ଯଜ୍ଞସାମଗ୍ରୀ ନାହିଁ

ନହି ମେ ଅସ୍ତ୍ୟଘ୍ନ୍ୟା

ନ ସ୍ୱଧିତିର୍ବନନ୍ୱତି ।

ଅଥୈତାଦୃଗ୍ଭରାମି ତେ ॥

( ଭାର୍ଗବଃ ପ୍ରୟୋଗଃ । ଅଗ୍ନିଃ । ଗାୟତ୍ରୀ । )

ପଦପାଠ : ନହି । ମେ । ଅସ୍ତି । ଅଘ୍ନ୍ୟା । ନ । ସ୍ୱଧିତିଃ । ବନନ୍‌ୱତି । ଅଥ । ଏତାଦୃକ୍ । ଭରାମି । ତେ ॥

ପଦାର୍ଥ : ( ମେ ) ମୋର ( ଅଘ୍ନ୍ୟା ) ଅହନ୍ତବ୍ୟା ଧେନୁ ( ନହି ଅସ୍ତି ) ନାହିଁ, (ବନନ୍ୱତି) କାଠ କାଟିବା (ସ୍ୱଧିତିଃ) କୁରାଢ଼ୀ ମଧ୍ୟ (ନ) ନାହିଁ, (ଅଥ) ଏଣୁ ( ଏତାଦୃକ୍ ) ଏହିପରି ରିକ୍ତହସ୍ତ ହୋଇ (ତେ) ତୁମ୍ଭକୁ (ଭରାମି) ମୁଁ ଧାରଣ କରିଅଛି ।



॥ ମଣ୍ଡଳ ୮, ସୂକ୍ତ ୧୦୨, ମନ୍ତ୍ର ୧୯ ॥

ଅଗ୍ନିହୋତ୍ର ବା ହୋମର ଅନ୍ୟ ନାମ ଦେବଯଜ୍ଞ । ମନୁଷ୍ୟର ଦୈନନ୍ଦିନ ପଞ୍ଚ ମହାଯଜ୍ଞ ବା ପାଞ୍ଚୋଟି ମୁଖ୍ୟ କର୍ତ୍ତବ୍ୟ ମଧ୍ୟରେ ଏହା ଅନ୍ୟତମ । ହୋମଦ୍ୱାରା ଘୃତ ଓ ଶାକଲ୍ୟର ସୂକ୍ଷ୍ମକଣଗୁଡ଼ିକ ଶତ୍ରୁମିତ୍ର, ଜାନବର, ମନୁଷ୍ୟପଶୁ ନିର୍ବିଶେଷରେ ସମସ୍ତଙ୍କଠାରେ ସୂକ୍ଷ୍ମଭାବରେ ବିତରଣ କରାଯାଏ । ଅଗ୍ନିହୋତ୍ରର ରୋଗନାଶକ, ପୁଷ୍ଟିକାରକ ସୁଗନ୍ଧଦ୍ୱାରା ସ୍ୱାସ୍ଥ୍ୟ ପ୍ରସନ୍ନତା ଓ ଆତ୍ମବଳ ମିଳେ । ଯଜ୍ଞରେ ଆହୁତିଦାନରୁ ମନରେ ପରୋପକାର ଭାବନା ଜାଗ୍ରତ ହୁଏ । ବେଦର ଅନ୍ୟ ଏକ ସ୍ଥଳରେ କୁହାଯାଇଛି ଯେ ପ୍ରାତଃକାଳୀନ ଅଗ୍ନିହୋତ୍ର ଦିବସ ତମାମ ଶକ୍ତି ଓ ଆନନ୍ଦ ପ୍ରଦାନ କରେ । ସେହିପରି ସାୟଂକାଳୀନ ଅଗ୍ନିହୋତ୍ର ଆଗାମୀ ପ୍ରାତଃକାଳ ପର୍ଯ୍ୟନ୍ତ ମନକୁ ଶିବସଂକଳ୍ପୀବାନ୍ ଓ ସାତ୍ତ୍ୱିକ କରି ରଖେ ।

ଭକ୍ତ କହନ୍ତି—'ହେ ପ୍ରଭୋ ! ଅଗ୍ନିହୋତ୍ର ପାଇଁ ଆବଶ୍ୟକୀୟ ସମ୍ବଳ ମୋ ପାଖରେ ନାହିଁ । ଘୃତସଂଗ୍ରହ ପାଇଁ ମୋର ଗାଈ ନାହିଁ । ହୋମକାଠ କାଟିବା ପାଇଁ କୁରାଢ଼ୀଟିଏ ମଧ୍ୟ ନାହିଁ । ମୋ ହୃଦୟରେ କେବଳ ଶ୍ରଦ୍ଧା ରହିଛି । ତାହାକୁ ସ୍ୱୀକାର କର । ମୋର ଇନ୍ଧନସ୍ୱରୂପୀ ସମିଧା ଉପରେ ଜ୍ଞାନାଗ୍ନି ପ୍ରଜ୍ୱଳିତ କର । ମୋର ଜୀବନ ଯଜ୍ଞକୁ ପ୍ରକାଶିତ କର ।'

॥ ମଣ୍ଡଳ ୮, ସୂକ୍ତ ୧୯, ମନ୍ତ୍ର ୨୫ ଓ ୨୬ ॥

ପ୍ରଭୋ ! ତୁମେ ଯଦି ମନୁଷ୍ୟ ହୋଇଯାଅ

ଯଦଗ୍ନେ ମର୍ତ୍ତ୍ୟସ୍ତ୍ୱଂ ସ୍ୟାମହଂ ମିତ୍ରମହୋ ଅମର୍ତ୍ତ୍ୟଃ ।

ସହସଃ ସୂନବାହୁତ ॥

ନ ତ୍ୱା ରାସୀୟାଭିଶସ୍ତୟେ ବସୋ ନ ପାପତ୍ୱାୟ ସନ୍ତ୍ୟ ।

ନ ମେ ସ୍ତୋତାମତୀବା ନ ଦୁର୍ହିତଃ ସ୍ୟାଦଗ୍ନେ ନ ପାପୟା ॥

( ସୋଭରିଃ କାଣ୍ୱଃ । ଅଗ୍ନିଃ । ଉଷ୍ଣିକ୍, ପଂକ୍ତିଃ । )

ପଦପାଠ : ଯତ୍ । ଅଗ୍ନେ । ମର୍ତ୍ତ୍ୟଃ । ତ୍ୱମ୍ । ସ୍ୟାମ୍ । ଅହମ୍ । ମିତ୍ରଽମହଃ । ଅମର୍ତ୍ତ୍ୟଃ । ସହସଃ । ସୂନୋ ଇତି । ଆଽହୁତ । ନ । ତ୍ୱା । ରାସୀୟ । ଅଭିଽଶସ୍ତୟେ । ବସୋ ଇତି । ନ । ପାପଽତ୍ୱାୟ । ସଂତ୍ୟ । ନ । ମେ । ସ୍ତୋତା । ଅମତିଽବା । ନ । ଦୁଃଽହିତଃ । ସ୍ୟାତ୍ । ଅଗ୍ନେ । ନ । ପାପୟା ॥

ପଦାର୍ଥ : ( ଅଗ୍ନେ ) ହେ ଜ୍ଞାନସ୍ୱରୂପ ! ହେ ( ମିତ୍ରମହଃ ) ମିତ୍ରମାନଙ୍କ ମହିମାବର୍ଦ୍ଧକ ! ହେ ( ସହସଃ ସୂନୋ ) ଶକ୍ତିପ୍ରେରକ ! ହେ ( ଆହୁତ ) ଉପାସ୍ୟ ପରମେଶ୍ୱର ! (ଯତ୍ ତ୍ୱଂ ମର୍ତ୍ତ୍ୟଃ) ଯଦି ତୁମେ ମନୁଷ୍ୟ ହୋଇଯାଅ (ଅହଂ ଅମର୍ତ୍ତ୍ୟଃ) ମୁଁ ଅମୃତମୟ ପରମାତ୍ମା (ସ୍ୟାମ୍) ହୁଏ, ତାହାହେଲେ (ବସୋ) ହେ ପ୍ରଭୋ ! (ତ୍ୱା) ତୁମକୁ (ଅଭିଶସ୍ତୟେ) ନିନ୍ଦା, ଅପବାଦ ପାଇବାକୁ (ନ ରାସୀୟ) ଦେବି ନାହିଁ । (ସନ୍ତ୍ୟ) ହେ ଭଜନଯୋଗ୍ୟ ପ୍ରଭୋ ! (ନ ପାପତ୍ୱାୟ) ପାପକର୍ମ ପାଇଁ (ମେ) ମୋର (ସ୍ତୋତା) ଭକ୍ତ (ଅମତୀବା) ମତିହୀନ ( ନ ) ହୁଏନାହିଁ, (ଦୁର୍ହିତଃ) ଦୁର୍ଗତ (ନ ସ୍ୟାତ୍) ହୁଏନାହିଁ ଏବଂ (ଅଗ୍ନେ) ହେ ପ୍ରକାଶସ୍ୱରୂପ ! (ନ ପାପୟା) ପାପକାର୍ଯ୍ୟ ପାଇଁ ଉଦ୍ୟତ ହୁଏ ନାହିଁ ।



॥ ମଣ୍ଡଳ ୮, ସୂକ୍ତ ୧୯, ମନ୍ତ୍ର ୨୫ ଓ ୨୬ ॥

—ବେଦ ପରମ ଦେବଙ୍କ କାବ୍ୟ । ବେଦର କାବ୍ୟଶୈଳୀ ଅନୁପମ ଓ ଅନବଦ୍ୟ । ଭଗବାନ୍‌ଙ୍କ ପ୍ରତି ଭକ୍ତର ଅଭିମାନ ଓ ଉଦ୍‌ଗାରକୁ ବେଦ କେତେ ମନୋଜ୍ଞ ଓ ରସାଳ ଭାବରେ ବର୍ଣ୍ଣନା କରିଛନ୍ତି ! ଏଠାରେ ଭକ୍ତ ନିଜର ମାନସିକ ଭାବକୁ ଭଗବାନଙ୍କ ଠାରେ ଆରୋପ କରୁଅଛି । ନିଜକୁ ଭଗବାନଙ୍କ ସ୍ଥାନରେ ସ୍ଥାପନ କରି ପ୍ରକାରାନ୍ତରେ ତାହା ପ୍ରତି ପ୍ରଭୁଙ୍କ ଭାବନାକୁ ସେ ନିର୍ଦ୍ଦୟ ଓ ନିଷ୍ଠୁର ବୋଲି କହୁଅଛି ।

ପ୍ରଭୁଙ୍କ ନାମ ନେଇ ସେ ମିଥ୍ୟାଚରଣ କରୁଅଛି । ତାହାର କୁସଂସ୍କାର ବଢ଼ିଯାଇଛି । ସେ ଅଶାନ୍ତ ହୋଇପଡ଼ୁଛି । ସେ ଭାବୁଅଛି ଯେ ପ୍ରଭୁ ତା'ପ୍ରତି ନିର୍ଦ୍ଦୟ । ଅଳ୍ପ ଓ ସହଜ ଫଳ ପାଇବା ଆଶାରେ ସେ ରୁଷ୍ଟ ହୋଇ କହୁଛି, 'ହେ ମୋର ପ୍ରଭୋ ! ଯଦି କେବେ ତୁମେ ମନୁଷ୍ୟ ପାଲଟିଯାଅ ଓ ମୁଁ ଭଗବାନ୍ ହୋଇଯାଏ, ତାହା ହେଲେ ତୁମକୁ ଏହିସବୁ ପାପକାର୍ଯ୍ୟରେ ପ୍ରବୃତ୍ତ କରିବି ନାହିଁ ।'

କର୍ମବ୍ୟବସ୍ଥାର ଅଟଳ ନିୟମକୁ ବୁଝିବା ପାଇଁ ଭକ୍ତର ସହିଷ୍ଣୁତା ନାହିଁ । ପ୍ରଭୁଙ୍କୁ ସ୍ତୁତି କରିବା ମାତ୍ରକେ ସେ ଯେ ପାପମୁକ୍ତ ହୋଇଯିବ, ତାହାର ଏହି ଅଭିଳାଷ ଭ୍ରାନ୍ତ ଅଟେ । ନିଜର ବ୍ୟାକୁଳତାକୁ କର୍ମରେ ପ୍ରୟୋଗ କଲେ ହିଁ ପ୍ରଭୁ ତାହାର ଦୁର୍ଗତି ନାଶ କରିବେ ।

॥ ମଣ୍ଡଳ ୭, ସୂକ୍ତ ୭୬, ମନ୍ତ୍ର ୨ ॥

ଆଧ୍ୟାତ୍ମିକ ଉଷା

ପ୍ର ମେ ପନ୍ଥା ଦେବଯାନା ଅଦୃଶ୍ର-

ନ୍ନମର୍ଧନ୍ତୋ ବସୁଭିରିଷ୍କୃତାସଃ

ଅଭୂଦୁ କେତୁରୁଷସଃ ପୁରସ୍ତାତ୍

ପ୍ରତୀଚ୍ୟାଗାଦଧି ହର୍ମ୍ୟେଭ୍ୟଃ ।

( ମୈତ୍ରାବରୁଣିର୍ବସିଷ୍ଠଃ । ଉଷସଃ । ତ୍ରିଷ୍ଟୁପ୍ )

ପଦପାଠ : ପ୍ର । ମେ । ପନ୍ଥାଃ । ଦେବଽଯାନାଃ । ଅଦୃଶ୍ରନ୍ । ଅମର୍ଧନ୍ତଃ । ବସୁଽଭିଃ । ଇଷ୍କୃତାସଃ । ଅଭୂତ୍ । ଊଁ ଇତି । କେତୁଃ । ଉଷସଃ । ପୁରସ୍ତାତ୍ । ପ୍ରତୀଚୀ । ଆ । ଅଗାତ୍ । ଅଧି । ହର୍ମ୍ୟେଭ୍ୟଃ ॥

ପଦାର୍ଥ : (ମେ) ମୋତେ (ଦେବଽଯାନାଃ) ଦେବତାଙ୍କ ଆଡ଼କୁ (ପନ୍ଥାଃ) ମାର୍ଗ (ଅଦୃଶ୍ରନ୍) ଦେଖାଗଲାଣି । (ଅମର୍ଧନ୍ତଃ) ଏହି ମାର୍ଗ ପଥିକକୁ ଦୁଃଖ ଦିଏନାହିଁ । (ବସୁଭିଃ) ସାଧନ୍ତ ଐଶ୍ୱର୍ଯ୍ୟଦ୍ୱାରା (ଇଷ୍କୃତାସଃ) ଅଲଙ୍କୃତ (ଉଷସଃ) ଉଷାର (କେତୁଃ) ପଥପ୍ରଦର୍ଶକ ପ୍ରକାଶ (ପୁରସ୍ତାତ୍) ମାନସ ଚକ୍ଷୁସମ୍ମୁଖରୁ (ଅଭୂତ) ଆସିଅଛି । (ହର୍ମ୍ୟେଭ୍ୟଃ ଅଧି) ହୃଦୟମନ୍ଦିରରୁ ବାହାର ଏହି ଉଷା (ପ୍ରତୀଚୀ) ସମ୍ମୁଖକୁ (ଆଗାତ୍) ଆସିଲାଣି ।





॥ ମଣ୍ଡଳ ୭, ସୂକ୍ତ ୭୬, ମନ୍ତ୍ର ୨ ॥

—ଋଗ୍ବେଦ ସପ୍ତମ ମଣ୍ଡଳ ଛସ୍ତରି ସୂକ୍ତର ସାତୋଟି ମନ୍ତ୍ରରେ ଉଷାର ବର୍ଣ୍ଣନା କରାଯାଇଅଛି । ଉଷାର ଅର୍ଥ ଆଧିଦୈବିକ; ପ୍ରାତଃକାଳୀନ ସୂର୍ଯ୍ୟୋଦୟପୂର୍ବବର୍ତ୍ତୀ ମୁହୂର୍ତ୍ତ । ପରନ୍ତୁ ଏହି ସୂକ୍ତରେ ଏହି ଉଷାକୁ ହିଁ ଆଲୋଚନା କରିବା ସଂଗତ ମନେ ହୁଏ ନାହିଁ । ଉଷା ମାନବହୃଦୟରେ ଉଦୟ ହେଉଥିବା ଆଧ୍ୟାତ୍ମିକ ପ୍ରକାଶର ଆରଂଭର ଅଟେ । ମାନବ ହୃଦୟର ସମ୍ରାଟ୍ ଜୀବନପ୍ରଦାତା ସବିତାଦେବ ଉଷାର ପ୍ରକାଶକ ଅଟନ୍ତି । ତାଙ୍କର ପ୍ରେରଣାରେ ଉଦ୍ଭୂତ ହେଉଥିବା ଜୀବାତ୍ମାର ଜାଗ୍ରତ ମୁହୂର୍ତ୍ତଗୁଡ଼ିକ ଉଷାର ଦ୍ୟୋତକ ଅଟେ ।

ଉଷାର ଆଗମନ ବେଳରେ ହୃଦୟର ଅନ୍ତରତମ ପ୍ରଦେଶ ଅର୍ଥାତ୍ ଆନନ୍ଦମୟ କୋଷ ଦିବ୍ୟ ଜ୍ୟୋତିର ସଂସ୍ପର୍ଶ ଲାଭ କରେ । କ୍ରମଶଃ ଦିବ୍ୟାଲୋକ ବହିର୍ମୁଖୀ ହୋଇ ବିଜ୍ଞାନମୟ, ମନୋମୟ, ପ୍ରାଣମୟ ଓ ଅନ୍ନମୟ କୋଷକୁ ରୂପାନ୍ତରିତ କରେ । ମନରୁ ଶଂକା, ସନ୍ଦେହ ଓ ଘୃଣା ଦୂରୀଭୂତ ହୁଏ । କାମକ୍ରୋଧାଦିର ଆବେଗ ନଷ୍ଟ ହୁଏ । ଦେବମାର୍ଗ ପରିଦୃଷ୍ଟ ହୁଏ । ଉପାସକ ମାନସପଟରେ ଏହି ମାର୍ଗରେ ଗତି କରୁ କରୁ ଅନିର୍ବଚନୀୟ ଆନନ୍ଦ ଅନୁଭବ କରେ ।

॥ ମଣ୍ଡଳ ୯, ସୂକ୍ତ ୧୦, ମନ୍ତ୍ର ୭ ॥

## ଇନ୍ଦ୍ର ଓ ଇନ୍ଦ୍ରିୟ

ସମୀଚୀନାସ ଆସତେ ହୋତାରଃ ସପ୍ତଜାମୟଃ।

ପଦମେକସ୍ୟ ପିପ୍ରତଃ ॥

( କାଶ୍ୟପୋଽସିତୋ ଦେବଲୋ ବା । ପବମାନଃ ସୋମଃ । ଗାୟତ୍ରୀ )

**ପଦପାଠ :** ସଂଽଈଚୀନାସଃ । ଆସତେ । ହୋତାରଃ । ସପ୍ତଽଜାମୟଃ । ପଦଂ । ଏକସ୍ୟ । ପିପ୍ରତଃ ॥

**ପଦାର୍ଥ :** (ସପ୍ତ ଜାମୟଃ) ସାତଗୋଟି ଜ୍ଞାନସାଧକ ଇନ୍ଦ୍ରିୟ (ହୋତାରଃ) ହୋତା ବା ଆଦାନପ୍ରଦାନକାରୀ (ଏକସ୍ୟ) ଏକ ସ୍ୱାମୀ ଆତ୍ମାର (ପଦମ୍) ପଦକୁ (ପିପ୍ରତଃ) ରକ୍ଷା କରି (ସମୀଚୀନାସଃ) ଯଥାର୍ଥ ଭାବରେ (ଆସତେ) ରହନ୍ତି ।





॥ ମଣ୍ଡଳ ୯, ସୂକ୍ତ ୧୦, ମନ୍ତ୍ର ୭ ॥

— ଶରୀରରୂପକ ଯଜ୍ଞବେଦୀରେ ବସି ସାତଜଣ ହୋତା ହୋମ କରୁଅଛନ୍ତି । ଏମାନେ ଯଥାକ୍ରମେ ଚକ୍ଷୁ, ନାସିକା, କର୍ଣ୍ଣ, ତ୍ୱକ୍, ଜିହ୍ୱା, ମନ ଓ ବୁଦ୍ଧି । ଯଜ୍ଞରେ ଋଗ୍‌ବେଦର ପ୍ରତିନିଧିଙ୍କୁ 'ହୋତା' କୁହାଯାଏ । ଋଗ୍‌ବେଦ ଜ୍ଞାନକାଣ୍ଡ ନାମରେ ପ୍ରସିଦ୍ଧ । ଚକ୍ଷୁ, ନାସିକା ପ୍ରଭୃତି ପାଞ୍ଚଟି ଜ୍ଞାନେନ୍ଦ୍ରିୟ । ଏଗୁଡ଼ିକର ସଂଚାଳକ ମନ ଓ ବୁଦ୍ଧି । ଏମାନେ ଦେହପାଇଁ ଜ୍ଞାନାହରଣ କରୁଥିବାରୁ ହୋତା ଅଟନ୍ତି । ଏମାନେ ବାହ୍ୟ ଜଗତର ରୂପ ରସାଦି ଜ୍ଞାନକୁ ଆହରଣ କରନ୍ତି । ବ୍ରହ୍ମାଣ୍ଡ ଓ ପିଣ୍ଡ ମଧ୍ୟରେ ସଂପର୍କ ସ୍ଥାପନ କରନ୍ତି । ଆତ୍ମା ନିମନ୍ତେ ଆହୁତି ପ୍ରଦାନ କରନ୍ତି । ଜୀବ ଜଗତର ସଂକୀର୍ଣ୍ଣ ସ୍ୱାର୍ଥରେ ଲିପ୍ତ ନ ରହି ଆତ୍ମକଲ୍ୟାଣ ପାଇଁ ବଳିଦାନ କରନ୍ତି ।

ବେଦରେ ଆତ୍ମାର ଗୋଟିଏ ନାମ 'ଇନ୍ଦ୍ର' କୁହାଯାଇଛି । ଯେଉଁମାନେ ଇନ୍ଦ୍ରଙ୍କ ସହାୟକ, ସେମାନେ 'ଇନ୍ଦ୍ରିୟ' । ଚକ୍ଷୁ ପ୍ରଭୃତି ଅଙ୍ଗଗୁଡ଼ିକ ଆତ୍ମକଲ୍ୟାଣରେ ସହାୟକ ହେଲେ 'ଇନ୍ଦ୍ରିୟ' ପଦବୀ ଗ୍ରହଣ କରନ୍ତି । ଏଗୁଡ଼ିକୁ 'ସମୀଚୀନ' କରିବାପାଇଁ ବେଦମନ୍ତ୍ରରେ ପ୍ରେରଣା ଦିଆଯାଇଛି । ଯଦି ସ୍ୱଭାବରେ ଜିହ୍ୱା ବ୍ୟସନ ଲୋଲୁପ ହେଲେ, ତାହା ସମୀଚୀନ ନ ହୋଇ ପ୍ରତୀଚୀନ ହୁଏ, ଦେହଯଜ୍ଞରେ ହୋତା ନ ହୋଇ ଶତ୍ରୁ ହୁଏ; ଇନ୍ଦ୍ରିୟ ନ ହୋଇ ଗୋଟିଏ ଅଙ୍ଗ ମାତ୍ର ହୋଇ ରହେ ।

॥ ମଣ୍ଡଳ ୫, ସୂକ୍ତ ୮୨, ମନ୍ତ୍ର ୫ ॥

ହେ ପ୍ରେରକ ! ପ୍ରେରଣା ଦିଅ

ବିଶ୍ୱାନି ଦେବ ସବିତ-

ର୍ଦୁରିତାନି ପରା ସୁବ ।

ଯଦ୍ ଭଦ୍ରଂ ତନ୍ନ ଆ ସୁବ ॥

( ଶ୍ୟାବାଶ୍ୱ ଆତ୍ରେୟଃ । ସବିତା । ଗାୟତ୍ରୀ )

ପଦପାଠ: ବିଶ୍ୱାନି । ଦେବ । ସବିତଃ । ଦୁଃଇତାନି । ପରା । ସୁବ । ଯତ୍ । ଭଦ୍ରଂ । ତତ୍ । ନଃ । ଆ । ସୁବ ॥

ପଦାର୍ଥ: ( ସବିତଃ ) ଜଗଦୁତ୍ପାଦକ, ପ୍ରେରକ ! ( ଦେବ ) ଦିବ୍ୟଗୁଣଯୁକ୍ତ, ଦାତାଃ ! (ବିଶ୍ୱାନି ଦୁରିତାନି) ସମସ୍ତ ଦୁରବସ୍ଥା, ବାଧାକୁ (ପରାସୁବ) ଦୂର କରନ୍ତୁ (ଯତ୍) ଯାହା (ଭଦ୍ରଂ) କଲ୍ୟାଣ କାରକ (ତତ୍) ତାହାକୁ (ନଃ) ଆମ୍ଭମାନଙ୍କୁ (ଆ ସୁବ) ପ୍ରଦାନ କରନ୍ତୁ ।





॥ ମଣ୍ଡଳ ୫, ସୂକ୍ତ ୮୨, ମନ୍ତ୍ର ୫ ॥

—'ଦୁରିତ'ରୁ ରକ୍ଷା ପାଇବା ଓ 'ଭଦ୍ରତା'କୁ ଲାଭ କରିବା ପାଇଁ 'ସବିତା'ଙ୍କୁ ପ୍ରାର୍ଥନା କରାଯାଇଛି । ସ୍ଥୂଳ ଅର୍ଥରେ ସୂର୍ଯ୍ୟଙ୍କୁ ସବିତା କୁହାଯାଏ । ରାତି ଶେଷ ହେବା ପରେ ସୂର୍ଯ୍ୟକିରଣ ପୃଥିବୀରେ ନବଜୀବନ ସଂଚାର କରେ । ସୂର୍ଯ୍ୟ ସ୍ୱୟଂ କୌଣସି ପଦାର୍ଥ ଉତ୍ପନ୍ନ କରେ ନାହିଁ, ପରନ୍ତୁ ଜୀବମାନଙ୍କ ସୁପ୍ତ ଶକ୍ତିକୁ ପୁନଃ ଜାଗ୍ରତ କରେ । ମନ୍ତ୍ରରେ ପରମାତ୍ମାଙ୍କୁ ସବିତା କୁହାଯାଇଅଛି । ସେ ଅନ୍ତର୍ଯ୍ୟାମୀ ପ୍ରେରକ ଅଟନ୍ତି । ସେ ଜୀବକୁ ବଳାତ୍କାର ଭାବରେ ପ୍ରେରଣା ଦିଅନ୍ତି ନାହିଁ । ତାହା ହୋଇଥିଲେ ତାହାଙ୍କ ଆଦେଶକୁ ଉଲ୍ଲଂଘନ କରିବା ପାଇଁ କାହାର ସାମର୍ଥ୍ୟ ନ ଥାନ୍ତା । ବୈଦିକ ଦୃଷ୍ଟିରେ ପ୍ରାର୍ଥୀ ଭିକ୍ଷୁକ ନୁହେ । ସେ ବିନା ପରିଶ୍ରମରେ କୌଣସି ବସ୍ତୁ ଯାଚନା କରେ ନାହିଁ । ସେ ପ୍ରଭୁଙ୍କ ଠାରୁ ପ୍ରେରଣା ଟିକକ ଚାହେଁ—ସେତକ ପାଇଲେ ସେ ଅଗ୍ରସର ହେବ ।

ଜୀବନର ଲକ୍ଷ୍ୟ ଏକ, କଲ୍ୟାଣମାର୍ଗ ଏକ । ପରନ୍ତୁ ବିଘ୍ନ ବା ଦୁରିତ ଅନେକ । ଗୋଟିଏ ମାତ୍ର ବିଘ୍ନ ଅର୍ଥାତ୍ ଦୋଷ ଦୁର୍ବଳତା ଫଳରେ ସମସ୍ତ ଜୀବନର ଯୋଜନା ବିଫଳ ହୋଇପାରେ । ପ୍ରାର୍ଥୀ ବିଘ୍ନର ସମ୍ମୁଖୀନ ହେବା ପାଇଁ ଧୈର୍ଯ୍ୟ ମାଗୁଅଛି । ଭଦ୍ର ବା କଲ୍ୟାଣକାରକ କର୍ମରେ ପ୍ରେରଣା ପାଇଁ ପ୍ରଭୁଙ୍କୁ ପ୍ରାର୍ଥନା କରୁଅଛି !

॥ ମଣ୍ଡଳ ୩, ସୂକ୍ତ ୫୩, ମନ୍ତ୍ର ୧୮ ॥

ବଳଦାତା ! ବଳ ଦିଅ

ବଳଂ ଧେହି ତନୂଷୁ ନୋ

ବଳମିନ୍ଦ୍ରାନଡୁତ୍ସୁ ନଃ ।

ବଳଂ ତୋକାୟ ତନୟାୟ ଜୀବସେ

ତ୍ୱଂ ହି ବଳଦା ଅସି ॥

( ଗାଥିନୋ ବିଶ୍ୱାମିତ୍ରଃ । [illegible] । ବୃହତୀ । )

ପଦପାଠ : ବଳମ୍ । ଧେହି । ତନୂଷୁ । ନଃ । ବଳମ୍ । ଇନ୍ଦ୍ର । ଅନଡୁତ୍‌ସୁ । ନଃ । ବଳମ୍ । ତୋକାୟ । ତନୟାୟ । ଜୀବସେ । ତ୍ୱମ୍ । ହି । ବଳଃଦା । ଅସି ॥

ପଦାର୍ଥ : ( ଇନ୍ଦ୍ର ) ବଳଶାଳି ! ( ନଃ ତନୂଷୁ ) ଆମ୍ଭମାନଙ୍କର ଦେହରେ ( ବଳଂ ଧେହି ) ବଳ ଧାରଣ କରାଅ ( ନଃ ) ଆମ୍ଭମାନଙ୍କର ( ଅନଡୁତ୍ସୁ ) ଅଶ୍ୱାଦି ପ୍ରାଣୀ ବର୍ଗରେ ( ବଳଂ ) ବଳ ଧାରଣ କରାଅ (ତୋକାୟ) ଶିଶୁଙ୍କ ପାଇଁ ( ତନୟାୟ ) ପୁତ୍ର, ପୌତ୍ରାଦିଙ୍କ ପାଇଁ ( ଜୀବସେ ) ଜୀବନ ପାଇଁ (ବଳଂ) ବଳ ଦାନ କର, ଯେହେତୁ (ତ୍ୱଂ ହି) କେବଳ ତୁମ୍ଭେ (ବଳଦା ଅସି) ବଳଦାତା ଅଛ ।



॥ ମଣ୍ଡଳ ୩, ସୂକ୍ତ ୫୩, ମନ୍ତ୍ର ୧୮ ॥

—ସୂର୍ଯ୍ୟ, ବାୟୁ, ଅଗ୍ନି, ଜଳ ପ୍ରଭୃତି ଦ୍ରବ୍ୟ ଓ ପ୍ରକାଶକ ପଦାର୍ଥ ଅଛନ୍ତି । ଏମାନଙ୍କର ଶକ୍ତି ଓ ତେଜ ମୂଳରେ ପରମେଶ୍ୱର ବିଦ୍ୟମାନ । ଏସମସ୍ତଙ୍କ ବଳର କୌଣସି ନା କୌଣସି ସୀମା ରହିଛି । ପରନ୍ତୁ ପରମାତ୍ମା ଅନନ୍ତବଳଯୁକ୍ତ । ସେ ଅଖିଳ ବଳର ଆଧାର ଓ ବଳଦାତା ଅଟନ୍ତି । ସୃଷ୍ଟି କ୍ରମରେ ଯେଉଁ ଶୃଙ୍ଖଳା ଦୃଷ୍ଟିଗୋଚର ହୁଏ, ତାହା ପ୍ରଭୁଙ୍କ ଐଶ୍ୱର୍ଯ୍ୟମୟ ବଳର ଦ୍ୟୋତକ ଅଟେ । ଏହି ଶୃଙ୍ଖଳା-ଜ୍ଞାନ ଗ୍ରହଣ କରି ମନୁଷ୍ୟ ବଳଶାଳୀ ହୁଏ । ଶୃଙ୍ଖଳାହୀନ ବଳ ଅମଙ୍ଗଳ ଓ ଦୁର୍ବଳତାର କାରଣ ହୁଏ ।

ହେ ବଳଦାତା ! ଆମ୍ଭମାନଙ୍କ ଠାରେ ସାତ୍ତ୍ୱିକ ବଳ ପ୍ରଦାନ କର । ଏହା ଅନ୍ୟର ସଂହାରକ ନ ହୋଇ ପୋଷକ ହେଉ । ଆମ୍ଭେମାନେ ଯେଉଁ ବାହାନ ଉପରେ ନିର୍ଭର କରୁଁ, ସେ ସମସ୍ତେ ବଳବାନ ହୁଅନ୍ତୁ, ଯେପରି ଆମ୍ଭେମାନେ ଲକ୍ଷ୍ୟସ୍ଥଳରେ ପହଞ୍ଚିଯିବୁ । ଆମ୍ଭମାନଙ୍କ ଉତ୍ତରାଧିକାରୀ ବଳଶାଳୀ ହୁଅନ୍ତୁ; ବଳିଷ୍ଠ ହୋଇ ଅନ୍ୟମାନଙ୍କୁ ବଳଦାନ କରନ୍ତୁ । ଶିଶୁମାନଙ୍କ ସ୍ୱାସ୍ଥ୍ୟ ଓ ବଳବୃଦ୍ଧି ନିମନ୍ତେ ସମ୍ପ୍ରରେ ବହୁବିଧ ଉଦ୍ୟମ ହେଉ । ଜୀବନୀ ଶକ୍ତିର ବୃଦ୍ଧି ପାଇଁ ଆମ୍ଭମାନଙ୍କ ପ୍ରାଣ ଓ ମନ ଦୃଢ଼ ହେଉ । ବଳହୀନ ଆତ୍ମଦର୍ଶନ ଲାଭ କରେ ନାହିଁ । ହେ ମହାବଳ ! ବଳ ଦିଅ ।

॥ ମଣ୍ଡଳ ୭, ସୂକ୍ତ ୩୨, ମନ୍ତ୍ର ୨୬ ॥

ପିତା ପୁତ୍ର

ଇନ୍ଦ୍ର କ୍ରତୁଂ ନ ଆ ଭର

ପିତା ପୁତ୍ରେଭ୍ୟୋ ଯଥା ।

ଶିକ୍ଷା ଣୋ ଅସ୍ମିନ୍ ପୁରୁହୂତ ଯାମନି

ଜୀବା ଜ୍ୟୋତିରଶୀମହି ॥

( ବଶିଷ୍ଠ ଶକ୍ତି । ଇନ୍ଦ୍ରଃ । ବୃହତୀପ୍ରଗାଥ । )

ପଦପାଠ : ଇନ୍ଦ୍ର । କ୍ରତୁଂ । ନଃ । ଆ । ଭର ପିତା । ପୁତ୍ରେଭ୍ୟଃ । ଯଥା । ଶିକ୍ଷ । ନଃ । ଅସ୍ମିନ୍ । ପୁରୁହୂତ । ଯାମନି । ଜୀବାଃ । ଜ୍ୟୋତିଃ । ଅଶୀମହି ॥

ପଦାର୍ଥ : ( ପୁରୁହୂତ ଇନ୍ଦ୍ର ) ଉପାସନୀୟ ପରମାତ୍ମନ୍ ! ( ନଃ କ୍ରତୁଂ ) ଆମ୍ଭମାନଙ୍କର ଯଜ୍ଞ ବା କର୍ତ୍ତବ୍ୟକର୍ମକୁ ( ଆଭର ) ସାଧନଯୁକ୍ତ କର (ପିତା ପୁତ୍ରେଭ୍ୟଃ ଯଥା) ଯେପରି ପିତା ନିଜର ସନ୍ତାନ ପାଇଁ ( ନଃ ଶିକ୍ଷ ) ଆମ୍ଭମାନଙ୍କୁ ଶିକ୍ଷାଦାନ କରନ୍ତୁ ( ଅସ୍ମିନ୍ ଯାମନି ) ଏହି ଅବସରରେ ( ଜୀବାଃ ) ଆମ୍ଭେ ଜୀବଗଣ ( ଜ୍ୟୋତିଃ ଅଶୀମହି ) ପରମ ପ୍ରକାଶ ପ୍ରାପ୍ତ କରୁଅଛୁ ।





॥ ମଣ୍ଡଳ ୭, ସୂକ୍ତ ୩୨, ମନ୍ତ୍ର ୨୬ ॥

—ପିତା-ପୁତ୍ର ଦୃଷ୍ଟାନ୍ତ ଦେଇ ଏଠାରେ ପରମାତ୍ମାଙ୍କୁ ଦୁଇଟି ପଦାର୍ଥ ଯାଚନା କରାଯାଉଅଛି । ଏହି ଦୁଇଟି ଯଥାକ୍ରମେ ଯଜ୍ଞସାମଗ୍ରୀ ଓ ଯଜ୍ଞଶିକ୍ଷା । ଯଜ୍ଞର ଅର୍ଥ କଲ୍ୟାଣ । ସୃଷ୍ଟିର ପ୍ରତ୍ୟେକ ବସ୍ତୁ ଗୋଟିଏ ଗୋଟିଏ ଯଜ୍ଞ-ସାମଗ୍ରୀ । ଏଗୁଡ଼ିକର ବ୍ୟବହାର ପାଇଁ ସତ୍ତ୍ୱ ଶିକ୍ଷା ଆବଶ୍ୟକ । କୁଶିକ୍ଷା-ଫଳରେ କଲ୍ୟାଣକାରକ ବସ୍ତୁ ମଧ୍ୟ ଅନିଷ୍ଟ ସାଧନ କରେ । ଗଛରେ ଫଳ ଫଳେ । କେଉଁ ଫଳ କେତେବେଳେ ଖାଇବା ହିତକାରକ, ସେଥିପାଇଁ ଜ୍ଞାନର ପ୍ରୟୋଜନ ଥାଏ । ହାଣ୍ଡିଟିଏ ତିଆରି କରିବା ପାଇଁ ମାଟି ସଙ୍ଗେ ସଙ୍ଗେ ତାକୁ ତିଆରି କରିବାର କୌଶଳ ମଧ୍ୟ ଆବଶ୍ୟକ ।

'ଶିକ୍ଷାର' ଅର୍ଥ ଶକ୍ତ ଲାଭ କରିବାର ଇଚ୍ଛା । ପିତା ପୁତ୍ରକୁ ଶକ୍ତିସଂପନ୍ନ କରିବା ପାଇଁ ଶିକ୍ଷାଦାନ କରନ୍ତି । ପୁତ୍ରପାଇଁ ଧନଧାନ୍ୟାଦି ସାଧନ ସଂଗ୍ରହ କରି ରଖନ୍ତି । ସେଗୁଡ଼ିକର ସଦୁପଯୋଗ କରିବା କୌଶଳ ମଧ୍ୟ ଶିଖାଇ ଦିଅନ୍ତି । କେବଳ ସାଧନାର ଭଣ୍ଡାର ରଖି ଶିକ୍ଷାଦାନ ନ ଦେବା ଦ୍ୱାରା ପୁତ୍ରର କଲ୍ୟାଣ ସାଧିତ ହୁଏ ନାହିଁ ।

ହେ ଇନ୍ଦ୍ର ! ଆପଣଙ୍କ ଐଶ୍ୱର୍ଯ୍ୟ ମଧ୍ୟରେ ଯଜ୍ଞସାମଗ୍ରୀ ବହୁ ରତ୍ନ ହୋଇପଡ଼ିଛି । ସେଗୁଡ଼ିକରୁ କଲ୍ୟାଣ ସଂଗ୍ରହ କରିବା ପାଇଁ ଆମ୍ଭମାନଙ୍କୁ ଜ୍ଞାନ ପ୍ରଦାନ କରନ୍ତୁ ।

॥ ମଣ୍ଡଳ ୧, ସୂକ୍ତ ୧୩, ମନ୍ତ୍ର ୯ ॥

ତିନି ଦେବୀ

ଇଳା ସରସ୍ୱତୀ ମହୀ

ତିସ୍ରୋ ଦେବୀର୍ମୟୋଭୁବଃ ।

ବର୍ହିଃ ସୀଦନ୍ତ୍ୱସ୍ରିଧଃ ॥

( ମେଧାତିଥିଃ କାଣ୍ୱଃ । ତିସ୍ରୋ ଦେବ୍ୟଃ । ଗାୟତ୍ରୀ । )

ପଦପାଠ : ଇଳା । ସରସ୍ୱତୀ । ମହୀ । ତିସ୍ରଃ । ଦେବୀଃ । ମୟଃଽଭୁବଃ । ବର୍ହିଃ । ସୀଦନ୍ତୁ । ଅସ୍ରିଧଃ ॥

ପଦାର୍ଥ : ( ଇଳା ) ବାଣୀ ( ସରସ୍ୱତୀ ) ବିଦ୍ୟା, ସଂସ୍କୃତି ( ମହୀ ) ଭୂମି ( ମୟୋଭୁବଃ ) କଲ୍ୟାଣକାରିଣୀ ( ଅସ୍ରିଧଃ ) ଅହିଂସମୟୀ, ଆଦରଣୀୟା (ତିସ୍ରଃ ଦେବୀଃ) ଏହି ତିନି ଦେବୀ ( ବର୍ହିଃ ) ଆମ୍ଭମାନଙ୍କର ଅନ୍ତଃକରଣରେ (ସୀଦନ୍ତୁ) ବିରାଜମାନ ହୁଅନ୍ତୁ ।



॥ ମଣ୍ଡଳ ୧, ସୂକ୍ତ ୧୩, ମନ୍ତ୍ର ୯ ॥

—ବାଣୀ, ବିଦ୍ୟା ଓ ଭୂମି—ଏହି ତିନି ପଦାର୍ଥର ଆକର୍ଷଣକୁ ଅସ୍ୱୀକାର କରିହୁଏ ନାହିଁ । ଏଗୁଡ଼ିକ ପ୍ରତି ମନୁଷ୍ୟର ମମତା ଅତ୍ୟନ୍ତ ଗୂଢ଼ । ଏକ ଭାଷାଭାଷୀ, ଏକପ୍ରକାର ବସ୍ତ୍ର-ଆହାର-ବ୍ୟବହାର ଅର୍ଥାତ୍ ସମାନ ସଂସ୍କୃତି-ସଂପନ୍ନ ତଥା ଏକଦେଶରେ ନିବାସ କରୁଥିବା ଲୋକେ ସହଜରେ ଏକତାବଦ୍ଧ ହୁଅନ୍ତି ।

ପ୍ରତ୍ୟେକ ନାଗରିକ ନିଜର ମାତୃଭାଷା, ମାତୃସଂସ୍କୃତି ଓ ମାତୃଭୂମି ପ୍ରତି ସମ୍ମାନପ୍ରଦର୍ଶନ କରି ସେମାନଙ୍କର ବିକାଶ ପାଇଁ ଅନୁକୂଳ ଆଚରଣ କରିବା ବିଧେୟ । ଅନ୍ୟମାନଙ୍କର ଭାଷା, ସଂସ୍କୃତି ଓ ସ୍ୱାଧୀନତାକୁ ବିପନ୍ନ କରି ନିଜେ ସଂପନ୍ନ ହେବାର କଳ୍ପନା ଦୋଷାବହ ।

'ଇଡ଼ା' ବାଣୀର ବ୍ୟବହାର; 'ସରସ୍ୱତୀ' ସାଂସ୍କୃତିକ ଚେତନା ଏବଂ 'ମହୀ' ସଂସ୍କୃତିର ସମନ୍ୱିତ ଓ ସ୍ଥିତି ଅଟେ । ଇଡ଼ା, ସରସ୍ୱତୀ ଓ ମହୀ ଯଥାକ୍ରମେ ମାନବବାଣୀ, ମାନବସଂସ୍କୃତି ଓ ଭୂମିମାତାର ପ୍ରତୀକ । ଏହି ତିନି ଦିବ୍ୟଭାବନା ଅନ୍ତଃକରଣରେ ବିରାଜମାନ ରହନ୍ତୁ—ଏଥିପାଇଁ ବେଦମନ୍ତ୍ରରେ ପ୍ରାର୍ଥନା କରାଯାଇଅଛି ।

॥ ମଣ୍ଡଳ ୧୦, ସୂକ୍ତ ୧୭୩, ମନ୍ତ୍ର ୧ ॥

ରାଷ୍ଟ୍ରପତିଙ୍କ ଶପଥପାଠ

ଆ ତ୍ୱାହାର୍ଷମନ୍ତରେଧି

ଧ୍ରୁବସ୍ତିଷ୍ଠାବିଚାଚଳିଃ ।

ବିଶସ୍ତ୍ୱା ସର୍ବା ବାଞ୍ଛନ୍ତୁ

ମା ତ୍ୱଦ୍ରାଷ୍ଟ୍ରମଧି ଭ୍ରଶତ୍ ।

( ଧ୍ରୁବଃ । ରାଜା । ଅନୁଷ୍ଟୁପ୍ । )

ପଦପାଠ : ଆ । ତ୍ୱା । ଅହାର୍ଷମ୍ । ଅନ୍ତଃ । ଏଧି । ଧ୍ରୁବଃ । ତିଷ୍ଠ । ଅବିଚାଚଳିଃ । ବିଶଃ । ତ୍ୱା । ସର୍ବାଃ । ବାଞ୍ଛନ୍ତୁ । ମା । ତ୍ୱତ୍ । ରାଷ୍ଟ୍ରମ୍ । ଅଧି । ଭ୍ରଶତ୍ ॥

ପଦାର୍ଥ : ହେ ରାଷ୍ଟ୍ରପତେ ! ( ତ୍ୱା ) ତୁମ୍ଭକୁ ( ଆ ଅହାର୍ଷମ୍ ) ସର୍ବୋଚ୍ଚ ଆସନକୁ ନେଇଛି ( ଅନ୍ତଃ ଏଧି ) ଜନସାଧାରଣ ମଧ୍ୟରେ ରହ । ( ଧ୍ରୁବଃ ) ରାଷ୍ଟ୍ରର ଧାରକ ( ଅବିଚାଚଳିଃ ) ଅବିଚଳିତ ( ତିଷ୍ଠ ) ରହ । (ତ୍ୱା) ତୁମ୍ଭକୁ (ସର୍ବାଃ ବିଶଃ) ସମସ୍ତ ଜନତା (ବାଞ୍ଛନ୍ତୁ) ଚାହାନ୍ତୁ (ତ୍ୱତ୍) ତୁମ୍ଭ ଠାରୁ (ରାଷ୍ଟ୍ରଂ) ରାଷ୍ଟ୍ର (ମା ଅଧି ଭ୍ରଶତ୍) ଅଧିଚ୍ୟୁତ ନ ହେଉ ।





॥ ମଣ୍ଡଳ ୧୦, ସୂକ୍ତ ୧୭୩, ମନ୍ତ୍ର ୧ ॥

—ବେଦମନ୍ତ୍ରରୁ କେତୋଟି ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ସିଦ୍ଧାନ୍ତ ପ୍ରକଟିତ ହୋଇଛି । ଆସନଗ୍ରହଣ ସମୟରେ ରାଷ୍ଟ୍ରନାୟକ ଯେଉଁ ସବୁ ଶପଥ ପାଠ କରନ୍ତି, ସେ ସବୁର ଅନ୍ତର୍ନିହିତ ଉଦ୍ଦେଶ୍ୟ ଏଠାରେ ଆଲୋଚିତ ହୋଇଛି । ମନ୍ତ୍ରର ଶେଷାର୍ଦ୍ଧରେ ସ୍ପଷ୍ଟ ଭାବରେ କୁହାଯାଇଛି ଯେ ଜନସାଧାରଣ ଇଚ୍ଛା କରୁଥିବା ପର୍ଯ୍ୟନ୍ତ ଶାସକ ନିଜ ପଦବୀରେ ଅଧିଷ୍ଠିତ ହୋଇ ରହିବେ, ଅନ୍ୟଥା ନୁହେଁ ।

ଶାସକ ଗୋଷ୍ଠୀବାଦୀ ନ ହୋଇ ସମସ୍ତଙ୍କ କଲ୍ୟାଣକାମୀ ଓ ସୁସ୍ୱଭାବ ହେବେ । କୁହାଯାଇଛି ସେ ସେ ଜନତାର ଅନ୍ତଃସ୍ଥଳରେ ବାସ କରିବେ । ନିଜେ ଦେଶବାସୀଙ୍କ ସୁଖଦୁଃଖରେ ସାଥୀ ହେବେ । ଉଦ୍ଧତ ଓ ବିଳାସୀ ହୋଇ କେବେହେଲେ ଜନତାଠାରୁ ବିଚ୍ଛିନ୍ନ ହେବେ ନାହିଁ । ସମ୍ପଦବିପଦ, ସୁଖ-ଦୁଃଖ ସବୁ ସମୟରେ କର୍ତ୍ତବ୍ୟପଥରେ ଅବିଚଳ ରହିବେ । ଘାତ-ପ୍ରତିଘାତ ଦ୍ୱାରା କଦାପି ବିଚଳିତ ହେବେ ନାହିଁ । ଶାସକ ଆଳସ୍ୟ ଓ ପ୍ରଲୋଭନରେ ଆକ୍ରାନ୍ତ ହେଲେ, ଅନ୍ତର୍ବିପ୍ଳବ ଓ ଶତ୍ରୁ ଆକ୍ରମଣ ଘଟି ରାଷ୍ଟ୍ର ଧ୍ୱଂସ ପାଏ । ଏଣୁ କୁହାଯାଇଛି—'ତୁମ ଦକ୍ଷ ହସ୍ତରେ ରାଷ୍ଟ୍ର ନିରାପଦ ରହୁ, ଭ୍ରଷ୍ଟ ନ ହେଉ, ପରାଧୀନ ନ ହେଉ ।'

॥ ମଣ୍ଡଳ ୧, ସୂକ୍ତ ୮୦, ମନ୍ତ୍ର ୯ ॥

ସ୍ୱରାଜ୍ୟର ସଂବୃଦ୍ଧି

ସହସ୍ରଂ ସାକମର୍ଚତ

ପରି ଷ୍ଟୋଭତ ବିଂଶତିଃ ।

ଶତୈନମନ୍ୱନୋନବୁ

ରିନ୍ଦ୍ରାୟ ବ୍ରହ୍ମୋଦ୍ୟତ

ମର୍ଚନ୍ନନୁ ସ୍ୱରାଜ୍ୟମ୍ ।।

( ଗୋତମୋ ରାହୂଗଣଃ । ଇନ୍ଦ୍ରଃ । ପଂକ୍ତିଃ । )

ପଦପାଠ : ସହସ୍ରମ୍ । ସାକମ୍ । ଅର୍ଚତ । ପରି । ସ୍ତୋଭତ । ବିଂଶତିଃ । ଶତା । ଏନମ୍ । ଅନୁ । ଅନୋନବୁଃ । ଇନ୍ଦ୍ରାୟ । ବ୍ରହ୍ମ । ଉତ୍‌ଯତମ୍ । ଅର୍ଚନ୍ । ଅନୁ । ସ୍ୱଽରାଜ୍ୟମ୍ ।।

ପଦାର୍ଥ : ( ସହସ୍ରମ୍ ) ସହସ୍ର ନାଗରିକ (ସାକଂ) ଏକାଠି ମିଳି (ଅର୍ଚତ) ସେବା କର । (ବିଂଶତିଃ) ବିଂଶ ସଙ୍ଖ୍ୟାତ୍ମକ ମିଳି (ପରି ସ୍ତୋଭତ ) ଚତୁର୍ଦ୍ଦିଗରେ ସ୍ତୁତି କର । ( ବ୍ରହ୍ମୋଦ୍ୟତମ୍ ) ମହତ୍ ଉଦ୍ୟମଶୀଳ (ସ୍ୱରାଜମ୍) ସ୍ୱରାଜ୍ୟକୁ (ଅନୁ ଅର୍ଚନ୍) ବର୍ଦ୍ଧନ କର (ଶତା) ଶତ (ଇନ୍ଦ୍ରାୟ) ଐଶ୍ୱର୍ଯ୍ୟ ପାଇଁ ( ଏନମ୍ ) ଏହାକୁ ( ଅନୁ ଅନୋନବୁଃ ) ଆଦର ସହକାର କର ।





॥ ମଣ୍ଡଳ ୧, ସୂକ୍ତ ୮୦, ମନ୍ତ୍ର ୯ ॥

—ବେଦ ସ୍ୱରାଜ୍ୟର ପୃଷ୍ଠପୋଷକ । ଋଗ୍ବେଦ ପ୍ରଥମ ମଣ୍ଡଳର ଏକ ସଂପୂର୍ଣ୍ଣ ସୂକ୍ତରେ ସ୍ୱରାଜ୍ୟ ବିଷୟ ଉପସ୍ଥାପିତ ହୋଇଛି । ପ୍ରସ୍ତୁତ ମନ୍ତ୍ର ସେହି ସୂକ୍ତରୁ ଗୃହୀତ । ସ୍ୱରାଜ୍ୟ ଶବ୍ଦର ଅର୍ଥ 'ନିଜର ତେଜ' । ବିଦ୍ୟୁତ୍, ସୂର୍ଯ୍ୟାଦି ଦ୍ରବ୍ୟ ପଦାର୍ଥମାନଙ୍କର ନିଜ ନିଜର ତେଜ ଅଛି । ମାନବାତ୍ମାର ତେଜ ସେ ସମସ୍ତ ଠାରୁ ଅଦ୍ଭୁତ ଶାନ୍ତିମୟ । ମାନବର ତେଜ ତାହାର ସ୍ୱରାଜ୍ୟ । ଉପାସନା ଓ ପୁରୁଷାର୍ଥ ଦ୍ୱାରା ଏହି ବାଞ୍ଛିତ ସ୍ୱରାଜ୍ୟ ବୃଦ୍ଧି ପାଏ ।

ସମାଜର ସଂକଳ୍ପ ଓ ଶକ୍ତିକୁ ସଂଗଠିତ କରିବା ପାଇଁ ସାମୂହିକ ସ୍ୱରାଜ୍ୟ ଆବଶ୍ୟକ । ରାଷ୍ଟ୍ରବାସୀ ପରସ୍ପରର ତେଜ ବା ସଦ୍‌ଗୁଣ ଗ୍ରହଣ କରି ସାମୂହିକ ସ୍ୱରାଜ୍ୟ ସ୍ଥାପନ କରନ୍ତୁ । ପରସ୍ପର ପ୍ରୀତିସଂବାଦ, ହୃଦୟର ଏକମସ୍ତତା ଓ ସମବେତ ପ୍ରାର୍ଥନା ଦ୍ୱାରା ସ୍ୱରାଜ୍ୟ ବୃଦ୍ଧିଲାଭ କରେ । ସାର୍ବଜନୀନ ସଂଧ୍ୟା-ଉପାସନା-ମନ୍ଦିର, ପାଠଶାଳା, ଶସ୍ୟକ୍ଷେତ୍ର, ଯୁଦ୍ଧ-କ୍ଷେତ୍ର ସର୍ବତ୍ର ରାଷ୍ଟ୍ରବାସୀ ସାମୂହିକ ଭାବରେ ପ୍ରାର୍ଥନା ଓ ପୁରୁଷାର୍ଥ କରିବା ବିଧେୟ । ମନ୍ତ୍ରରେ ସ୍ୱରାଜ୍ୟର ଗୋଟିଏ ବିଶେଷଣ ହେଉଛି 'ବ୍ରହ୍ମୋଦ୍ୟତମ୍' ଅର୍ଥାତ୍ ମହତ୍ କର୍ମରେ ଉଦ୍‌ଯୋଗୀ । ତୁଚ୍ଛ ଓ ସଂକୀର୍ଣ୍ଣ କର୍ମରେ ଲିପ୍ତ ରହିବା ଦ୍ୱାରା ସ୍ୱରାଜ୍ୟ କ୍ଷୀଣ ହେବ । କ୍ଷୁଦ୍ର ବିଷୟରେ ଆତ୍ମସଂତୋଷ ଲାଭ କଲେ ସ୍ୱରାଜ୍ୟ ବାଧାପ୍ରାପ୍ତ ହେବ । ସ୍ୱରାଜ୍ୟପ୍ରେମୀ ଶତ ଐଶ୍ୱର୍ଯ୍ୟ ପାଇଁ ଉଦ୍ୟମଶୀଳ ହେବା ଉଚିତ ।

॥ ମଣ୍ଡଳ ୮, ସୂକ୍ତ ୬୦, ମନ୍ତ୍ର ୧୦ ॥

## ଆଦର୍ଶ ନେତା

ମା ନୋ ରକ୍ଷ ଆ ବେଶୀଦାଘୃଣୀବସୋ

ମା ଯାତୁର୍ଯାତୁମାବତାମ୍ ।

ପରୋଗବ୍ୟୂତ୍ୟନିରାମପ କ୍ଷୁଧ

ମଗ୍ନେ ସେଧ ରକ୍ଷସ୍ୱିନଃ ॥

( ଭର୍ଗଃ ପ୍ରାଗାଥଃ । ଅଗ୍ନିଃ । ପଂକ୍ତିଃ । )

ପଦପାଠ : ମା । ନଃ । ରକ୍ଷଃ । ଆ । ବେଶୀତ୍ । ଆଘୃଣୀବସୋ । ମା । ଯାତୁଃ । ଯାତୁମାବତାମ୍ । ପରଃଗବ୍ୟୂତି । ଅନିରାମ୍ । ଅପ । କ୍ଷୁଧମ୍ । ଅଗ୍ନେ । ସେଧ । ରକ୍ଷସ୍ୱିନଃ ॥

ପଦାର୍ଥ : (ବସୋ) ହେ ରାଷ୍ଟ୍ରସଂସ୍ଥାପକ ! (ଆଘୃଣୀ ଅଗ୍ନେ) ହେ ଦୀପ୍ତିମାନ୍ ନେତା ! (ନଃ) ଆମ୍ଭମାନଙ୍କର (ରକ୍ଷଃ) ଉପଦ୍ରବୀ ( ମା ଆବେଶୀତ୍ ) ପ୍ରବେଶ କରନ୍ତୁ ନାହିଁ । (ଯାତୁମାବତାମ୍ ) ରୋଗ କାରଣରୁ (ଯାତୁଃ) ପୀଡ଼ା (ମା) ପ୍ରବେଶ ନ କରୁ ( ଅନିରାମ୍ ) ଦୁର୍ବଳତା, ଦାରିଦ୍ର୍ୟ ( କ୍ଷୁଧମ୍ ) ଦୁର୍ଭିକ୍ଷ ( ରକ୍ଷସ୍ୱିନଃ ) ବନ୍ଧୁଃଶତ୍ରୁଙ୍କୁ ( ପରଃଗବ୍ୟୂତି ) ବହୁ ଦୂରରୁ ( ଅପ ସେଧ ) ପରାଭବ କରି ପଠାଅ ।





॥ ମଣ୍ଡଳ ୮, ସୂକ୍ତ ୬୦, ମନ୍ତ୍ର ୧୦ ॥

—ଏଠାରେ ରାଷ୍ଟ୍ରନେତାମାନଙ୍କର ମୁଖ୍ୟ କର୍ତ୍ତବ୍ୟଗୁଡ଼ିକ ବର୍ଣ୍ଣନା କରାଯାଇଛି । ନେତାଙ୍କୁ ଅଗ୍ନି ବା ଅଗ୍ରଣୀ କୁହାଯାଇଛି ।

ନେତା ରାଷ୍ଟ୍ରମଧ୍ୟରେ ଥିବା ରାକ୍ଷସ ବା ଉପଦ୍ରବୀମାନଙ୍କୁ ଦମନ କରି ଆଭ୍ୟନ୍ତରୀଣ ଶାନ୍ତି ପ୍ରତିଷ୍ଠା କରନ୍ତୁ । ଯଜ୍ଞ ବା ସମାଜସେବାରେ ପ୍ରତିବନ୍ଧକ ସୃଷ୍ଟି କରୁଥିବା ବ୍ୟକ୍ତିଙ୍କୁ ବେଦରେ ରାକ୍ଷସ କୁହାଯାଇଛି । ଏଭଳି ଉପଦ୍ରବୀ ରାକ୍ଷସଙ୍କ ସଂଖ୍ୟା ବୃଦ୍ଧି ପାଇଲେ ଲୋକକଲ୍ୟାଣ କାର୍ଯ୍ୟ ବାଧାପ୍ରାପ୍ତ ହୁଏ ।

ରାଷ୍ଟ୍ରନେତା ଦେଶବାସୀଙ୍କୁ ରୋଗପୀଡ଼ାରୁ ରକ୍ଷା କରନ୍ତୁ । ଦେହର ରୋଗଦ୍ୱାରା ମନର ବଳ ଓ ଉତ୍ସାହ ନଷ୍ଟ ହୁଏ । ସୁସ୍ଥ ନାଗରିକମାନେ ହିଁ ସମୃଦ୍ଧିଶାଳୀ ରାଷ୍ଟ୍ର ଗଠନ କରି ପାରନ୍ତି ।

ରୋଗନାଶ ସଙ୍ଗେ ସଙ୍ଗେ ବଳବର୍ଦ୍ଧନ ଆବଶ୍ୟକ । ଏଣୁ ଦେଶର ବିଭିନ୍ନ ସ୍ଥଳରେ ବ୍ରହ୍ମଚର୍ଯ୍ୟ, ପ୍ରାଣାୟାମ, ବ୍ୟାୟାମ ପ୍ରଭୃତି ଶିକ୍ଷାଦାନର ସୁବ୍ୟବସ୍ଥା ହେଉ । ରାଷ୍ଟ୍ରନେତା ରାଷ୍ଟ୍ରବାସୀଙ୍କ ଶ୍ରଦ୍ଧା, ସଂକଳ୍ପ ଓ ଉତ୍ସାହବୃଦ୍ଧି ପାଇଁ ଉଦ୍ୟମ କରନ୍ତୁ ।

ରାଷ୍ଟ୍ରବାସୀଙ୍କ ଜୀବନଧାରଣ ପାଇଁ ଆବଶ୍ୟକ ହେଉଥିବା ଖାଦ୍ୟସାମଗ୍ରୀ ପ୍ରଚୁର ପରିମାଣରେ ଉପଲବ୍ଧ ହେଉ । ଦେଶରୁ ଅଭାବ ଦୂର ହେଉ । ସମାଜସେବୀ ବ୍ୟକ୍ତି ଓ ସାର୍ବଜନୀନ ଅନୁଷ୍ଠାନଗୁଡ଼ିକ ରାଷ୍ଟ୍ରନେତାଙ୍କ ପୃଷ୍ଠପୋଷକତା ଲାଭ କରନ୍ତୁ ।

॥ ମଣ୍ଡଳ ୫, ସୂକ୍ତ ୨୯, ମନ୍ତ୍ର ୧୦ ॥

ଶାସକର ଦୁଇଟି ଦୃଷ୍ଟି

ପ୍ରାନ୍ୟଚ୍ଚକ୍ରମବୃହଃ ସୂର୍ଯସ୍ୟ

କୁତ୍ସାୟାନ୍ୟଦ୍ ବରିବୋ ଯାତବେଽକଃ ।

ଅନାସୋ ଦସ୍ୟୂଁରମୃଣୋ ବଧେନ

ନି ଦୁର୍ଯୋଣ ଆବୃଣଙ୍ମୃଧ୍ରବାଚଃ ॥

( ଗୌରିବୀତି ଶାକ୍ତ୍ୟ । ଇନ୍ଦ୍ର । ତ୍ରିଷ୍ଟୁପ୍ । )

ପଦପାଠ : ପ୍ର । ଅନ୍ୟତ୍ । ଚକ୍ରମ୍ । ଅବୃହଃ । ସୂର୍ଯସ୍ୟ । କୁତ୍ସାୟ । ଅନ୍ୟତ୍ । ବରିବଃ । ଯାତବେ । ଅକରିତ୍ୟକଃ । ଅନାସଃ । ଦସ୍ୟୂନ୍ । ଅମୃଣଃ । ବଧେନ । ନି । ଦୁର୍ଯୋଣେ । ଆବୃଣକ୍ । ମୃଧ୍ରବାଚଃ ॥

ପଦାର୍ଥ : (ସୂର୍ଯସ୍ୟ) ସୂର୍ଯସମାନ ତେଜସ୍ୱୀ ଶାସକର (ଅନ୍ୟତ୍ ଚକ୍ରମ୍) ଗୋଟିଏ ଚକ୍ର ( କୁତ୍ସାୟ ) ବଳଧାରଣ ପାଇଁ ( ପ୍ର ଅବୃହଃ ) ବିଶେଷ ଉନ୍ନତି ସାଧନ କରେ (ଅନ୍ୟତ୍) ଅନ୍ୟ ଚକ୍ର ( ବରିବଃ ଯାତବେ ) ସମ୍ପଦବିକାଶ ପାଇଁ (ଅକଃ) ଗଠନ କରେ । ହେ ଶାସକ ! (ଅନାସଃ) ପ୍ରତ୍ୟକ୍ଷ ରାଷ୍ଟ୍ରଦ୍ରୋହୀ ( ଦସ୍ୟୂନ୍ ) ଉତ୍ପୀଡ଼ନ ଦୁଷ୍ଟ ବ୍ୟକ୍ତିଙ୍କୁ ( ବଧେନ ଅମୃଣଃ ) ପ୍ରାଣଦଣ୍ଡ ଦିଅ ( ମୃଧ୍ରବାଚଃ ) ପ୍ରବଞ୍ଚକ, ମିଥ୍ୟାବାଦୀଙ୍କୁ ( ଦୁର୍ଯୋଣେ ନି ଆବୃଣକ୍ ) କାରାଗାରରେ ବନ୍ଦୀ କର ।





॥ ମଣ୍ଡଳ ୫, ସୂକ୍ତ ୨୯, ମନ୍ତ୍ର ୧୦ ॥

—ସୂର୍ଯ୍ୟ ଜଳ, ସ୍ଥଳ, ଆକାଶ ସର୍ବତ୍ର ଆଲୋକ ବିତରଣ କରନ୍ତି । ରାଷ୍ଟ୍ରଶାସକ ସେହିପରି ସମଦୃଷ୍ଟି ସମ୍ପନ୍ନ ହୋଇ ନିରପେକ୍ଷ ଶାସନ କରନ୍ତୁ । ସୂର୍ଯ୍ୟ ପୃଥିବୀସ୍ଥ ଜଳକୁ ବାଷ୍ପ ରୂପରେ ଆକର୍ଷଣକରି ପୁନର୍ବାର ଜଳବୃଷ୍ଟି କରନ୍ତି । ସେହିପରି ଶାସକ ପ୍ରଜାଙ୍କୁ ପୀଡ଼ା ନ ହେବା ପରି ସ୍ୱଳ୍ପପରିମାଣ କର ସଂଗ୍ରହ କରି ତଦ୍ଦ୍ୱାରା ଦେଶର ଶାସନ ବ୍ୟବସ୍ଥା କରନ୍ତୁ ।

ରାଷ୍ଟ୍ରମଧ୍ୟରୁ ଅନ୍ୟାୟ ଓ ଅଶାନ୍ତି ଦୂର କରିବା ଓ ବହିଃଶତ୍ରୁକୁ ପ୍ରତିରୋଧ କରିବା ଶାସକଙ୍କର ପ୍ରଥମ କର୍ତ୍ତବ୍ୟ । ଏଥିପାଇଁ ଶାନ୍ତିରକ୍ଷୀ ଦଳ ଓ ଦୃଢ଼ ସୈନ୍ୟବାହିନୀ ସଂଗଠନ କରିବା ଆବଶ୍ୟକ ।

ସୂର୍ଯ୍ୟାଲୋକ ପୃଥିବୀରେ ଧନଧାନ୍ୟ ବିକାଶର କାରଣ ଅଟେ । ସେହିପରି ଶାସକ ରାଷ୍ଟ୍ରୀୟ ସମ୍ପତ୍ତିର ଉତ୍ତରୋତ୍ତର ଉନ୍ନତିରେ ଉଦ୍ୟୋଗୀ ହୁଅନ୍ତୁ । ଶାନ୍ତିସ୍ଥାପନ ଓ ଉତ୍ପାଦନବୃଦ୍ଧି ଶାସକଙ୍କର ଦୁଇଟି ମୁଖ୍ୟ କର୍ତ୍ତବ୍ୟ । ଅଶାନ୍ତି ସୃଷ୍ଟି କରୁଥିବା ରାଷ୍ଟ୍ରଦ୍ରୋହୀ, ସମ୍ପତ୍ତିର ଅପବ୍ୟବହାର କରୁଥିବା ଦସ୍ୟୁ ଏବଂ ଉତ୍ପୀଡ଼କ ଲୋକମାନଙ୍କୁ ଶିକ୍ଷା ଓ ଦଣ୍ଡ ଦେବା ପାଇଁ ଏଠାରେ ନିର୍ଦ୍ଦେଶ ଦିଆଯାଇଛି । ରାଷ୍ଟ୍ରପତି ସୂର୍ଯ୍ୟନୀତିକୁ ଅନୁସରଣ କରିବା ବିଧେୟ ।

॥ ମଣ୍ଡଳ ୫, ସୂକ୍ତ ୬୬, ମନ୍ତ୍ର ୬ ॥

ସ୍ୱରାଜ୍ୟସାଧନ

ଆ ଯଦ୍ ବାମୀୟଚକ୍ଷସା

ମିତ୍ରା ବୟଂ ଚ ସୂରୟଃ ।

ବ୍ୟଚିଷ୍ଠେ ବହୁପାଯ୍ୟେ

ଯତେମହି ସ୍ୱରାଜ୍ୟେ ॥

( ରାତହବ୍ୟ ଆତ୍ରେୟଃ । ମିତ୍ରାବରୁଣୌ । ଅନୁଷ୍ଟୁପ୍ )

**ପଦପାଠ :** ଆ । ଯତ୍ । ବାମ୍ । ଈୟଃଚକ୍ଷସା । ମିତ୍ରା । ବୟଂ । ଚ । ସୂରୟଃ । ବ୍ୟଚିଷ୍ଠେ । ବହୁଃପାଯ୍ୟେ । ଯତେମହି । ସ୍ୱଃରାଜ୍ୟେ ॥

**ପଦାର୍ଥ :** (ମିତ୍ରା) ହେ ଭରତର ଶ୍ରେଷ୍ଠ ସ୍ତ୍ରୀପୁରୁଷ ! (ଯତ୍) ଯେଉଁ (ବାମ୍ ବୟଂ ଚ) ତୁମ୍ଭେ ଓ ଆମ୍ଭେମାନେ (ସୂରୟଃ) ସମସ୍ତ ଜ୍ଞାନୀଜନ ମିଶି (ଈୟଚକ୍ଷସା) ଦୀର୍ଘଦୃଷ୍ଟି ଦ୍ୱାରା (ବ୍ୟଚିଷ୍ଠେ) ଅତି ବିସ୍ତୃତ (ବହୁପାଯ୍ୟେ) ବହୁ ପୁରୁଷଙ୍କ ଦ୍ୱାରା ସଂରକ୍ଷଣଯୋଗ୍ୟ (ସ୍ୱରାଜ୍ୟେ) ସ୍ୱରାଜ୍ୟ ପାଇଁ (ଆ ଯତେମହି) ସର୍ବଦାଗରୁ ପ୍ରଯତ୍ନ କରୁଁ ।





॥ ମଣ୍ଡଳ ୫, ସୂକ୍ତ ୬୬, ମନ୍ତ୍ର ୬ ॥

—ପ୍ରସ୍ତୁତ ବେଦମନ୍ତ୍ରରେ ସ୍ୱରାଜ୍ୟର ମୁଖ୍ୟ ସାଧନଗୁଡ଼ିକ ସୂଚିତ ହୋଇଅଛି । ପ୍ରଥମତଃ ଦେଶବାସୀଙ୍କ ମଧ୍ୟରେ ମିତ୍ରତା, ସୌହାର୍ଦ୍ଦ୍ୟ ସ୍ଥାପିତ ହେବା ଆବଶ୍ୟକ । ନିଜର ତେଜ ଓ ସମ୍ପତ୍ତି ଦ୍ୱାରା ଅନ୍ୟମାନଙ୍କର ଉନ୍ନତି-ସାଧନ କରିବାକୁ ହେଲେ ଅନ୍ୟ ପ୍ରତି ବିଦ୍ୱେଷ ଓ ଘୃଣା ତ୍ୟାଗ କରିବାକୁ ହେବ । ମିତ୍ରଦୃଷ୍ଟି ସମ୍ପାଦନ କରିବାକୁ ହେବ । କ୍ଷୁଦ୍ର ଓ ସ୍ୱାର୍ଥୀ ବୁଦ୍ଧିର ସ୍ୱରାଜ୍ୟସଂପାଦନର ପ୍ରତିକୂଳ । ଶିକ୍ଷାର ପ୍ରସାର ସ୍ୱରାଜ୍ୟର ଅନ୍ୟତମ ସାଧନ, କାରଣ ଅଜ୍ଞାନ, ମୂର୍ଖ ଲୋକେ ଅନ୍ୟମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରନ୍ତି ନାହିଁ ।

ସ୍ୱରାଜ୍ୟ ଜଣେ ଦୁଇଜଣ ବ୍ୟକ୍ତିଙ୍କ ବ୍ୟାପାର ନୁହେଁ । ରାଜପତି, ଏକାଧିପତିଙ୍କ ରାଜ୍ୟକୁ ସମସ୍ତେ ନିଜ ରାଜ୍ୟ ବୋଲି ଅନୁଭବ କରନ୍ତି ନାହିଁ । ଏଣୁ ମନ୍ତ୍ର କହୁଛନ୍ତି 'ବହୁପାଯ୍ୟେ' ଅର୍ଥାତ୍ ବହୁ ଲୋକଙ୍କ ଦ୍ୱାରା ସ୍ୱରାଜ୍ୟ ପରିପୁଷ୍ଟ ହୁଏ । କୁହାଯାଉଛି 'ତୁମ୍ଭେ ଓ ଆମ୍ଭେମାନେ' ସମସ୍ତେ ମିଶି ଉଦ୍‌ଯୋଗୀ ହେବା । ଦେହ ମଧ୍ୟରେ ସମସ୍ତ ଇନ୍ଦ୍ରିୟ ପ୍ରବୃତ୍ତିଶୀଳ ହେଲେ ଆତ୍ମାର ସ୍ୱରାଜ୍ୟ ପ୍ରତିଷ୍ଠିତ ହୁଏ । ସେହିପରି ରାଷ୍ଟ୍ରଶକ୍ତି ନାଗରିକମାନଙ୍କର ନିରନ୍ତର ପୁରୁଷାର୍ଥ ଦ୍ୱାରା ବଳବତୀ ହୁଏ ।

॥ ମଣ୍ଡଳ ୫, ସୂକ୍ତ ୪୨, ମନ୍ତ୍ର ୯ ॥

## ସମ୍ବିଧାନବିରୋଧୀଙ୍କୁ ଦଣ୍ଡ

ନ୍ୟସର୍ମାଣଂ କୃଣୁହି ଧନମେଷାଂ

ଯେ ଭୁଞ୍ଜତେ ଅପୃଣନ୍ତୋ ନ ଉକ୍ଥୈଃ ।

ଅପବ୍ରତାନ୍ ପ୍ରସବେ ବାବୃଧାନାନ୍

ବ୍ରହ୍ମଦ୍ୱିଷଃ ସୂର୍ଯ୍ୟାଦ୍ ଯାବୟସ୍ୱ ॥

( ଭୌମୋଽତ୍ରିଃ । ବିଶ୍ୱେଦେବାଃ । ତ୍ରିଷ୍ଟୁପ୍ । )

**ପଦପାଠ :** ନିଃସର୍ମାଣମ୍ । କୃଣୁହି । ଧନମ୍ । ଏଷାମ୍ । ଯେ । ଭୁଞ୍ଜତେ । ଅପୃଣନ୍ତଃ । ନଃ । ଉକ୍ଥୈଃ । ଅପଃବ୍ରତାନ୍ । ପ୍ରସବେ । ବାବୃଧାନାନ୍ । ବ୍ରହ୍ମଃଦ୍ୱିଷଃ । ସୂର୍ଯ୍ୟାତ୍ । ଯାବୟସ୍ୱ ॥

**ପଦାର୍ଥ :** (ଯେ) ଯେଉଁମାନେ (ନଃ) ଆମ୍ଭମାନଙ୍କର (ଉକ୍ଥୈଃ) ସମ୍ବିଧାନ ଶୁଣି ମଧ୍ୟ ( ଅପୃଣନ୍ତଃ ) ପୂର୍ଣ୍ଣ କରନ୍ତି ନାହିଁ ( ଭୁଞ୍ଜତେ ) ସ୍ୱୟଂ ଭୋଗ କରନ୍ତି ( ଏଷାଂ ଧନମ୍ ) ଏମାନଙ୍କ ଧନକୁ ( ନିଃସର୍ମାଣଂ କୃଣୁହି ) ବିନାଶ କର । ( ପ୍ରସବେ ) ଏହି ଶାସନମଧ୍ୟରେ ( ବାବୃଧାନାନ୍ ଅପବ୍ରତାନ୍ ) ବହୁସଂଖ୍ୟକ ସ୍ଖଳନବ୍ରତଧାରୀଙ୍କୁ (ବ୍ରହ୍ମଦ୍ୱିଷଃ) ଜନମାନଙ୍କ ବିଦ୍ୱେଷୀଙ୍କୁ (ସୂର୍ଯ୍ୟାତ୍) ସୂର୍ଯ୍ୟପ୍ରକାଶ ଠାରୁ (ଯାବୟସ୍ୱ) ପୃଥକ୍ କର ।





॥ ମଣ୍ଡଳ ୫, ସୂକ୍ତ ୪୨, ମନ୍ତ୍ର ୯ ॥

—ରାଷ୍ଟ୍ରୀୟ ସମ୍ବିଧାନ ରାଷ୍ଟ୍ରୀୟ ବିକାଶର ମୂଳମନ୍ତ୍ର । ଏଥିରେ ନାଗରିକମାନଙ୍କର କର୍ତ୍ତବ୍ୟ ଓ ଅଧିକାର ଲିପିବଦ୍ଧ ଥାଏ । ଯେଉଁମାନେ ସମ୍ବିଧାନ ଜାଣି ମଧ୍ୟ କେବଳ ଅଧିକାରଭୋଗରେ ଆକାଂକ୍ଷିତ, ସେମାନଙ୍କର ଭୋଗଲବ୍ଧ ଧନକୁ ବିନାଶ କରିବା ଉଚିତ । କାରଣ ଏହା ଧନ ବା ଅର୍ଥର ଲକ୍ଷଣ ନୁହେଁ । ଶୃଙ୍ଖଳା ଯୋଗୁଁ ବଳ ବୃଦ୍ଧି ଲାଭ କରେ । ପ୍ରତ୍ୟେକ ବ୍ୟକ୍ତି ସମାଜର ଶୃଙ୍ଖଳା ପାଳନ କଲେ ସମାଜ ବଳବାନ୍ ହୁଏ ।

ବେଦମନ୍ତ୍ରରେ ଥିବା 'ଭୁଞ୍ଜତେ' ବା 'ଭୋଗକରନ୍ତି' ଏହି ଭାବନା ଅଧିକାରକୁ ବୁଝାଏ । କର୍ତ୍ତବ୍ୟ ନ କରି କେବଳ ଅଧିକାର ଭୋଗ କରିବା ଦ୍ୱାରା ଜୀବନ ପୂର୍ଣ୍ଣତା ପାଏ ନାହିଁ । ମନ୍ତ୍ରରେ ଅନ୍ୟପ୍ରକାର ଦୁଷ୍ଟ ନାଗରିକଙ୍କୁ 'ଅପବ୍ରତାଃ' କୁହାଯାଇଛି । ବ୍ରତର ଅର୍ଥ କର୍ତ୍ତବ୍ୟ । ପ୍ରତ୍ୟେକ ବ୍ୟକ୍ତି ନିଜର ପ୍ରବୃତ୍ତି ଅନୁସାରେ ସମାଜରୁ ଅଜ୍ଞାନ, ଅନ୍ୟାୟ ଅଥବା ଅଭାବ ଦୂର କରିବା ପାଇଁ ଗୋଟିଏ ଗୋଟିଏ ବ୍ରତ ଧାରଣ କରିବା ଉଚିତ । ଏହି ଭାବରେ ସମାଜର ଋଣ ପରିଶୋଧ କରାଯାଏ । ଏହା ନ କରିବା ବ୍ରତସ୍ଖଳନତା । ସ୍ଖଳନ ବ୍ରତାବ୍ୟସ ବ୍ରତସ୍ଖଳନ ଠାରୁ ବିପଦସଂକୁଳ । ଏଭଳି ବ୍ୟକ୍ତି ସମାଜରେ ଅଜ୍ଞାନ, ଅନ୍ୟାୟ ଓ ଅଭାବ ବୃଦ୍ଧି କରନ୍ତି । ଏମାନଙ୍କୁ ସୂର୍ଯ୍ୟପ୍ରକାଶରୁ ପୃଥକ୍ କରିବା ଅର୍ଥାତ୍ ବନ୍ଦୀ କରିବା ପାଇଁ କୁହାଯାଇଛି ।

॥ ମଣ୍ଡଳ ୬, ସୂକ୍ତ ୪୭, ମନ୍ତ୍ର ୨୯ ॥

କର୍ମସଂସ୍ଥାନ

ଉପ ଶ୍ୱାସୟ ପୃଥିବୀମୁତ ଦ୍ୟାଂ

ପୁରୁତ୍ରା ତେ ମନୁତାଂ ବିଷ୍ଠିତଂ ଜଗତ୍ ।

ସ ଦୁନ୍ଦୁଭେ ସଜୂରିନ୍ଦ୍ରେଣ ଦେବୈ-

ର୍ଦୂରାଦ୍ଦବୀୟୋ ଅପ ସେଧ ଶତ୍ରୂନ୍ ॥

( ଗର୍ଗଃ । ଦୁନ୍ଦୁଭିଃ । ତ୍ରିଷ୍ଟୁପ୍ । )

**ପଦପାଠ :** ଉପ । ଶ୍ୱାସୟ । ପୃଥିବୀମ୍ । ଉତ । ଦ୍ୟାମ୍ । ପୁରୁଽତ୍ରା । ତେ । ମନୁତାମ୍ । ବିଽସ୍ଥିତମ୍ । ଜଗତ୍ । ସଃ । ଦୁନ୍ଦୁଭେ । ସଽଜୂଃ । ଇନ୍ଦ୍ରେଣ । ଦେବୈଃ । ଦୂରାତ୍ । ଦବୀୟଃ । ଅପ । ସେଧ । ଶତ୍ରୂନ୍ ॥

**ପଦାର୍ଥ :** ( ଦୁନ୍ଦୁଭେ ) ହେ ଦୁନ୍ଦୁଭିବଳେ ବଳଶାଳୀ ରାଜନ୍ ! (ପୃଥିବୀମ୍ ଉତ ଦ୍ୟାଂ) ଭୂମିବାସୀ ପ୍ରଜାଙ୍କୁ (ଉପ ଶ୍ୱାସୟ) ପ୍ରାଣବନ୍ତ ଜୀବନ-ବୃତ୍ତି ପ୍ରଦାନ କର । (ତେ) ତୁମ ଅଧୀନ ( ପୁରୁତ୍ରା ) ଅନେକ ପ୍ରକାର ( ଜଗତ୍ ) ଜଙ୍ଗମ ପ୍ରାଣୀଗଣ ( ବିସ୍ଥିତଂ ) ବିବିଧ ପ୍ରକାରେ ସ୍ଥିତ ହୋଇ (ମନୁତାଂ) ସମ୍ମାନ କରନ୍ତୁ । (ସଃ) ସେହି ତୁମ୍ଭେ (ଇନ୍ଦ୍ରେଣ) ସମୃଦ୍ଧଶାଳୀ ପ୍ରଜାଦ୍ୱାରା (ଦେବୈଃ) ବିଦ୍ୱାନ ପୁରୁଷଙ୍କ ଦ୍ୱାରା (ସଜୂଃ) ମିଳିମିଶି (ଶତ୍ରୂନ୍) ଶତ୍ରୁମାନଙ୍କୁ ( ଦୂରାତ୍ ଦବୀୟଃ ) ଦୂରରୁ ଦୂରକୁ ( ଅପ ସେଧ ) ଘଉଡ଼ାଇ ଦିଅ ।



॥ ମଣ୍ଡଳ ୬, ସୂକ୍ତ ୪୭, ମନ୍ତ୍ର ୨୯ ॥

—ପୃଥିବୀରେ ଖନିଜ, ବନଜ ଓ ଜଳଜ ବସ୍ତୁ ପ୍ରତ୍ୟେକ ଓ ପରୋକ୍ଷ ଭାବରେ ପୂର୍ଣ୍ଣ ହୋଇ ରହିଛି । ମନୁଷ୍ୟ ସେ ସବୁ ଆବିଷ୍କାର କରୁ । ସେ ସବୁର ଅନ୍ୱେଷଣ ପାଇଁ ଉନ୍ନତଭାବରେ ବିଜ୍ଞାନର ଗବେଷଣା କରୁ । ଜ୍ଞାତ ଓ ଅଜ୍ଞାତ ସମ୍ପଦକୁ ସମାଜ କଲ୍ୟାଣ ପାଇଁ ବିନିଯୋଗ କରୁ । ବହୁଳ ଭାବରେ ବାସ କରି ବସ୍ତୁ ସଂଗ୍ରହ ନ କରିବା ପୁରୁଷକାର ନୁହେଁ ।

ଯେ ଜନ୍ମଗ୍ରହଣ କରିଛି, ତାହାର ବଞ୍ଚିବା ପାଇଁ ଧରଣୀରେ ଅସରନ୍ତି ପଦାର୍ଥ ଭରି ରହିଛି । ସଂସାରରେ ଜୀବନଧାରଣ ପାଇଁ ବିବିଧ ସମ୍ବଳ ରହିଛି । ଜୀବିକାନିର୍ବାହ ପାଇଁ ଅସଂଖ୍ୟ ମାର୍ଗ ଅଛି । ଶାସକ ଓ ପ୍ରଜା ଉଦ୍‌ଯୋଗୀ ହୋଇ ଏହିସବୁ ମାର୍ଗର ଅନୁସନ୍ଧାନ କରନ୍ତୁ । ମାନବ-ସମାଜରେ ବିବିଧ ଉଦ୍ୟମ ଓ ବୃତ୍ତି ବିକାଶ ଲାଭ କରୁ । ପ୍ରଜାମାନଙ୍କର କର୍ମସଂସ୍ଥାନ ଶାସକର ମୁଖ୍ୟ କର୍ତ୍ତବ୍ୟ । ବ୍ୟକ୍ତିକୁ ତାର ପ୍ରବୃତ୍ତି ଅନୁସାରେ କର୍ମ ଯୋଗାଇ ଦେବା ରାଷ୍ଟ୍ରର ଦାୟିତ୍ୱ ଅଟେ କାରଣ କର୍ମଦ୍ୱାରା ହିଁ ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶଲାଭ କରେ ।

କର୍ମବିମୁଖ ଓ ବେକାର ନାଗରିକଙ୍କୁ ଯେଉଁ ଶାସକପଦବୀରେ ରହିବାର ଗୌରବ ନାହିଁ । କର୍ମସଂସ୍ଥାନର ପଥରୋଧ କରୁଥିବା ସ୍ୱାର୍ଥୀ, ଆଳସ୍ୟଗ୍ରସ୍ତ ବ୍ୟକ୍ତିଙ୍କୁ ଦେଶରୁ ନିର୍ବାସନ କରିବା ପାଇଁ ବେଦମନ୍ତ୍ର ନିର୍ଦ୍ଦେଶ ଦେଇଛନ୍ତି । କାରଣ ଆଳସ୍ୟ ଏକ ସଂକ୍ରାମକ ବ୍ୟାଧି ଅଟେ ।

॥ ମଣ୍ଡଳ ୬, ସୂକ୍ତ ୫୧, ମନ୍ତ୍ର ୭ ॥

ନିରପରାଧ ଦଣ୍ଡିତ ନ ହେଉ

ମା ବ ଏନୋ ଅନ୍ୟକୃତଂ ଭୁଜେମ

ମା ତତ୍ କର୍ମ ବସବୋ ଯଚ୍ଚୟଧ୍ବେ ।

ବିଶ୍ୱସ୍ୟ ହି କ୍ଷୟଥ ବିଶ୍ୱଦେବାଃ

ସ୍ୱୟଂ ରିପୁସ୍ତନ୍ୱଂ ରୀରିଷୀଷ୍ଟ ॥

( ଋଜିଶ୍ୱା ଭାରଦ୍ୱାଜଃ । ବିଶ୍ୱେଦେବାଃ । ତ୍ରିଷ୍ଟୁପ୍ )

ପଦପାଠ : ମା । ବଃ । ଏନଃ । ଅନ୍ୟକୃତମ୍ । ଭୁଜେମ । ମା । ତତ୍ । କର୍ମ । ବସବଃ । ଯତ୍ । ଚୟଧ୍ବେ । ବିଶ୍ୱସ୍ୟ । ହି । କ୍ଷୟଥ । ବିଶ୍ୱଦେବାଃ । ସ୍ୱୟମ୍ । ରିପୁଃ । ତନ୍ୱମ୍ । ରିରିଷୀଷ୍ଟ ॥

ପଦାର୍ଥ : ( ବସବଃ ) ହେ ରାଷ୍ଟ୍ରନେତାଗଣ ! ( ଅନ୍ୟକୃତଂ ) ଅନ୍ୟ ଲୋକ କରିଥିବା (ଏନଃ) ଅପରାଧ (ମା ଭୁଜେମ) ଆମ୍ଭେମାନେ ଭୋଗ କରିବୁ ନାହିଁ । (ଯତ୍ ) ଯେଉଁ କର୍ମ ( ଚୟଧ୍ବେ ) ଆପଣ ଧାରଣ କରନ୍ତି ( ତତ୍ ମା କର୍ମ ) ତାହାକୁ କରିବୁ ନାହିଁ । (ବିଶ୍ୱେଦେବାଃ) ହେ ବିଦ୍ୱାନ୍ ପୁରୁଷ ! (ବିଶ୍ୱସ୍ୟ ହି କ୍ଷୟଥ) ସମସ୍ତ କାର୍ଯ୍ୟର ବ୍ୟବସ୍ଥାପକ ହୁଅ । (ସ୍ୱୟଂ) ମନୁଷ୍ୟ ନିଜେ (ରିପୁଃ) ଶତ୍ରୁ ହୋଇ (ତନ୍ୱଂ) ଦେହକୁ (ରିରିଷୀଷ୍ଟ) ବିନାଶ କରେ ।





॥ ମଣ୍ଡଳ ୬, ସୂକ୍ତ ୫୧, ମନ୍ତ୍ର ୭ ॥

—ରାଷ୍ଟ୍ରବାସୀ ରାଷ୍ଟ୍ରନେତାଙ୍କୁ ପରସ୍ପର କର୍ତ୍ତବ୍ୟ ସ୍ମରଣ କରାଉଛନ୍ତି । ରାଷ୍ଟ୍ରରେ ପ୍ରକୃତ ଅପରାଧୀ ହିଁ ଦଣ୍ଡ ପାଇବା ଉଚିତ । ଅପରାଧୀ ଖୋଜିବାର ଅବହେଳାରେ ହେଉ ଅଥବା ପ୍ରଭାବଶାଳୀ ଅପରାଧୀର ଭୟରେ ହେଉ, ଅପରାଧୀକୁ ଛାଡି ନିରପରାଧ ବ୍ୟକ୍ତିଙ୍କୁ ଶାସ୍ତି ଦେବା ଗର୍ହିତ କାର୍ଯ୍ୟ ଅଟେ । ରାଜସ୍ୱକୁ ଫାଙ୍କିଥିବା ଦୁର୍ନୀତିଗ୍ରସ୍ତ ଲୋକେ ଛଦ୍ମବେଶରେ ରହି ରକ୍ଷା ପାଇ ଯିବେ, ଅଥଚ ଗରିବ ଲୋକେ ଅଧିକ ମାତ୍ରାରେ କାରାଗାରରେ ପେଷି ହେଉଥିବେ—ଏହି ଅବସ୍ଥା ଶାସକପକ୍ଷରେ ଅତ୍ୟନ୍ତ ଲଜ୍ଜାର ବିଷୟ ।

ଏଠାରେ ରାଷ୍ଟ୍ରବାସୀଗଣ ଶାସକଙ୍କୁ ସମ୍ବୋଧନ କରି କହୁଛନ୍ତି— "ଆମ୍ଭେମାନେ ରାଷ୍ଟ୍ରର ନୈତିକ କର୍ମଶୃଙ୍ଖଳରୁ ବିରତ ରହିବୁ । ରାଷ୍ଟ୍ରଦ୍ରୋହୀ, ଜମ୍ମନଙ୍କାରୀମାନଙ୍କୁ ଧରାଇ ଦେବାରେ ସାହାଯ୍ୟ କରିବୁ । ଆପଣମାନେ ନିରପେକ୍ଷ ଶାସନ କରନ୍ତୁ । ଜଣକର ଅପରାଧ ପାଇଁ ଅନ୍ୟ ଜଣକୁ ଦଣ୍ଡ ଦିଅନ୍ତୁ ନାହିଁ ।"

ରାଷ୍ଟ୍ରରେ ଏଭଳି ବ୍ୟକ୍ତି ଅଛନ୍ତି ଯେଉଁମାନେ ରାଷ୍ଟ୍ରୀୟ ସ୍ୱାର୍ଥର ବିନିମୟରେ ବ୍ୟକ୍ତି ସ୍ୱାର୍ଥସାଧନ ପାଇଁ ଚେଷ୍ଟିତ ରହନ୍ତି । ନିଜର ପରିବାରଟିକର ଲାଭ ପାଇଁ ରାଷ୍ଟ୍ରକୋଷରୁ ହଜାର ପଇସା ଲୁଟ କରାଇବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଆଳସ୍ୟ ଦ୍ୱାରା ନିଜ ଦେହକୁ ରୋଗଗ୍ରସ୍ତ କରିବା ପରି ଏହି ନୀଚମନା ଲୋକେ ଦୁରାଚାର ଦ୍ୱାରା ନିଜର ଓ ସମାଜର ଅନିଷ୍ଟ ସାଧନ କରନ୍ତି । ଶାସକଗଣ ଏଭଳି ଅପରାଧୀଙ୍କ ପ୍ରତି ସାବଧାନ ରହିବା ଉଚିତ ।

॥ ମଣ୍ଡଳ ୧୦, ସୂକ୍ତ ୧୧୭, ମନ୍ତ୍ର ୧ ॥

ଦାନ କରି କେହି ଦରିଦ୍ର ହୁଏ ନାହିଁ

ନ ବା ଉ ଦେବାଃ କ୍ଷୁଧମିଦ୍ୱଧଂ ଦଦୁ-

ରୁତାଶିତମୁପ ଗଚ୍ଛନ୍ତି ମୃତ୍ୟବଃ ।

ଉତୋ ରୟିଃ ପୃଣତୋ ନୋପ ଦସ୍ୟ-

ତ୍ୟୁତାପୃଣନ୍ ମର୍ଡିତାରଂ ନ ବିନ୍ଦତେ ॥

( ଭିକ୍ଷୁଃ । ଇନ୍ଦ୍ରଃ । ଜଗତୀ )

ପଦପାଠ : ନ । ବୈ । ଊଁଇତି । ଦେବାଃ । କ୍ଷୁଧମ୍ । ଇତ୍ । ବଧମ୍ । ଦଦୁଃ । ଉତ । ଆଶିତମ୍ । ଉପ । ଗଚ୍ଛନ୍ତି । ମୃତ୍ୟବଃ । ଉତୋଇତି । ରୟିଃ । ପୃଣତଃ । ନ । ଉପ । ଦସ୍ୟତି । ଉତ । ଅପୃଣନ୍ । ମର୍ଡିତାରମ୍ । ନ । ବିନ୍ଦତେ ॥

ପଦାର୍ଥ : (ଦେବାଃ) ଦିବ୍ୟ ପୁରୁଷ (ବା ଉ) ନିଶ୍ଚୟରେ (କ୍ଷୁଧମ୍ ଇତ୍ ବଧମ୍ ନ ଦଦୁଃ) କ୍ଷୁଧା ମେଣ୍ଟାଇବା ପାଇଁ ଅନ୍ୟଙ୍କୁ ମୃତ୍ୟୁ ଦିଅନ୍ତି ନାହିଁ (ଉତ) କାରଣ (ଆଶିତମ୍) ଖାଉଥିବା ଲୋକ ମଧ୍ୟ (ମୃତ୍ୟବଃ) ମରଣ (ଉପ ଗଚ୍ଛନ୍ତି) ପ୍ରାପ୍ତ ହୁଅନ୍ତି (ଉତ) ଏବଂ (ପୃଣତଃ ରୟିଃ) ଦାତାର ଧନ (ନ ଉପ ଦସ୍ୟତି) କେବେ ନଷ୍ଟ ହୁଏ ନାହିଁ (ଉତ) ତଥା (ଅପୃଣନ୍) ଅନ୍ୟଙ୍କୁ ପାଳନ କରୁ ନ ଥିବା ଲୋକ (ମର୍ଡିତାରମ୍) ନିଜ ପ୍ରତି ଦୟା ଓ ଶ୍ରଦ୍ଧା ରଖିଥିବା ଲୋକଙ୍କୁ (ନ ବିନ୍ଦତେ) ପ୍ରାପ୍ତ ହୁଅନ୍ତି ନାହିଁ ।





॥ ମଣ୍ଡଳ ୧୦, ସୂକ୍ତ ୧୧୭, ମନ୍ତ୍ର ୧ ॥

—ସଂସାରରେ କେବଳ ଗରିବ ଭୋକିଲା ଲୋକେ ଯେ ମୃତ୍ୟୁମୁଖରେ ପଡ଼ନ୍ତି ତାହା ନୁହେଁ, ପେଟପୂରା ଖାଉଥିବା ଧନୀ ଲୋକେ ମଧ୍ୟ ମୃତ୍ୟୁବରଣ କରନ୍ତି । ଧନାଢ୍ୟ ବ୍ୟକ୍ତି ଅନେକ ସ୍ଥଳରେ ଅତି ଭୋଗରୁ ରୋଗାକ୍ରାନ୍ତ ହୁଅନ୍ତି; ଧନର ଚୋର ଯୋଗୁଁ ଚିନ୍ତାଗ୍ରସ୍ତ ହୁଅନ୍ତି, ଶତ୍ରୁ ଓ ଡକାୟତ କବଳରେ ପଡ଼ି ପ୍ରାଣ ହରାନ୍ତି । ଧନର ବିଚ୍ଛେଦ ଘଟିବା ବେଳେ ଏମାନେ ଶୋକାକୁଳ ଓ ମ୍ରିୟମାଣ ହୋଇପଡ଼ନ୍ତି ।

ଯାହାର ଜନ୍ମ ଅଛି, ତାହାର ମୃତ୍ୟୁ ଅବଶ୍ୟମ୍ଭାବୀ । ମୃତ୍ୟୁର ଅର୍ଥ ଚରମ ତ୍ୟାଗ । ତେଣୁ ତ୍ୟାଗକୁ ଅନ୍ତିମ ଧ୍ୟେୟରୂପେ ସ୍ୱୀକାର କରି ସ୍ୱେଚ୍ଛା-ପୂର୍ବକ ଜୀବନ ଧାରଣ କରିବା ବିବେକପୂର୍ଣ୍ଣ କାର୍ଯ୍ୟ ଅଟେ । ଦାନ କରି କରି କେହି ନିର୍ଦ୍ଧନ ହୋଇଛି, ଏଭଳି ଦୃଷ୍ଟାନ୍ତ ସଂସାରରେ ବିରଳ । ଦାନଦ୍ୱାରା ଧନସମ୍ପତ୍ତି ସତ୍‌ପନ୍ଥାରେ ବିନିଯୁକ୍ତ ଓ ବୃଦ୍ଧିପ୍ରାପ୍ତ ହୁଏ । ଅନ୍ୟ ପକ୍ଷରେ ଅପବ୍ୟୟଦ୍ୱାରା ତାହାର ବିନାଶ ଘଟେ । ଧନର ଦୁର୍ବ୍ୟବହାର ସମାଜରେ ଅସତ୍ ସଂସ୍କାର ବିସ୍ତାର କରେ । ଦାନ ନ କରୁଥିବା ଲୋକର ହୃଦୟ ପଥର ସଙ୍ଗେ ସମାନ । ଏଭଳି ନିଷ୍ଠୁର କୃପଣ ବ୍ୟକ୍ତିପାଇଁ କାହାର ଆନ୍ତରିକ ଦୟା, ଶ୍ରଦ୍ଧା ଓ ସହାନୁଭୂତି ନ ଥାଏ । ଦାନ ମିଳୁ ନଥିବା ଘର ଆଡ଼କୁ କେହି କେବେ ଅନାଏ ନାହିଁ ।

କୃପଣର ଘରକୁ ଧିକ୍

ନ ସ ସଖା ଯୋ ନ ଦଦାତି ସଖ୍ୟେ

ସଚାଭୁବେ ସଚମାନାୟ ପିତ୍ୱଃ ।

ଅପାସ୍ମାତ୍ ପ୍ରେୟାନ୍ନ ତଦୋକୋ ଅସ୍ତି

ପୃଣନ୍ତମନ୍ୟମରଣଂ ଚିଦିଚ୍ଛେତ୍ ॥

( ଭିକ୍ଷୁଃ । ଇନ୍ଦ୍ରଃ । ତ୍ରିଷ୍ଟୁପ୍ )

**ପଦପାଠ :** ନ । ସଃ । ସଖା । ଯଃ । ନ । ଦଦାତି । ସଖ୍ୟେ । ସଚାଽଭୁବେ । ସଚମାନାୟ । ପିତ୍ୱଃ । ଅପ । ଅସ୍ମାତ୍ । ପ୍ର । ଇୟାତ୍ । ନ । ତତ୍ । ଓକଃ । ଅସ୍ତି । ପୃଣନ୍ତମ୍ । ଅନ୍ୟମ୍ । ଅରଣମ୍ । ଚିତ୍ । ଇଚ୍ଛେତ୍ ॥

**ପଦାର୍ଥ :** ( ଯଃ ) ଯେଉଁମାନେ ( ସଚମାନାୟ ) ସାଥିରେ ଥିବା ଲୋକଙ୍କ ପାଇଁ (ସଚାଭୁବେ) ସେବକ ପାଇଁ (ସଖ୍ୟେ) ମିତ୍ର ପାଇଁ (ପିତ୍ୱଃ ନ ଦଦାତି) ଅନ୍ନ ଦିଏ ନାହିଁ, (ସଃ ନ ସଖା) ସେ ପ୍ରକୃତ ମିତ୍ର ନୁହେଁ । (ଅସ୍ମାତ୍) ଏହି କୃପଣଠାରୁ (ଅପ ପ୍ରେୟାତ୍) ଦୂରେଇ ଯାଅ, କାରଣ (ତତ୍) ତାହା (ଓକଃ) ରହିବା ଯୋଗ୍ୟ ଘର (ନ ଅସ୍ତି) ନୁହେଁ । (ଅନ୍ୟଂ ପୃଣନ୍ତଂ) ଶତ୍ରୁ ମଧ୍ୟ ପାଳନ କଲେ, ଲୋକେ (ଅରଣଂ ଚିତ୍ ଇଚ୍ଛେତ୍) ଉତ୍ତମ ସ୍ୱାମୀ ପରି ଶ୍ରଦ୍ଧା କରନ୍ତି ।







—ଋଷି ଏଠାରେ 'ସଖା' ଶବ୍ଦର ଅର୍ଥ ବୁଝାଇଛନ୍ତି । ଯେଉଁ ବ୍ୟକ୍ତି ଅନ୍ୟର ବିଷମ ପରିସ୍ଥିତିରେ ସହାୟ ହେବା ପାଇଁ ଦୌଡ଼ିଆସେ, ସେ ସଖା ଅଟେ । ଅଭାବରେ ପଡ଼ିଥିବା ଦୁଃସ୍ଥ ବ୍ୟକ୍ତି, ପାଖରେ ରହି ସେବା ଶୁଶ୍ରୂଷା କରୁଥିବା ଅନୁଚର ଓ ସର୍ବଦା ଅଙ୍ଗ ସମାନ ରହୁଥିବା ସଂଗୀଙ୍କୁ ଯେ ଅନ୍ନଦାନ ନ କରେ ସେ ସଖା ନୁହେଁ । ଅନ୍ନଦାନ କରିବା ମୈତ୍ରୀର ଚିହ୍ନ । ଶତ୍ରୁ ମଧ୍ୟ ଅଭାବଗ୍ରସ୍ତ ହୋଇଥିଲେ ତାହାକୁ ଭୋଜନ ଦେଇ ଉଦାରତା ପ୍ରକାଶ କରିବା ବିଧେୟ । ଅନ୍ନଦାନ ଦ୍ୱାରା ଜୀବ ପ୍ରତି ଦୟା ଓ ଅନୁକମ୍ପା ଭାବନା ସୃଷ୍ଟି ହୁଏ ।

ସମର୍ଥ ହୋଇ ମଧ୍ୟ ଯେ ଦାନ ନ କରେ, ସେ କୃପଣ । ବଳ ଥାଇ ମଧ୍ୟ ଯେ ସାହାଯ୍ୟ ନ କରେ, ସେ ନିଷ୍ଠୁର । କୃପଣର ଗୃହ ଶ୍ମଶାନ ଅଟେ । ଜନବସତି ମଧ୍ୟରେ ଥାଇ ମଧ୍ୟ ତାହା ନଥିବା ପରି । ସାହାଯ୍ୟ, ଅନୁକମ୍ପା ପାଇଁ କେହି କେବେହେଲେ ସେ ଆଡ଼କୁ ଦୃଷ୍ଟିପାତ କରେ ନାହିଁ । ସହାନୁଭୂତିପାଇଁ ଯାହାର ହୃଦୟ ସର୍ବଦା ରୁଦ୍ଧ, ନିକଟରେ ଥାଇ ମଧ୍ୟ ସେଭଳି ବ୍ୟକ୍ତି ପ୍ରତିବେଶୀ ନୁହେଁ, ସଙ୍ଗରେ ରହୁଥିଲେ ମଧ୍ୟ ସେ ସଙ୍ଗୀ ନୁହେଁ । ଦୂରରେ ରହୁଥିବା ଅପରିଚିତ ଲୋକେ ମଧ୍ୟ ସହାନୁଭୂତି ଓ ସହୃଦୟତା ଯୋଗୁଁ ନିକଟର ହୋଇଯାଏ । ବେଦମନ୍ତ୍ର କହୁଛନ୍ତି ଯେ ଶତ୍ରୁ ମଧ୍ୟ ଅଭାବ ବେଳେ ଅନ୍ୟକୁ ସାହାଯ୍ୟ କଲେ ସେ ତାହାର ପ୍ରଭୁ ପରି ଭକ୍ତି ଓ ସମ୍ମାନର ଅଧିକାରୀ ହୁଏ ।

॥ ମଣ୍ଡଳ ୧୦, ସୂକ୍ତ ୧୧୭, ମନ୍ତ୍ର ୫ ॥

ଧନସମ୍ପଦ ରଥଚକ୍ର ପରି ଘୂରୁଥାଏ

ପୃଣୀୟାଦିନ୍ନାଧମାନାୟ ତବ୍ୟାନ୍

ଦ୍ରାଘୀୟାଂସମନୁ ପଶ୍ୟେତ ପନ୍ଥାମ୍ ।

ଓ ହି ବର୍ତ୍ତନ୍ତେ ରଥ୍ୟେବ ଚକ୍ରା—

ଽନ୍ୟମନ୍ୟମୁପ ତିଷ୍ଠନ୍ତ ରାୟଃ ॥

( ଭିକ୍ଷୁଃ । ଇନ୍ଦ୍ରଃ । ତ୍ରିଷ୍ଟୁପ୍ )

**ପଦପାଠ :** ପୃଣୀୟାତ୍ । ଇତ୍ । ନାଧମାନାୟ । ତବ୍ୟାନ୍ । ଦ୍ରାଘୀୟାଂସମ୍ । ଅନୁ । ପଶ୍ୟେତ । ପନ୍ଥାମ୍ । ଓଇତି । ହି । ବର୍ତ୍ତନ୍ତେ । ରଥ୍ୟାଇବ । ଚକ୍ରା । ଅନ୍ୟମ୍‌ଅନ୍ୟମ୍ । ଉପ । ତିଷ୍ଠନ୍ତ । ରାୟଃ ॥

**ପଦାର୍ଥ :** (ତବ୍ୟାନ୍) ବଳବାନ୍, ଧନବାନ୍ ବ୍ୟକ୍ତି (ନାଧମାନାୟ) ମାଗୁଥିବା ଲୋକପାଇଁ (ଇତ୍) ନିଶ୍ଚୟରେ (ପୃଣୀୟାତ୍) ପାଳନ କରୁ (ଦ୍ରାଘୀୟାଂସମ୍) ଅତିଦୀର୍ଘ (ପନ୍ଥାମ୍) ପଥକୁ (ଅନୁ ପଶ୍ୟେତ) ବିଚାର କରି ଦେଖୁ । (ରାୟଃ) ଧନସମ୍ପତ୍ତି (ଓ ହି ରଥ୍ୟା ଚକ୍ରା ଇବ) ନିଶ୍ଚୟରେ ରଥର ଚକ ପରି (ଆ ବର୍ତ୍ତନ୍ତେ) ଘୂରୁଥାଏ. (ଅନ୍ୟମ୍ ଅନ୍ୟମ୍) ଜଣକ ପରେ ଜଣକ ପାଖରେ (ଉପ ତିଷ୍ଠନ୍ତ) ରହୁଥାଏ ।





॥ ମଣ୍ଡଳ ୧୦, ସୂକ୍ତ ୧୧୭, ମନ୍ତ୍ର ୫ ॥

—ଗଡ଼ୁଥିବା ଗାଡ଼ିର ଅରଗୁଡ଼ିକୁ ଲକ୍ଷ୍ୟ କଲେ ଜଣାଯିବ, ଯେଉଁ ଅରଟି ଭୂମି ଉପରେ ରହେ, ମୁହୂର୍ତ୍ତକ ପରେ ତାହା ଅନ୍ୟତ୍ର ଘୂରିଯାଏ । ସେହିପରି ଧନସମ୍ପତ୍ତି ହାତକୁ ହାତ ହୋଇ ଚଞ୍ଚଳ ଗତି କରୁଥାଏ । ଧନର ଏହି ଚପଳ ଗତି ଫଳରେ ଆଜିର ଧନାଢ୍ୟ ବ୍ୟକ୍ତି କାଲି ନିଃସ୍ୱ ପାଲଟିଯାଏ । ଆଜିର ଭିକାରି କାଲି ଧନକୁବେର ହୋଇଯାଏ ।

ଧନ ଅସ୍ଥାୟୀ, ଅତଏବ ପ୍ରାପ୍ତ ଧନର ସଦୁପଯୋଗ କରିବା ବିଧେୟ । ପାଖରେ ଧନ ଥିବାବେଳେ ଅନ୍ୟର ଯଥାସାଧ୍ୟ ଉପକାର କରିବା ଶ୍ରେଷ୍ଠ କାର୍ଯ୍ୟ ଅଟେ । ଧନର ସଦ୍‌ବ୍ୟବହାରରେ ସୁଖ ଓ ଶାନ୍ତି ମିଳେ । ଅପବ୍ୟୟରୁ ଅଶାନ୍ତି ଓ ଅପକୀର୍ତ୍ତି ସୃଷ୍ଟି ହୁଏ । ଉପଯୁକ୍ତ ବ୍ୟବହାରରେ ନ ଆସି ଗନ୍ତାଘରେ ପଡ଼ି ରହିଥିବା ଧନ [illegible] । ଧନୀ ବ୍ୟକ୍ତି ଏହି ବନ୍ଧନରେ ବାନ୍ଧି ହୋଇ ସର୍ବଦା ଚିନ୍ତାମଗ୍ନ ରହେ ।

ଅଭାବଗ୍ରସ୍ତ ଲୋକର ପ୍ରାର୍ଥନାକୁ ଶୀଘ୍ର ଅସ୍ୱୀକାର କରିଦେବା ଉଚିତ ନୁହେଁ । ଦୀର୍ଘ ଦୃଷ୍ଟିରେ ବିଚାର କଲେ ଜଣାଯିବ ଯେ ଦିନେ ହାତରୁ ସମ୍ପତ୍ତି ଖସିଗଲେ ଆମେ ମଧ୍ୟ ସମ୍ବଳହୀନ ଓ ଅସମର୍ଥ ହୋଇପଡ଼ିବା । ଧନ ଆମ ପାଖରେ ଅଳ୍ପ ସମୟ ପାଇଁ ରହିଛି । ବେଶି ହେଲେ ତାହା ଜୀବନସାରା ପାଖରେ ରହିପାରେ; ପରନ୍ତୁ ମୃତ୍ୟୁଦ୍ୱାରା ଶେଷରେ ଆମେ ଧନଠାରୁ ବିଚ୍ଛିନ୍ନ ହେବା । ଯାହା ଆମ ଆତ୍ମାର ଅଙ୍ଗ ନୁହେଁ, ଅଥଚ ସାମୟିକ ରୂପେ ଆମ ଅଧିକାରରେ ଅଛି, ତଦ୍ୱାରା ଅନ୍ୟର ସେବା ହୋଇପାରିଲେ, ଆମ ଆତ୍ମାର ସଂସ୍କାର ବୃଦ୍ଧି ହେବ ।

॥ ମଣ୍ଡଳ ୧୦, ସୂକ୍ତ ୧୧୭, ମନ୍ତ୍ର ୬ ॥

ଧନ ଯେବେ ମରଣର କାରଣ ହୁଏ

ମୋଘମନ୍ନଂ ବିନ୍ଦତେ ଅପ୍ରଚେତାଃ
ସତ୍ୟଂ ବ୍ରବୀମି ବଧ ଇତ୍ ସ ତସ୍ୟ ।
ନାର୍ଯମଣଂ ପୁଷ୍ୟତି ନୋ ସଖାୟଂ
କେବଳାଘୋ ଭବତି କେବଳାଦୀ ॥

( ଭିକ୍ଷୁଃ । ଇନ୍ଦ୍ରଃ । ତ୍ରିଷ୍ଟୁପ୍ )

ପଦପାଠ : ମୋଘମ୍ । ଅନ୍ନମ୍ । ବିନ୍ଦତେ । ଅପ୍ରଚେତାଃ । ସତ୍ୟମ୍ । ବ୍ରବୀମି । ବଧଃ । ଇତ୍ । ସଃ । ତସ୍ୟ । ନ । ଅର୍ଯମଣମ୍ । ପୁଷ୍ୟତି । ନୋ ଇତି ସଖାୟମ୍ । କେବଳଽଅଘଃ । ଭବତି । କେବଳଽଆଦୀ ॥

ପଦାର୍ଥ : (ଅପ୍ରଚେତାଃ) ମୂର୍ଖ ପୁରୁଷ (ମୋଘଂ) ବିନା ପରିଶ୍ରମରେ, ବ୍ୟର୍ଥ ଭାବରେ ( ଅନ୍ନମ୍ ) ଧନ, ଅନ୍ନାଦିକୁ (ବିନ୍ଦତେ) ପ୍ରାପ୍ତ ହୁଏ। (ସତ୍ୟଂ) ସତ ( ବ୍ରବୀମି ) କହୁଛି ( ସଃ ) ସେହି ଧନ (ତସ୍ୟ) ତାହାର ( ବଧଃ ଇତ୍ ) ମରଣର କାରଣ ହୁଏ। ତାହା ( ଅର୍ଯମଣମ୍ ନ ପୁଷ୍ୟତି ) ଶିଷ୍ଟ ଲୋକଙ୍କୁ ପୋଷଣ କରେ ନାହିଁ ( ନ ସଖାୟଂ ) ମିତ୍ରମାନଙ୍କୁ ମଧ୍ୟ । ( କେବଳାଦୀ ) ଏକାକୀ ଭୋଜନ କରୁଥିବା ବ୍ୟକ୍ତି ( କେବଳାଘଃ ) ପାପର ଏକମାତ୍ର ଭାଗୀ (ଭବତି) ହୁଏ ।



ଋଗ୍‌ବେଦ ସୌରଭ

॥ ମଣ୍ଡଳ ୧୦, ସୂକ୍ତ ୧୧୭, ମନ୍ତ୍ର ୬ ॥

—କର୍ମ ନ କରି ଅଥବା କର୍ମରେ ଅବହେଳା କରି ବେତନ ଓ ଭୋଜନ ଗ୍ରହଣ କରୁଥିବା ବ୍ୟକ୍ତିଙ୍କୁ ବେଦମନ୍ତ୍ରରେ ମହାମୂର୍ଖ ବୋଲି କୁହାଯାଇଛି । ମାନବର ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ଏହିପରି ମନୋବୃତ୍ତି ବିଷମୟ ଅଟେ । ବେଦ କହନ୍ତି 'ସତ୍ୟଂ ବ୍ରବୀମି' ଅର୍ଥାତ୍ ଏହା ଏକ ମାମୁଲି ବିଷୟ ନୁହେଁ । ଏହା ଏପରି ସଂସ୍କାର ଯେ ଏଭଳି ମାଗଣା ଖାଇବା ଲୋକଙ୍କୁ ପ୍ରତିରୋଧ ନ କଲେ ଏହା ସମାଜରେ ସଂକ୍ରାମକ ଭାବରେ ବ୍ୟାପିଯାଏ ।

ଛଅ ଟଙ୍କା ଦେଇ ଦଶ ଟଙ୍କାର ପଦାର୍ଥ ଠକି ନେବା ବାହାଦୁରି ନୁହେଁ । ମାଗଣା ମିଳିଥିବା ପ୍ରତ୍ୟେକ ଟଙ୍କା ଭବିଷ୍ୟତରେ ନିଜ ନାଶର କାରଣ ହୁଏ । ଅନ୍ୟ କେହି ମୋର ଯେତିକି ମଙ୍ଗଳ କରୁଛି, ମୁଁ ଅନ୍ତତଃ ସେତିକି ପ୍ରତିଦାନ ପାଇଁ ଉଦ୍ୟମ କରିବି—ଏହା ଜୀବନର ପ୍ରଧାନ ଲକ୍ଷ୍ୟ ହେବା ଉଚିତ ।

ଅଦୃଷ୍ଟ ବା ପରୋକ୍ଷ ଭାବରେ ଆମ୍ଭେମାନେ ଅନ୍ୟଦ୍ୱାରା ଉପକୃତ ହେଉଁ । କାହାର ମଧୁର ରଚନା ପାଠକରି, କାହାର ବା ବିଜ୍ଞାନ-ଆବିଷ୍କାରକୁ ଉପଭୋଗ କରି ଆମ୍ଭେ ଲାଭବାନ୍ ହେଉଁ । ସେମାନେ ଏହାର ବିନିମୟରେ କିଛି ମାଗନ୍ତି ନାହିଁ । ଏଣୁ ଆମ୍ଭେମାନେ ସେମାନଙ୍କ ନିକଟରେ ଋଣୀ । ସେମାନଙ୍କ ଋଣ ପରିଶୋଧ କରିବାକୁ ହେଲେ, ଅନ୍ୟକୁ ଦାନ କରିବା ଉଚିତ । ବେଦ କହୁଛନ୍ତି—"ଏକାକୀ ଭୋଗ କରିବା ବ୍ୟକ୍ତି ଶେଷରେ ପାପ ଛଡ଼ା ଆଉ କିଛି ସଂଚୟ କରେ ନାହିଁ ।"

॥ ମଣ୍ଡଳ ୩, ସୂକ୍ତ ୮, ମନ୍ତ୍ର ୭ ॥

## ଦାନର ଅଧିକାରୀ

ଯେ ବୃକ୍ଣାସୋ ଅଧି କ୍ଷମି

ନିମିତାସୋ ଯତସ୍ରୁଚଃ ।

ତେ ନୋ ବ୍ୟନ୍ତୁ ବାର୍ଯଂ

ଦେବତ୍ରା କ୍ଷେତ୍ରସାଧସଃ ॥

( ବିଶ୍ୱାମିତ୍ର । ଯୂପାଃ । ଅନୁଷ୍ଟୁପ୍ )

**ପଦପାଠ :** ଯେ । ବୃକ୍ଣାସଃ । ଅଧି । କ୍ଷମି । ନିଽମିତାସଃ । ଯତଽସ୍ରୁଚଃ । ତେ । ନଃ । ବ୍ୟନ୍ତୁ । ବାର୍ଯଂ । ଦେବଽତ୍ରା । କ୍ଷେତ୍ରଽସାଧସଃ ॥

**ପଦାର୍ଥ :** (ଅଧି କ୍ଷମି) ପୃଥିବୀ ଉପରେ (ଦେବତ୍ରା) ଜ୍ଞାନୀ ଲୋକଙ୍କ ମଧ୍ୟରେ ( ଯେ ) ଯେଉଁମାନେ ( ବୃକ୍ଣାସଃ ) ବିକଳାଙ୍ଗ ଅଟନ୍ତି, ( ନିମିତାସଃ ) ଅଳ୍ପ ଆବଶ୍ୟକତା ରଖନ୍ତି, (ଯତସ୍ରୁଚଃ) ପ୍ରାଣ ଓ ଇନ୍ଦ୍ରିୟଗୁଡ଼ିକୁ ସଂଯମ କରନ୍ତି, (କ୍ଷେତ୍ର ସାଧସଃ) ଦେହ ସାଧନା କରନ୍ତି (ତେ) ସେମାନେ (ନଃ) ଆମ୍ଭମାନଙ୍କର (ବାର୍ଯମ୍) ସଂଚିତ ଧନକୁ (ବ୍ୟନ୍ତୁ) ପ୍ରାପ୍ତ ହୁଅନ୍ତୁ ।





॥ ମଣ୍ଡଳ ୩, ସୂକ୍ତ ୮, ମନ୍ତ୍ର ୭ ॥

—ବେଦ ଅନେକ ସ୍ଥଳରେ ଦାନର ମହିମା ଉପଦେଶ ଦେଇଛନ୍ତି । କହିଛନ୍ତି—'ଶତ ହସ୍ତରେ ଉପାର୍ଜନ କର ଏବଂ ସହସ୍ର ହସ୍ତରେ ବିତରଣ କର ।' ବୈଦିକ ସାହିତ୍ୟରେ ଦିବ୍ୟ ସ୍ୱଭାବର ଲୋକଙ୍କ ପାଇଁ 'ଇନ୍ଦ୍ରିୟ ଦମନ', ଆସୁରି ସ୍ୱଭାବର ଲୋକଙ୍କ ପାଇଁ 'ଦୟା' ଓ ମାନବୀ ସ୍ୱଭାବର ଲୋକଙ୍କ ନିମନ୍ତେ 'ଦାନ'ର ଉପଦେଶ ଦିଆଯାଇଅଛି । ଦାନଶୀଳ ମନୁଷ୍ୟ ଧୀରେ ଧୀରେ ଦେବକୋଟୀକୁ ଉନ୍ନୀତ ହୁଏ । ଦାନ ବିଷୟ ଆଲୋଚନା କରିବାବେଳେ ଦାତାଙ୍କୁ ଉପଦେଶ ଦିଆଯାଇଛି—'ଯେଉଁ ବ୍ୟକ୍ତି ଦାନ ପାଇବା ପାଇଁ ଯୋଗ୍ୟ, ପ୍ରଥମେ ତାହାଙ୍କୁ ଖୋଜିବାକୁ ଚେଷ୍ଟା କର ।'

ଚାରି ଶ୍ରେଣୀର ଲୋକଙ୍କୁ ଦାନର ଅଧିକାରୀ ବୋଲି ବର୍ଣ୍ଣନା କରାଯାଇଛି ।

(କ) ଯେଉଁମାନେ ପଙ୍ଗୁ, ବିକଳାଙ୍ଗ । ଏମାନେ ଅନ୍ୟର ବିନା ସହାୟତାରେ ବଞ୍ଚିପାରନ୍ତି ନାହିଁ ।

(ଖ) ଯେଉଁମାନଙ୍କର ଆବଶ୍ୟକତା ଅଳ୍ପ ଅଟେ । ଏମାନେ ଦାନ ପାଇଲେ କଦାପି ତାହାର ଅପବ୍ୟୟ କରନ୍ତି ନାହିଁ ।

(ଗ) ଯେଉଁମାନେ ଦାନ ନେଇ ବ୍ୟବହାର କରିବା ପରେ ବଳିଥିବା ପଦାର୍ଥକୁ ନିଜେ ସାଇତି ନ ରଖି ଅନ୍ୟ ଅସହାୟ ଲୋକଙ୍କୁ ଯଥା ସମୟରେ ବିତରଣ କରନ୍ତି ।

(ଘ) ଯେଉଁମାନେ ଶିକ୍ଷା, ଧର୍ମ, ଅନୁଷ୍ଠାନାଦି ଲୋକକଲ୍ୟାଣକାରୀ ଅନୁଷ୍ଠାନ ପାଇଁ ଭିକ୍ଷା କରନ୍ତି ।

॥ ମଣ୍ଡଳ ୨, ସୂକ୍ତ ୨୮, ମନ୍ତ୍ର ୯ ॥

ଋଣୀ ହେବା ନାହିଁ

ପର ଋଣା ସାବୀରଧ ମତ୍‌କୃତାନି

ମାହଂ ରାଜନ୍ନନ୍ୟକୃତେନ ଭୋଜମ୍ ।

ଅବ୍ୟୁଷ୍ଟା ଇନ୍ନୁ ଭୂୟସୀରୁଷାସ

ଆ ନୋ ଜୀବାନ୍ ବରୁଣ ତାସୁ ଶାଧି ॥

( ଗୃତ୍ସମଦଃ । ବରୁଣଃ । ତ୍ରିଷ୍ଟୁପ୍ )

ପଦପାଠ : ପରା । ଋଣା । ସାବୀଃ । ଅଧ । ମତ୍‌ଽକୃତାନି । ମା । ଅହମ୍ । ରାଜନ୍ । ଅନ୍ୟଽକୃତେନ । ଭୋଜମ୍ । ଅବିଽଉଷ୍ଟାଃ । ଇତ୍ । ନୁ । ଭୂୟସୀଃ । ଉଷସଃ । ଆ । ନଃ । ଜୀବାନ୍ । ବରୁଣ । ତାସୁ । ଶାଧି ॥

ପଦାର୍ଥ : (ମତ୍‌କୃତାନି ଋଣାନି) ମୁଁ କରିଥିବା ଋଣ (ପରା ସାବୀଃ) ଦୂର କରନ୍ତୁ । (ଅହଂ) ମୁଁ (ଅନ୍ୟକୃତେନ) ଅନ୍ୟର ପରିଶ୍ରମଦ୍ୱାରା ଉପାର୍ଜିତ (ମା ଭୋଜମ୍) ଭୋଗ କରିବି ନାହିଁ । (ନୁ) ନିଶ୍ଚୟରେ (ଭୂୟସୀଃ) ବହୁତ (ଉଷାସଃ) ପ୍ରଭାତ ବେଳା (ଅବ୍ୟୁଷ୍ଟାଃ ଇତ୍) ଋଣ ଚିନ୍ତାରେ ନଷ୍ଟ ହୁଏ । (ବରୁଣ ) ହେ ସର୍ବଶ୍ରେଷ୍ଠ । (ତାସୁ) ସେହି ଚିନ୍ତାରେ (ନଃ) ଆମ୍ଭମାନଙ୍କର (ଜୀବାନ୍) ଜୀବନକୁ (ଆ ଶାଧି) ଶିକ୍ଷିତ କର ।





॥ ମଣ୍ଡଳ ୨, ସୂକ୍ତ ୨୮, ମନ୍ତ୍ର ୯ ॥

—ବେଦ କହୁଛନ୍ତି—'ଅନ୍ୟ କୃତେନ ମା ଭୋଜମ୍' ଅର୍ଥାତ୍ ଅନ୍ୟର ଉପାର୍ଜନକୁ ଭୋଗ କରିବି ନାହିଁ । ଅଭାବ ଘଟିଲେ ଅନ୍ୟଠାରୁ ମାଗି ଆଣିବି, ଋଣ କରିବି, ପରନ୍ତୁ ଋଣ ପରିଶୋଧ କରିଦେବି— ଏହି ସଂକଳ୍ପ ନେଇ ମାଗିବି । ପରିଶୋଧ କରିବା ପାଇଁ ଆମରଣ ଚେଷ୍ଟା କରିବି । ଋଣୀ ହୋଇ ମରିବି ନାହିଁ ।

ଋଣ କରି ଘିଅ ଖାଇବା ଅଭିଳାଷ ବୈଦିକ ନୁହେଁ । ଋଣ ପରିଶୋଧ ପାଇଁ ଚିନ୍ତା ନ କରି ଋଣ କରିବା ଅବୈଦିକ । କେତେକ ବ୍ୟକ୍ତି ନେଇଥିବା ଋଣକୁ ଅସ୍ୱୀକାର କରିବାପାଇଁ ଅଦାଲତକୁ ଯାଆନ୍ତି । ନିଜକୁ ଦେବାଳିଆ ବା ସର୍ବସ୍ୱାନ୍ତ ବୋଲି ଆଇନର ଆଶ୍ରୟରେ ଘୋଷଣା କରନ୍ତି । ବେଦ କହୁଛନ୍ତି — "ହେ ପ୍ରଭୋ ! ଜୀବନରେ ଏଭଳି କୁଶିକ୍ଷା ଓ କୁବିଚାରରେ ଆକ୍ରାନ୍ତ ହେବି ନାହିଁ ।" ଋଣୀ ଋଣଚିନ୍ତାରେ ରାତି ଦିନ ଓ ରାତି ମଧ୍ୟରେ ପାର୍ଥକ୍ୟ ବୁଝି-ପାରେ ନାହିଁ । ଋଣରୁ ମୁକ୍ତି ପାଇଁ ରାତିସାରା ଚିନ୍ତାମଗ୍ନ ରହେ । ବ୍ରହ୍ମ-ମୁହୂର୍ତ୍ତ ବା ଉଷାକାଳ ହେଉଛି ବ୍ରହ୍ମଚିନ୍ତନର ସମୟ । ଏହି ସମୟରେ ଦିବ୍ୟାନନ୍ଦ ଅନୁଭୂତ ହୁଏ । ଋଣୀ ଲୋକ ଉଷାକାଳର ମାଧୁର୍ଯ୍ୟ ଉପଭୋଗ କରିପାରେ ନାହିଁ । ଋଣଚିନ୍ତା ସେତେବେଳେ ମଧ୍ୟ ତାକୁ ଘାରୁଥାଏ ।

॥ ମଣ୍ଡଳ ୧୦, ସୂକ୍ତ ୮୭, ମନ୍ତ୍ର ୧୬ ॥

ମାଂସଭକ୍ଷଣ ନିଷେଧ

ଯଃ ପୌରୁଷେୟେଣ କ୍ରବିଷା ସମଙ୍‌କ୍ତେ

ଯୋ ଅଶ୍ୱ୍ୟେନ ପଶୁନା ଯାତୁଧାନଃ ।

ଯୋ ଅଘ୍ନ୍ୟାୟା ଭରତି କ୍ଷୀରମଗ୍ନେ

ତେଷାଂ ଶୀର୍ଷାଣି ହରସାପି ବୃଶ୍ଚ ॥

( ପାୟୁର୍ଭାରଦ୍ୱାଜଃ । ରକ୍ଷୋହାଗ୍ନିଃ । ତ୍ରିଷ୍ଟୁପ୍ )

**ପଦପାଠ :** ଯଃ । ପୌରୁଷେୟେଣ । କ୍ରବିଷା । ସମ୍‌ଅଙ୍‌କ୍ତେ । ଯଃ । ଅଶ୍ୱ୍ୟେନ । ପଶୁନା । ଯାତୁଽଧାନଃ । ଯଃ । ଅଘ୍ନ୍ୟାୟାଃ । ଭରତି । କ୍ଷୀରମ୍ । ଅଗ୍ନେ । ତେଷାମ୍ । ଶୀର୍ଷାଣି । ହରସା । ଅପି । ବୃଶ୍ଚ ॥

**ପଦାର୍ଥ :** (ଯଃ) ଯେ (ଯାତୁଧାନଃ) ଅନ୍ୟମାନଙ୍କୁ ପୀଡ଼ା ଦେଇ (ପୌରୁଷେୟେଣ କ୍ରବିଷା) ମନୁଷ୍ୟ ମାଂସର ବନ୍ଧନରେ (ସମ୍ ଅଂକ୍ତେ) ଆରାମ ପାଏ, (ଯଃ) ଯେ (ଅଶ୍ୱ୍ୟେନ ପଶୁନା ସମ୍ ଅଂକ୍ତେ) ଘୋଡ଼ା ପରି ବେଗଶାଳୀ ପଶୁ ଦ୍ୱାରା ନିଜେ ଭୋଗ କରେ, (ଯଃ) ଯେ (ଅଘ୍ନ୍ୟାୟାଃ କ୍ଷୀରଂ ଭରତ) ଗାଈ କ୍ଷୀର ଭକ୍ଷଣ କରେ, (ଅଗ୍ନେ) ହେ ନେତା ! (ତେଷାଂ) ସେମାନଙ୍କର (ଶୀର୍ଷାଣି) ମସ୍ତକ (ହରସାପି ବୃଶ୍ଚ) ତେଜସ୍ୱୀନ୍ ଶସ୍ତ୍ରଦ୍ୱାରା ନଷ୍ଟଭ୍ରଷ୍ଟ କରନ୍ତୁ ।





॥ ମଣ୍ଡଳ ୧୦, ସୂକ୍ତ ୮୭, ମନ୍ତ୍ର ୧୬ ॥

—ଯେଉଁ ମନୁଷ୍ୟ ନିଜର ରସନାତୃପ୍ତି ପାଇଁ ଅନ୍ୟ ପ୍ରାଣୀର ମାଂସ ସେବନ କରେ, ସେ ଅପରାଧ କରେ । ଯେ ନିଜର ଦେହପୁଷ୍ଟି ପାଇଁ ଅନ୍ୟ ଦେହକୁ ବଳୀ ଦିଏ, ସେ ପାପ କରେ । ଜୀବନ-ଧାରଣ ପାଇଁ ଅନ୍ୟ ଜୀବନକୁ ନଷ୍ଟ କରିବାର ନୈତିକ ଅଧିକାର କାହାରି ନାହିଁ ।

ମନୁଷ୍ୟ ବୁଦ୍ଧିମାନ୍ ଓ ସର୍ବଶ୍ରେଷ୍ଠ ଜୀବ । ଜୀବଜଗତରେ କେବଳ ତାହାର ହିଁ କର୍ତ୍ତବ୍ୟଜ୍ଞାନ ଥାଏ । ସର୍ବଶ୍ରେଷ୍ଠ ହୋଇଥିବାରୁ ମନୁଷ୍ୟ ଅନ୍ୟ ଜୀବଙ୍କର ଅଭିଭାବକ ଅଟେ । ଅନ୍ୟ ପ୍ରାଣୀଙ୍କର ମଙ୍ଗଳ ପାଇଁ ତାହାର ଦାୟିତ୍ୱ ରହିଛି । ନିଜର ସୁଖସ୍ୱାଚ୍ଛନ୍ଦ୍ୟବନ୍ଧନମଧ୍ୟରେ ମନୁଷ୍ୟ ଅନ୍ୟମାନଙ୍କର ମଙ୍ଗଳବିଧାନ କରିପାରେ ।

ଅନ୍ୟମାନଙ୍କୁ ଦୁଃଖୀ କରି ନିଜେ ସୁଖୀ ହେବା ମନୁଷ୍ୟର କର୍ତ୍ତବ୍ୟ ନୁହେଁ । ନିଜର ଲୋଭଲାଳସାରେ ଅନ୍ୟର ଉପଭୋଗକୁ ଛିନ୍ନ କରିବା ମାନବୋଚିତ କର୍ମ ନୁହେଁ । ପଶୁ ପ୍ରତି ହିଂସା କରିବା ଦ୍ୱାରା ମନୁଷ୍ୟ ପଶୁର ବଡ଼ଭାଇ ହୁଏ ଅର୍ଥାତ୍ ଅଧିକ ହିଂସ୍ରକ ପଶୁ ପାଲଟିଯାଏ । ତାହା ପ୍ରତି ଦୟାଶୀଳ ହେବାଦ୍ୱାରା ମନୁଷ୍ୟ ତା'ର ଗୌରବ ଅର୍ଜନ କରେ । ବେଦମନ୍ତ୍ରରେ ଅନ୍ୟର ମାଂସ ସେବନ କରିବା ଦଣ୍ଡନୀୟ ଅପରାଧ ବୋଲି କୁହାଯାଇଛି । ଏପରିକି ବାଛୁରି ପାଇଁ ଦୁଧ ନ ଛାଡ଼ି, ସବୁ ଦୁଧତକ ଦୁହିଁନେବା ଅକ୍ଷମଣୀୟ ଅପରାଧ ଅଟେ ।

॥ ମଣ୍ଡଳ ୮, ସୂକ୍ତ ୨, ମନ୍ତ୍ର ୧୨ ॥

ମଦ୍ୟପର ଅଶ୍ଳୀଳତା

ହୃତ୍ସୁ ପୀତାସୋ ଯୁଧ୍ୟନ୍ତେ

ଦୁର୍ମଦାସୋ ନ ସୁରାୟାମ୍ ।

ଊଧର୍ନ ନଗ୍ନା ଜରନ୍ତେ ॥

(ମେଧାତିଥିଃ କାଣ୍ୱଃ । ଇନ୍ଦ୍ରଃ । ଗାୟତ୍ରୀ)

ପଦପାଠ : ହୃତ୍‌ସୁ । ପୀତାସଃ । ଯୁଧ୍ୟନ୍ତେ । ଦୁଃମଦାସଃ । ନ । ସୁରାୟାମ୍ । ଊଧଃ । ନ । ନଗ୍ନାଃ । ଜରନ୍ତେ ॥

ପଦାର୍ଥ : (ନ) ଯେଉଁପରି (ଦୁର୍ମଦାସଃ) ଦୁଷ୍ଟ, ଉଦଣ୍ଡ ବ୍ୟକ୍ତି (ଯୁଧ୍ୟନ୍ତେ) ପରସ୍ପର ମଧ୍ୟରେ କଳହ କରନ୍ତି (ହୃତ୍ସୁ) ମନ ମୁତାବକ (ସୁରାୟାମ୍ ପୀତାସଃ) ମଦ୍ୟ ସେବନ କରୁଥିବା ଲୋକେ (କଳହ କରନ୍ତି) (ନଗ୍ନାଃ ନ) ସେହିପରି ଉଲଗ୍ନପ୍ରାୟ (ଊଧଃ) ସାରା ରାତ (ଜରନ୍ତେ) ଉଜାଗର ରହନ୍ତି ।





॥ ମଣ୍ଡଳ ୮, ସୂକ୍ତ ୨, ମନ୍ତ୍ର ୧୨ ॥

—ମାଦକ ଦ୍ରବ୍ୟ ସେବନ କଲେ ମନୁଷ୍ୟର ବୁଦ୍ଧି ନଷ୍ଟ ହୁଏ । ବୁଦ୍ଧିନାଶ ଫଳରେ ମନୁଷ୍ୟ-ଉପାଧି ସମାପ୍ତ ହୋଇଯାଏ । ମନୁଷ୍ୟ ନିଜ ଲକ୍ଷ୍ୟ ପଶୁ ପରି ବ୍ୟବହାର କରେ, ଉଦ୍‌ଭ୍ରାନ୍ତ ଓ ଉନ୍ମତ୍ତ ହୁଏ । ବିବିଧ ଆବେଗର ବଶବର୍ତ୍ତୀ ହୋଇ ପଶୁଠାରୁ ମଧ୍ୟ ହୀନ ଆଚରଣ କରେ । ମନ୍ତ୍ରରେ ମଦ୍ୟପର କେତୋଟି ପାଶବିକ ଅବସ୍ଥା ବର୍ଣ୍ଣିତ ହୋଇଛି ।

ପଶୁମାନେ କୌଣସି କାରଣବଶତଃ ନିଜ ନିଜ ମଧ୍ୟରେ କଳହ କରନ୍ତି । ପରନ୍ତୁ ମଦ୍ୟପମାନେ କାରଣ ନ ଥାଇ ମଧ୍ୟ ପରସ୍ପର କଳହ ଆରମ୍ଭ କରନ୍ତି । ଏମାନେ ବାଟଘାଟରେ ଯାଉଥିବା ନିର୍ଦ୍ଦୋଷ ଲୋକଙ୍କୁ ଗାଳିଗୁଲଜ ଓ ମାଡ଼ପିଟ କରନ୍ତି । ମଦ୍ୟପାନ କରିବା ପରେ ମନୁଷ୍ୟର ଭୟ ଓ ଲଜ୍ଜା ନଷ୍ଟ ହୋଇଯାଏ । ଫଳତଃ ସେ ମୁହୂର୍ତ୍ତକ ମଧ୍ୟରେ ନିନ୍ଦନୀୟ କର୍ମରେ ପ୍ରବୃତ୍ତ ହୁଏ । ଅତ୍ୟନ୍ତ ସମ୍ମାନାସ୍ପଦ ବ୍ୟକ୍ତି ସହିତ ଅସମ୍ମାନସୂଚକ ବ୍ୟବହାର କରେ । ସନ୍ତାନସନ୍ତତିଙ୍କ ସମ୍ମୁଖରେ ଅଶୋଭନୀୟ କର୍ମ କରେ ।

ମଦ୍ୟପ ଅର୍ଦ୍ଧ ରାତରେ ପଶୁପରି ଉଲଗ୍ନ ହୋଇ ପଡ଼ିରହେ । ତାହାର ଲଜ୍ଜା ଓ ସମ୍ମାନଜ୍ଞାନ ନ ଥାଏ । ମନୁଷ୍ୟଙ୍କ ପରି ଧୀରସ୍ଥିର କଥାବାର୍ତ୍ତା କରେ ନାହିଁ । ପଶୁଙ୍କ ପରି ଗର୍ଜନ କରୁଥାଏ । ରାତସାରା ରଡ଼ି ରଡ଼ି ଘରଲୋକଙ୍କୁ ଶୁଆଇଦିଏ ନାହିଁ ।

॥ ମଣ୍ଡଳ ୧୦, ସୂକ୍ତ ୩୪, ମନ୍ତ୍ର ୪ ॥

ଜୁଆଖୋରର ଦୁର୍ଦ୍ଦଶା

ଅନ୍ୟେ ଜାୟାଂ ପରି ମୃଶନ୍ତ୍ୟସ୍ୟ

ଯସ୍ୟାଗୃଧଦ୍ବେଦନେ ବାଜ୍ୟକ୍ଷଃ ।

ପିତା ମାତା ଭ୍ରାତର ଏନମାହୁ-

ର୍ନ ଜାନୀମୋ ନୟତା ବଦ୍ଧମେତମ୍ ॥

(କବଷ ଐଳୂଷ ଅକ୍ଷୋ ମୌଜବାନ୍ ବା । ଅକ୍ଷକିତବନିନ୍ଦା । ତ୍ରିଷ୍ଟୁପ୍)

ପଦପାଠ : ଅନ୍ୟେ । ଜାୟାମ୍ । ପରି । ମୃଶନ୍ତି । ଅସ୍ୟ । ଯସ୍ୟ । ଅଗୃଧତ୍ । ବେଦନେ । ବାଜୀ । ଅକ୍ଷଃ । ପିତା । ମାତା । ଭ୍ରାତରଃ । ଏନମ୍ । ଆହୁଃ । ନ । ଜାନୀମଃ । ନୟତ । ବଦ୍ଧମ୍ । ଏତମ୍ ॥

ପଦାର୍ଥ : (ଯସ୍ୟ ବେଦନେ) ଯାହାର ଧନକୁ (ବାଜୀ ଅକ୍ଷଃ) ଜୁଆଖେଳରୂପୀ ଆବେଗପୂର୍ଣ୍ଣ ବ୍ୟସନ (ଅଗୃଧତ୍) ଲୁବ୍ଧ କରେ, (ଅସ୍ୟ ଜାୟାମ୍) ଏହାର ପତ୍ନୀକୁ (ଅନ୍ୟେ ପରି ମୃଶନ୍ତି) ଅନ୍ୟ ଲୋକେ, ଶତ୍ରୁମାନେ ବଦ୍ରୂପ କରନ୍ତି । (ମାତା ପିତା ଭ୍ରାତରଃ ଏନମ୍ ଆହୁଃ) ମାତା ପିତା ଓ ଭାଇ ଜୁଆଡ଼ୀକୁ ଲକ୍ଷ୍ୟ କରି କହନ୍ତି (ନ ଜାନୀମଃ) ଏହାକୁ ଆମ୍ଭେମାନେ ଜାଣୁନାହିଁ, (ଏତଂ ବଦ୍ଧଂ ନୟତ) ଏହାକୁ ବାନ୍ଧି କରି ନେଇଯାଅ ।





॥ ମଣ୍ଡଳ ୧୦, ସୂକ୍ତ ୩୪, ମନ୍ତ୍ର ୪ ॥

—ଆଲୋଚ୍ୟ ସୂକ୍ତର ଅନ୍ୟ ଏକ ମନ୍ତ୍ରରେ ଜୁଆଖୋର ଅତ୍ୟନ୍ତ ବ୍ୟଥିତ ହୋଇ ପ୍ରଳାପ କରେ—"ମୁଁ ଗୋଟିଏ ବୁଢ଼ା ଘୋଡ଼ା । କେହି ମୋର ଆଦର ଓ ଯତ୍ନ କରନ୍ତି ନାହିଁ । ମୁଁ ଗୋଟିଏ ଛିଣ୍ଡା ଲୁଗା । ଏହାକୁ କେହି ସାଇତ ରଖିବାକୁ ଚାହାନ୍ତି ନାହିଁ । ମୁଁ ଅରକ୍ଷିତ । ସଂସାରରେ କେହି ମୋତେ ନିଜର ବୋଲି କହନ୍ତି ନାହିଁ ।"

ପ୍ରସ୍ତୁତ ମନ୍ତ୍ରରେ ଜୁଆଡ଼ୀର ଅନ୍ୟ ଦୁର୍ଦ୍ଦଶା ବର୍ଣ୍ଣିତ ହୋଇଛି । ସେ ସ୍ୱୟଂ ଅରକ୍ଷିତ ଓ ଅସହାୟ, ତାହାର ପତ୍ନୀର ଅବସ୍ଥା ଅଧିକ ଶୋଚନୀୟ । ଜୀବନଯାତ୍ରାରେ ପତି ଓ ସାଥୀ ବୋଲି ଯାହାର ହାତ ଧରିଥିଲା, ସେ ଆଉ ନିଜର ହୋଇ ନାହିଁ । ଜୁଆଡ଼ୀର ଜୁଆଖେଳ ପତ୍ନୀଠାରୁ ମଧ୍ୟ ଅଧିକ ପ୍ରିୟ । ତାହାର ପତ୍ନୀ ଏକ ପ୍ରକାର ବିଧବା । ଲୋକେ ତାହାକୁ ସ୍ୱାମୀର ହୀନ କର୍ମ ପାଇଁ ଘୃଣା ଓ ପରିହାସ କରନ୍ତି ।

ଆପଦ, ବିପଦ ଓ ରୋଗବେଳେ ଆତ୍ମୀୟମାନେ ସାହାଯ୍ୟ ଓ ସାନ୍ତ୍ୱନା ଦେବା ପାଇଁ ଆସନ୍ତି । ପରନ୍ତୁ ଜୁଆଖୋର ଏପରି ଏକ ଭାଗ୍ୟହୀନ ଲୋକ ଯେ କେହି ହେଲେ ତା' ପାଖକୁ ଆସିବା ପାଇଁ ପ୍ରସ୍ତୁତ ନୁହନ୍ତି । ବିପଦବେଳେ ମଧ୍ୟ ବାପା, ମା, ଭାଇ, ବନ୍ଧୁ କହନ୍ତି—"ଏହାକୁ ଆମେ ଚିହ୍ନି ନାହୁଁ । ଦୋଷ କରିଥିଲେ, ଏହାକୁ ବାନ୍ଧିନିଅ । ଆମେ ଏହାର ଜାମିନ ରହିବୁ ନାହିଁ ।" ଏହି ରୂପେ ଜୁଆଖୋର ନିଜ ଘରଲୋକଙ୍କ ଦ୍ୱାରା ନିର୍ବାସନ ଭୋଗ କରେ ।

॥ ମଣ୍ଡଳ ୮, ସୂକ୍ତ ୪୮, ମନ୍ତ୍ର ୧୪ ॥

## ଅଳସୁଆ ଓ ଗପୁଡ଼ି ହେବୁ ନାହିଁ

ତ୍ରାତାରୋ ଦେବା ଅଧି ବୋଚତା ନୋ

ମା ନୋ ନିଦ୍ରା ଈଶତ ମୋତ ଜଳ୍ପିଃ ।

ବୟଂ ସୋମସ୍ୟ ବିଶ୍ୱହ ପ୍ରିୟାସଃ

ସୁବୀରାସୋ ବିଦଥମା ବଦେମ ॥

(ପ୍ରଗାଥଃ କାଣ୍ୱଃ । ସୋମଃ । ତ୍ରିଷ୍ଟୁପ୍)

**ପଦପାଠ :** ତ୍ରାତାରଃ । ଦେବାଃ । ଅଧି । ବୋଚତ । ନଃ । ମା । ନଃ । ନିଦ୍ରା । ଈଶତ । ମା । ଉତ । ଜଳ୍ପିଃ । ବୟମ୍ । ସୋମସ୍ୟ । ବିଶ୍ୱହ । ପ୍ରିୟାସଃ । ସୁବୀରାସଃ । ବିଦଥମ୍ । ଆ ବଦେମ ॥

**ପଦାର୍ଥ :** (ତ୍ରାତାରଃ ଦେବାଃ) ହେ ରକ୍ଷକ ବିଦ୍ୱାନ୍‌ଗଣ ! (ନଃ ଅଧିବୋଚତ) ଆମ୍ଭମାନଙ୍କୁ ଅଧିକାରପୂର୍ବକ ଉପଦେଶ ଦିଅ, (ନଃ) ଆମ୍ଭମାନଙ୍କ ଦେହରେ (ନିଦ୍ରା) ଆଳସ୍ୟ (ମା ଈଶତ) ଶାସନ ନ କରୁ (ଉତ) ଏବଂ (ଜଳ୍ପିଃ ମା) ବୃଥା ବାକ୍ୟାଳାପ ଅଧିକାର ନ କରୁ । (ବିଶ୍ୱହ) ହେ ସକଳଦୁର୍ଗତିନାଶକ ! (ବୟଂ) ଆମ୍ଭେମାନେ (ସୋମସ୍ୟ ପ୍ରିୟାସଃ) ସୋମରୂପ ପ୍ରଭୁଙ୍କ ପ୍ରିୟ (ସୁବୀରାସଃ) ଉତ୍ତମ ସନ୍ତାନଯୁକ୍ତ ହୋଇ (ବିଦଥମ୍) ଜ୍ଞାନକୁ (ଆ ବଦେମ) ସର୍ବଦା ପ୍ରଚାର କରୁଁ ।





॥ ମଣ୍ଡଳ ୮, ସୂକ୍ତ ୪୮, ମନ୍ତ୍ର ୧୪ ॥

—ମନୁଷ୍ୟ ଅଳସୁଆ ହୁଏ କାହିଁକି ? ମନୁଷ୍ୟ କାହିଁକି ଗପୁଡ଼ି ପାଲଟିଯାଏ ? ଏହାର ସରଳ ଉତ୍ତର ହେଉଛି ଯେ ମନୁଷ୍ୟ ମନୁଷ୍ୟତ୍ୱ ପ୍ରତି ଉଦାସୀନ ହେଲେ ଆଳସ୍ୟପରାୟଣ ଓ ବ୍ୟର୍ଥଜଳ୍ପୀ ହୋଇଯାଏ । ମନୁଷ୍ୟତାକୁ ଏହିଭଳି ଉପେକ୍ଷା କରିବା ଦ୍ୱାରା ମନୁଷ୍ୟଜୀବନ ସାର୍ଥକ ହୁଏ ନାହିଁ ।

ଏଠାରେ ବିଦ୍ୱାନ୍ ଉପଦେଶକମାନଙ୍କୁ ପ୍ରାର୍ଥନା କରାଯାଇଅଛି— "ଆପଣମାନେ ମନୁଷ୍ୟସମାଜର ହିତୈଷୀ ଓ ରକ୍ଷକ ଅଟନ୍ତି । ଚେଷ୍ଟାଶୂନ୍ୟତା ଓ ବାଣୀର ସଂଯମହୀନତା ମନୁଷ୍ୟକୁ ନଷ୍ଟ କରିଦିଏ । ଏଥିରୁ ଉଦ୍ଧାର ପାଇବା ପାଇଁ ଆପଣମାନେ ମନୁଷ୍ୟଙ୍କୁ ସଂସ୍କାର କରନ୍ତୁ ।"

ଅଳସୁଆ ଲୋକର ସ୍ୱାସ୍ଥ୍ୟ ଭଲ ନ ଥାଏ । ପୁରୁଷାର୍ଥପାଇଁ ଆଗ୍ରହ ନ ଥାଏ । ଜୀବନ ଜଡ଼ପ୍ରାୟ ହୋଇଯାଏ । ଶ୍ରେଷ୍ଠ ଜୀବନର ବିକାଶପାଇଁ ଆଳସ୍ୟ ତ୍ୟାଗ କରିବାକୁ ହେବ । ଆଳସ୍ୟ ଦୂର କରିବା ସଙ୍ଗେ ସଙ୍ଗେ କ୍ରିୟାଶୀଳ ହେବା ଉଚିତ । କ୍ରିୟାପାଇଁ ବିଚାର ଆବଶ୍ୟକ । ବିଚାର ଅନୁସାରେ ବଚନ ବ୍ୟବହାର କରିବା ବିଧେୟ । ବୃଥା ବକ୍ ବକ୍ ହେବା ଦ୍ୱାରା ସମୟର ଅପବ୍ୟୟ ସଙ୍ଗେ ସଙ୍ଗେ ନାନା କଳହର ସୂତ୍ରପାତ ହୁଏ । କୁହାଯାଇଛି ବାକ୍ ଇନ୍ଦ୍ରିୟକୁ ଦମନ କରିପାରିଲେ ମନୁଷ୍ୟ ନିଜକୁ ଅଧାଅଧି ସଂଯମୀ କରିପାରେ । ନିଦ୍ରାଳୁର ମନ କ୍ଷୀଣ ହୋଇଯାଏ । ଗପୁଡ଼ିର ମନ ତୀବ୍ର ହୋଇଉଠେ । ପରନ୍ତୁ କର୍ମଠ ଓ ଅଳ୍ପଭାଷୀ ବ୍ୟକ୍ତିର ମନ ଶାନ୍ତ, ସ୍ଥିର ଓ ଶିବସଙ୍କଳ୍ପଯୁକ୍ତ ହୁଏ ।

।। ମଣ୍ଡଳ ୮, ସୂକ୍ତ ୩୩, ମନ୍ତ୍ର ୧୯ ।।

ନାରୀର ଚାଲିଚଳନ

ଅଧଃ ପଶ୍ୟସ୍ୱ ମୋପରି

ସନ୍ତରାଂ ପାଦକୌ ହର ।

ମା ତେ କଶପ୍ଲକୌ ଦୃଶନ୍

ସ୍ତ୍ରୀ ହି ବ୍ରହ୍ମା ବଭୂବିଥ ॥

(ମେଧାତିଥିଃ କାଣ୍ୱଃ । ଇନ୍ଦ୍ର । ଅନୁଷ୍ଟୁପ୍)

ପଦପାଠ : ଅଧଃ । ପଶ୍ୟସ୍ୱ । ମା । ଉପରି । ସମ୍‌ଽତରାମ୍ । ପାଦକୌ । ହର । ମା । ତେ । କଶଽପ୍ଲକୌ । ଦୃଶନ୍ । ସ୍ତ୍ରୀ । ହି । ବ୍ରହ୍ମା । ବଭୂବିଥ ॥

ପଦାର୍ଥ : ହେ ନାରି ! (ଅଧଃ ପଶ୍ୟ) ତଳକୁ ଚାହଁ, (ମା ଉପରି) ଉପରକୁ ଚାହଁ ନାହିଁ (ପାଦକୌ ସନ୍ତରାଂ ହର) ଦୁଇପାଦକୁ ଠିକ୍ ଭାବରେ ଏକାଠି ରଖ । (ତେ କଶପ୍ଲକୌ) ତୁମର ଦୁଇ ଜଙ୍ଘକୁ (ମା ଦୃଶନ୍) ଦେଖା ନ ଯାଉ (ହି) ଯେହେତୁ (ସ୍ତ୍ରୀ) ସ୍ତ୍ରୀ (ବ୍ରହ୍ମା) ନିର୍ମାଣକର୍ତ୍ତ୍ରୀ (ବଭୂବିଥ) ହୋଇଛ ।





।। ମଣ୍ଡଳ ୮, ସୂକ୍ତ ୩୩, ମନ୍ତ୍ର ୧୯ ।।

ନାରୀର ଚାଲିଚଳନ ପାଇଁ ତିନୋଟି ମହତ୍ତ୍ୱପୂର୍ଣ୍ଣ ଉପଦେଶ ଦିଆଯାଇଅଛି । ଚାଲିବାବେଳେ ତାହାର ଦୃଷ୍ଟି ତଳକୁ ରହିବା ଉଚିତ । ତଳକୁ ଦୃଷ୍ଟି ରଖିଲେ ଲଜ୍ଜା, ଶାଳୀନତା ଓ ନମ୍ରତା ପ୍ରକାଶ ପାଏ । ଏହି ଗୁଣଗୁଡ଼ିକ ନାରୀର ଭୂଷଣ । ଉପରକୁ ଅନାଇ ଚାଲିବା ଓ ବାର୍ତ୍ତାଳାପ କରିବା ଉଦ୍ଧତ ପ୍ରକୃତିର ଚିହ୍ନ ଅଟେ ।

ପୁଣି ଦୁଇ ପାଦକୁ ମିଳାଇ ସାବଧାନ ହୋଇ ଚାଲିବା ପାଇଁ ପରାମର୍ଶ ଦିଆଯାଇଅଛି । ପାଦ ଏଣେ ତେଣେ ପକାଇ ଚାଲିବା ଫଳରେ ମନ ଚଞ୍ଚଳ ହୋଇଉଠେ । ଚପଳ ସ୍ୱଭାବ ନାରୀର ଦୁର୍ଗୁଣ ଅଟେ । ପରିଶେଷରେ ବସ୍ତ୍ର ପରିଧାନବେଳେ ସଂଯତ ରହିବା ପାଇଁ ଉପଦେଶ ଦିଆଯାଇଅଛି । ଦୁଇ ସ୍ତନ, ଦୁଇ ଜଙ୍ଘକୁ ଅନାବୃତ ରଖିବା ବିଳାସିତାର ପରିଚାୟକ । ନାରୀ ଅଙ୍ଗ ପ୍ରଦର୍ଶନ କଲେ ସମସ୍ତ ମନୁଷ୍ୟସମାଜରେ ଅଶ୍ଳୀଳତା ଓ କାମାତ୍ମକ ଚେତନା ଶୀଘ୍ର ବ୍ୟାପିଯାଏ ।

ମନ୍ତ୍ରର ଶେଷାର୍ଦ୍ଧରେ କୁହାଯାଇଛି ଯେ ନାରୀପାଇଁ ଏ ସବୁ ବନ୍ଧନ ରକ୍ଷା କରିବା ଅତ୍ୟନ୍ତ ଆବଶ୍ୟକ । କାରଣ ସେ 'ମା' ଅଟେ । ସେ ବ୍ରହ୍ମା ଅର୍ଥାତ୍ ମନୁଷ୍ୟସମାଜର ନିର୍ମାତ୍ରୀ । ପତ୍ନୀର ଅନ୍ୟ ନାମ 'ଜାୟା' ଅର୍ଥାତ୍ ପୁତ୍ର ଯାହାଠାରୁ ଜନ୍ମଲାଭ କରେ । ନାରୀର ଚାଲିଚଳନରେ ଯେ କୌଣସି ପ୍ରକାର ତ୍ରୁଟି ତାହାର ସନ୍ତାନରେ ପ୍ରତିଫଳିତ ହୁଏ । ନାରୀର ସ୍ଖଳନଯୋଗୁଁ ମନୁଷ୍ୟସମାଜର ଭିତ୍ତି ଦୋହଲି ଯାଏ । ତାହାର ଶିଷ୍ଟାଚାରରୁ ସମାଜ ସୁସ୍ଥ ଓ ଯଶସ୍ୱୀ ହୁଏ ।

॥ ମଣ୍ଡଳ ୧, ସୂକ୍ତ ୧୦୫, ମନ୍ତ୍ର ୮ ॥

ବହୁପତ୍ନୀ ନିଷେଧ

ସଂ ମା ତପନ୍ତ୍ୟଭିତଃ

ସପତ୍ନୀରିବ ପର୍ଶବଃ ।

ମୂଷୋ ନ ଶିଶ୍ନା ବ୍ୟଦନ୍ତି ମାଧ୍ୟଃ

ସ୍ତୋତାରଂ ତେ ଶତକ୍ରତୋ

ବିତ୍ତଂ ମେ ଅସ୍ୟ ରୋଦସୀ ॥

(ତ୍ରିତ ଆପ୍ତ୍ୟ । ବିଶ୍ୱେଦେବାଃ । ମହାବୃହତୀ)

ପଦପାଠ : ସମ୍ । ମା । ତପନ୍ତି । ଅଭିତଃ । ସପତ୍ନୀଃଇବ । ପର୍ଶବଃ । ମୂଷଃ । ନ । ଶିଶ୍ନା । ବି । ଅଦନ୍ତି । ମା । ଆଧ୍ୟଃ । ସ୍ତୋତାରମ୍ । ତେ । ଶତକ୍ରତୋ । ବିତ୍ତମ୍ । ମେ । ଅସ୍ୟ । ରୋଦସୀ ଇତି ॥

ପଦାର୍ଥ: (ସପତ୍ନୀଃ ଇବ) ସହଚାରିଣୀମାନଙ୍କ ପରି (ପର୍ଶବଃ) ଯନ୍ତ୍ରଣାଦାୟକ ଶୂଳ (ଅଭିତଃ) ଚାରିଆଡ଼ୁ (ମା) ମୋତେ (ସଂ ତପନ୍ତି) ସନ୍ତାପ ଦେଉଛନ୍ତି । (ମୂଷଃ ଶିଶ୍ନା ନ) ମୂଷା ଯେପରି ତୈଳାଦସ୍ପୃଷ୍ଟ ଜଳ ଅଙ୍ଗକୁ ଖାଇଯାଏ (ଶତକ୍ରତୋ) ହେ ଶତକର୍ମର ସ୍ୱାମୀ ଭଗବାନ୍ ! (ତେ ସ୍ତୋତାରଂ) ତୁମ୍ଭର ଭକ୍ତକୁ (ମା) ମୋତେ (ଆଧ୍ୟଃ) ମାନସିକ ଅଶାନ୍ତି (ବ୍ୟଦନ୍ତି) ଗ୍ରାସ କରୁଅଛନ୍ତି (ରୋଦସୀ) ହେ ଦ୍ୟାବାପୃଥିବୀ ! (ମେ) ମୋର (ଅସ୍ୟ) ଏହି ଦୁରବସ୍ଥା (ବିତ୍ତମ୍) ଜାଣ ।



॥ ମଣ୍ଡଳ ୧, ସୂକ୍ତ ୧୦୫, ମନ୍ତ୍ର ୮ ॥

—ଏକ ସଂସାରୀ ପୁରୁଷର ମନ ସାଂସାରିକ କ୍ଳେଶ ଜଞ୍ଜାଳରେ ବ୍ୟାକୁଳ ହୋଇଉଠିଛି । ସେ ବିଷୟାସକ୍ତ ହୋଇ ମାନସିକ ଦ୍ୱନ୍ଦ୍ୱରେ ଅଶାନ୍ତ ହୋଇପଡ଼ିଛି । ଚିନ୍ତା-ଚିତାରେ ପଡ଼ି ହାହୁତାଶ ହେଉଛି । ଚିତ୍କାର କରୁଛି—"ମା ଆଧ୍ୟଃ ବ୍ୟଦନ୍ତି" ଅର୍ଥାତ୍ ମାନସିକ ପୀଡ଼ା ମୋତେ ଖାଇ ଯାଉଛି । ମୂଷା ଜଳର ଅଙ୍ଗକୁ ଚୋବାଇବା ପରି ଚିନ୍ତା ମୋତେ ଦଂଶନ କରୁଅଛି ।

ସେ ନିଜର ମର୍ମନ୍ତୁଦ କ୍ଳେଶକୁ ଏକ କରୁଣ ଦୁର୍ଦ୍ଦଶା ସହିତ ତୁଳନା କରି କହୁଅଛି—"ସହଚାରିଣୀମାନେ ସ୍ୱାମୀକୁ ହଇରାଣ କରିବା ପରି ସଂସାରର ତାପ ମୋତେ ଶୂଳପରି ଦେହର ଚାରିଆଡ଼େ ଆଘାତ ଦେଉଛି ।"

ସପତ୍ନୀଙ୍କ ମଧ୍ୟରେ ପରସ୍ପର ଈର୍ଷା ଭାବନା ଥାଏ । ଏଣୁ ସେମାନେ ଅହର୍ନିଶ କଳହ କରନ୍ତି । ସବୁ ଗଣ୍ଡଗୋଳର ଯନ୍ତ୍ରଣା ଶେଷରେ ପତିକୁ ହିଁ ଭୋଗିବାକୁ ପଡ଼େ । ଘର ତାହାକୁ ନରକପ୍ରାୟ ବୋଧହୁଏ । ବାଟେ ଘାଟେ ଘରର ଅପବାଦ ଶୁଣି ସେ ନିଜକୁ ପାପୀ ମନେ କରେ । ଗୃହସ୍ଥ ଗୃହର ସବୁ ସମସ୍ୟା ଯଥାସାଧ୍ୟ ସମାଧାନ କରିନିଏ । ପରନ୍ତୁ ହାୟ ! ଯେଉଁ ବିଷୟରେ ନିଜର ପତ୍ନୀମାନେ କଳହ କରନ୍ତି, ସେଥିରେ ସେ କିଛି ହେଲେ ନିଷ୍ପତ୍ତି ନେଇ ପାରେନାହିଁ । ବେଦ ବହୁପତ୍ନୀ ଗ୍ରହଣ ନିଷେଧ କରି ଏଠାରେ ଏକ ରୂପକ ବର୍ଣ୍ଣନା କରିଛନ୍ତି ।

॥ ମଣ୍ଡଳ ୮, ସୂକ୍ତ ୭୨, ମନ୍ତ୍ର ୧୦ ॥

ନଳକୂପ

ସିଂଚନ୍ତି ନମସାବତ-

ମୁଚ୍ଚାଚକ୍ରଂ ପରିଜ୍ମାନମ୍ ।

ନୀଚୀନବାରମକ୍ଷିତମ୍ ।

(ହର୍ଯ୍ୟତଃ ପ୍ରାଗାଥଃ । ଅଗ୍ନିଃ ହବିର୍ବା । ଗାୟତ୍ରୀ)

ପଦପାଠ : ସିଂଚନ୍ତି । ନମସା । ଅବତମ୍ । ଉଚ୍ଚାଃଚକ୍ରମ୍ । ନୀଚୀନଃବାରମ୍ । ଅକ୍ଷିତମ୍ ॥

ଅନ୍ୱୟାର୍ଥ : (ଉଚ୍ଚାଚକ୍ରମ୍) ଯେଉଁ ଯନ୍ତ୍ରର ଉପର ଭାଗରେ ଚକ ଅଛି, (ପରିଜ୍ମାନମ୍) ଚତୁର୍ଦ୍ଦିଗରେ ଭୂମି ବ୍ୟାପି ରହିଛି; (ନୀଚୀନବାରମ୍) ତଳେ ଜଳର ଦ୍ୱାର ଅଛି, ତଦ୍ଦ୍ୱାରା (ଅକ୍ଷିତମ୍) ଅକ୍ଷୟ ଜଳର ଭଣ୍ଡାର (ଅବତମ୍) କୂପକୁ (ନମସା) ଅନ୍ନପାଇଁ (ସିଂଚନ୍ତି) ସେଚନ କରନ୍ତି ।





॥ ମଣ୍ଡଳ ୮, ସୂକ୍ତ ୭୨, ମନ୍ତ୍ର ୧୦ ॥

—ଭୂମିତଳେ ଜଳଭଣ୍ଡାର ରହିଛି । ବେଦ କହୁଛନ୍ତି, ଏହା 'ଅକ୍ଷିତମ୍' ଅର୍ଥାତ୍ ଅଫୁରନ୍ତ ଅଟେ । ଭୂମିତଳୁ ଯେତେ ପରିମାଣର ଜଳ ଉପରକୁ ନେଲେ ସୁଦ୍ଧା କୌଣସି ନା କୌଣସି ପ୍ରଣାଳୀରେ ଜଳ ପୁଣି ଭୂମିଅଭ୍ୟନ୍ତରକୁ ଚାଲିଯାଏ ଏବଂ ଜଳଭଣ୍ଡାର ଅକ୍ଷୟ ରହେ । ଏହି ଜଳକୁ ଭୂମି ଉପରକୁ ନେଇ ଅନ୍ନ-ଉତ୍ପାଦନ ପାଇଁ ବ୍ୟବହାର କରାଯାଇ ପାରେ ।

ମନ୍ତ୍ରରେ ନଳକୂପର ସ୍ପଷ୍ଟ ସଙ୍କେତ ଦିଆଯାଇଅଛି । ଚତୁର୍ଦ୍ଦିଗରେ କୃଷି-ଉପଯୋଗୀ ଭୂମି ବ୍ୟାପି ରହିଛି । ଭୂମିତଳେ ଥିବା ଜଳକୁ ଟାଣି ଆଣି କୃଷିପାଇଁ ଯୋଗାଇବାକୁ ହେବ । ଜଳର ପତନ ସବୁଠାରେ ଭୂମିତଳେ ସମାନ ନ ଥାଏ । ନଳକୁ ଜଳପତନର ତଳକୁ ନେବାକୁ ହୁଏ । ତାହାହେଲେ କୂପମଧ୍ୟରୁ ଜଳ ଅନବରତ ପ୍ରବାହିତ ହୁଏ । ନଳକୂପର ଉପରେ ଏକ ଚକ ଥାଏ ଯାହା ଜଳ-ଉତ୍ତୋଳନ କଳର କାର୍ଯ୍ୟ କରେ । ନଳର ତଳଭାଗରେ ଜଳର ଦ୍ୱାର ଥାଏ ।

|| ମଣ୍ଡଳ ୬, ସୂକ୍ତ ୬୬, ମନ୍ତ୍ର ୭ ||

ଆଣବିକ ଯାନ

ଅନେନୋ ବୋ ମରୁତୋ ଯାମୋ ଅସ୍ତ୍ୱ-

ନଶ୍ୱଶ୍ଚିଦ୍ ଯମଜତ୍ୟରଥୀଃ ।

ଅନବସୋ ଅନଭୀଶୂ ରଜସ୍ତୂ-

ର୍ବି ରୋଦସୀ ପଥ୍ୟା ଯାତି ସାଧନ୍ ।

(ବାର୍ହସ୍ପତ୍ୟୋ ଭରଦ୍ୱାଜଃ । ମରୁତଃ । ତ୍ରିଷ୍ଟୁପ୍)

ପଦପାଠ : ଅନେନଃ । ବଃ । ମରୁତଃ । ଯାମଃ । ଅସ୍ତୁ । ଅନଶ୍ୱଃ । ଚିତ୍ । ଯମ୍ । ଅଜତି । ଅରଥୀଃ । ଅନବସଃ । ଅନଭୀଶୁଃ । ରଜଃତୂଃ । ବି । ରୋଦସୀ ଇତି । ପଥ୍ୟାଃ । ଯାତି । ସାଧନ୍ ।

ପଦାର୍ଥ : (ମରୁତଃ) ହେ ବୀର ସୈନିକ ! (ବଃ ଯାମଃ) ତୁମ୍ଭର ଯାନ (ଅନ୍ ଏନାଃ) ନିର୍ବିଘ୍ନ ଗତିକାରୀ (ଅସ୍ତୁ) ହେଉ । (ରଜଃତୂଃ) ଅଣୁଶକ୍ତି ଚାଳିତ (ଯମ୍) ଯାହା (ଅନ୍ ଅଶ୍ୱଃ) ଅଶ୍ୱବିନା (ଅରଥୀଃ) ସାରଥି ବିନା (ଅନବସଃ) ଇନ୍ଧନ ବିନା (ଅନ୍ଅଭୀଶୁଃ) ଲଗାମ୍ ବିନା (ରୋଦସୀ) ଭୂମି ଓ ଆକାଶରେ (ଅଜତି) ଚାଳିତ ହୋଇପାରେ; ( ପଥ୍ୟା ସାଧନ୍ ) ଗତିପଥ ନିୟନ୍ତ୍ରଣ କରି ତାହା (ବି ଯାତି) ବିବିଧ ପ୍ରକାରେ ଯାତ୍ରା କରେ ।





|| ମଣ୍ଡଳ ୬, ସୂକ୍ତ ୬୬, ସୂକ୍ତ ୭ ||

—ଏଠାରେ ଆଣବିକ ଯାନର ବର୍ଣ୍ଣନା କରାଯାଇଅଛି । ଏହା ଏକ ଅସାଧାରଣ ସଂଜ୍ଞା । ମରୁତ (ମର୍ + ଉତ) ଅର୍ଥାତ୍ ମରି ପଡ଼ି ଉଠୁଥିବା ସାହସୀ ସୈନିକ ଏହା ବ୍ୟବହାର କରନ୍ତି । ଯାନର ନିର୍ମାଣ କୌଶଳ ନିମ୍ନପ୍ରକାର ହେବା ଉଚିତ—

(କ) ଧୂପ, ତାପ ଇତ୍ୟାଦି ପ୍ରକ୍ରିୟାଦ୍ୱାରା ଯାନଟି ସମ୍ପୂର୍ଣ୍ଣ ଭାବରେ ସୁରକ୍ଷିତ ହେବା ଆବଶ୍ୟକ ଯଦ୍ଦ୍ୱାରା ତାହା ବିଭିନ୍ନ ପରିସ୍ଥିତିରେ ନିର୍ବିଘ୍ନରେ ଗତି କରିପାରିବ ।

(ଖ) ଅଣୁଶକ୍ତିକୁ ପ୍ରୟୋଗ କରି ଯାନର ପରିଚାଳନା କରାଯିବ ।

(ଗ) ଏହାକୁ ଟାଣିବା ପାଇଁ ଅଶ୍ୱାଦି ପଶୁ ବ୍ୟବହୃତ ହେବେ ନାହିଁ ।

(ଘ) ଯାନର ସ୍ୱୟଂଚାଳିତ ସାଧନ ଯୋଗାଇ ଦିଆଯିବ । ଏଣୁ କୌଣସି ଚାଳକର ପ୍ରୟୋଜନ ହେବନାହିଁ ।

(ଙ) ଏଥିରେ ଅଣୁଶକ୍ତି ବ୍ୟତୀତ କାଠ, ତେଲ ଆଦି ଜାଳେଣି ପଦାର୍ଥ ଆବଶ୍ୟକ ହେବନାହିଁ ।

(ଚ) ଚାଳକ ନ ଥିବାରୁ କୌଣସି ହସ୍ତଚାଳିତ ସଂଯନ୍ତ୍ର ରହିବ ନାହିଁ ।

(ଛ) ଯାନର ନିର୍ମାଣକୌଶଳ ଏପରି ହେବ ଯେ ତାହା ଆକାଶରେ ଉଡ଼ି ପାରିବ; ଆବଶ୍ୟକ ହେଲେ ଭୂମି ଉପରେ ମଧ୍ୟ ଗତି କରିବ ।

(ଜ) ଯାନ ତାହାର ଗତି ପରିବର୍ତ୍ତନ କରି ପାରିବ; ବିଭିନ୍ନ ଅବସ୍ଥାରେ ବିଭିନ୍ନ ଗତିରେ ଚାଳିତ ହେବ ।

|| ମଣ୍ଡଳ ୧, ସୂକ୍ତ ୮୫, ମନ୍ତ୍ର ୧୦ ||

## ଅଗ୍ରଗାମୀ ସେନା

ଊର୍ଦ୍ଧ୍ୱଂ ନୁନୁଦ୍ରେଽବତଂ ତ ଓଜସା
ଦାଦୃହାଣଂ ଚିଦ୍ ବିଭିଦୁର୍ବି ପର୍ବତମ୍
ଧମନ୍ତୋ ବାଣଂ ମରୁତଃ ସୁଦାନବୋ ।
ମଦେ ସୋମସ୍ୟ ରଣ୍ୟାନି ଚକ୍ରିରେ

( ଗୋତମୋ ରାହୂଗଣଃ । ମରୁତଃ । ଜଗତୀ )

**ପଦପାଠ:** ଊର୍ଦ୍ଧ୍ୱମ୍ । ନୁନୁଦ୍ରେ । ଅବତମ୍ । ତେ । ଓଜସା । ଦାଦୃହାଣମ୍ । ଚିତ୍ । ବିଭିଦୁଃ । ବି । ପର୍ବତମ୍ । ଧମନ୍ତଃ । ବାଣମ୍ । ମରୁତଃ । ସୁଦାନବଃ । ମଦେ । ସୋମସ୍ୟ । ରଣ୍ୟାନି । ଚକ୍ରିରେ ॥

**ପଦାର୍ଥ:** (ତେ ମରୁତଃ) ସେହି ସୈନିକଗଣ (ଓଜସା) ନିଜ ପରାକ୍ରମଦ୍ୱାରା (ଅବତମ୍) କୂପଜଳକୁ (ଊର୍ଦ୍ଧ୍ୱମ୍ ନୁନୁଦ୍ରେ) ଉପରକୁ ଉଠାନ୍ତି, (ଦାଦୃହାଣମ୍) ଦୃଢ଼ (ପର୍ବତମ୍) ପର୍ବତକୁ (ଚିତ୍) ମଧ୍ୟ (ବି ବିଭିଦୁଃ) ବିବିଧ ଉପାୟରେ ଭେଦ କରନ୍ତି, (ସୁଦାନବଃ) କୁଶଳୀ ସୈନିକ (ବାଣଂ ଧମନ୍ତଃ) ଶତଧାର ତନ୍ତ୍ରୀ ବାଦ୍ୟ ବାଦନପୂର୍ବକ (ସୋମସ୍ୟ ମଦେ) ବିଜୟପ୍ରାପ୍ତିର ହର୍ଷରେ (ରଣ୍ୟାନି) ସଂଗ୍ରାମୋଚିତ ବିବିଧ କାର୍ଯ୍ୟକୁ (ଚକ୍ରିରେ) କରନ୍ତି ।





|| ମଣ୍ଡଳ ୧, ସୂକ୍ତ ୮୫, ମନ୍ତ୍ର ୧୦ ||

—ସେନାର ଆଗୁଆ ଅଞ୍ଚଳରେ ସୈନ୍ୟ ସମାବିଷ୍ଟ ହୋଇଛନ୍ତି । ସେମାନେ ସମ୍ପୂର୍ଣ୍ଣ ସ୍ୱାବଲମ୍ବୀ ହେବାପାଇଁ ଉଦ୍ୟମ କରୁଛନ୍ତି । ନିଜର ବ୍ୟବହାରପାଇଁ ସ୍ୱୟଂ ଖାଦ୍ୟପେୟ ପ୍ରସ୍ତୁତ କରୁଛନ୍ତି । ବିଭିନ୍ନ ଉପକରଣ ଦ୍ୱାରା ଭୂମିର ଗଭୀର ତଳଦେଶରୁ ଜଳ ସଂଗ୍ରହ କରୁଛନ୍ତି । ଯେତେବେଳେ ସେମାନେ ପାର୍ବତ୍ୟ ଅଞ୍ଚଳରେ ପହଞ୍ଚୁଛନ୍ତି, ରାସ୍ତାଘାଟ ଓ ବସତିସ୍ଥାପନ ପାଇଁ ଉଚ୍ଚ ନୀଚଭୂମିଗୁଡ଼ିକୁ ସମତଳ ଓ ଉପଯୋଗୀ କରୁଛନ୍ତି । ସେମାନେ ବିସ୍ଫୋରଣ ଦ୍ୱାରା ପର୍ବତର ପଥରକୁ ଫଟାଇ ରାସ୍ତା-ନିର୍ମାଣର ନାନା କୌଶଳ ଜାଣନ୍ତି । ସମର-ସଙ୍ଗୀତ ଗାନ କରି କଷ୍ଟସାଧ୍ୟ କାର୍ଯ୍ୟକୁ ସହର୍ଷରେ ସାଧନ କରନ୍ତି । ବିଜୟ ଲାଭପାଇଁ ଆତ୍ମବିଶ୍ୱାସ ରଖି ସେମାନେ ସର୍ବଦା ସକ୍ରିୟ ଓ ଜାଗ୍ରତ ଅଛନ୍ତି ।

ଅଗ୍ରଗାମୀ ସୈନିକଙ୍କ ପ୍ରତି ବେଦ ଅପୂର୍ବ ଉତ୍ସାହପ୍ରଦ ବାଣୀ ଶୁଣାଉଛନ୍ତି । ବେଦ ଏମାନଙ୍କୁ 'ମରୁତ' ବୋଲି ସମ୍ବୋଧନ କରିଛନ୍ତି । ରାଷ୍ଟ୍ର ରକ୍ଷାପାଇଁ ମରିପଡ଼ି ଉଠୁଥିବା ବୀରର ନାମ ମରୁତ୍ । ଏମାନଙ୍କ ସଫଳତାର କାରଣ ହେଉଛି ଶୃଙ୍ଖଳା-ବନ୍ଧନ । ସେନା (ସ+ଇନା)ର ଅର୍ଥ ସମାନବସ୍ତ୍ରସମ୍ପନ୍ନ ଶୃଙ୍ଖଳିତ ବ୍ୟକ୍ତି । ବେଦର ଅନେକ ସ୍ଥଳରେ ପ୍ରଜାମାନଙ୍କୁ ଉଦବୋଧନ ଦିଆଯାଇଛି—"ତୁମ୍ଭେମାନେ ମରୁତ ଓ ସେନାକୁ ଅନୁକରଣ କରି ରାଷ୍ଟ୍ରର ବିକାଶ ସାଧନ କର । ତୁମ୍ଭମାନଙ୍କ ମଧ୍ୟରେ ଏକତା ଓ ଶୃଙ୍ଖଳାବନ୍ଧନ ଜାଗ୍ରତ ହେଲେ ରାଷ୍ଟ୍ରର ପ୍ରଗତି ସହଜସାଧ୍ୟ ହେବ ।"

॥ ମଣ୍ଡଳ ୧, ସୂକ୍ତ ୫୦, ମନ୍ତ୍ର ୧୧ ॥

ସୂର୍ଯ୍ୟଚିକିତ୍ସା

ଉଦ୍ୟନ୍ନଦ୍ୟ ମିତ୍ରମହ

ଆରୋହନ୍ନୁତ୍ତରାଂ ଦିବମ୍ ।

ହୃଦ୍ରୋଗଂ ମମ ସୂର୍ଯ୍ୟ

ହରିମାଣଂ ଚ ନାଶୟ ॥

( କାଣ୍ୱଃ । ରୋଗଘ୍ନୀ ଉପନିଷଦଃ । ଅନୁଷ୍ଟୁପ୍ )

**ପଦପାଠ :** ଉଦ୍‌ଯନ୍ । ଅଦ୍ୟ । ମିତ୍ରମହଃ । ଆରୋହନ୍ । ଉତ୍‌ତରାମ୍ । ଦିବମ୍ । ହୃତ୍‌ରୋଗମ୍ । ମମ । ସୂର୍ଯ୍ୟ । ହରିମାଣମ୍ । ଚ । ନାଶୟ ॥

**ପଦାର୍ଥ :** (ମିତ୍ରମହଃ) ହେ ପରମମିତ୍ର ! (ସୂର୍ଯ୍ୟ ଉଦ୍ୟନ୍) ସୂର୍ଯ୍ୟ ଉଦିତ ହୋଇ ହୋଇ ଓ (ଉତ୍ତରାଂ ଦିବମ୍ ଆରୋହନ୍) ଉତ୍ତରୋତ୍ତର ଆକାଶମାର୍ଗରେ ଅଗ୍ରସର ହୋଇ ହୋଇ (ମମ) ମୋର (ହୃଦ୍‌ରୋଗମ୍) ହୃଦୟରୋଗକୁ (ଚ) ଏବଂ (ହରିମାଣମ୍) କାମଳରୋଗକୁ (ଅଦ୍ୟ) ଆଜି ଶୀଘ୍ର (ନାଶୟ) ନାଶ କର ।





॥ ମଣ୍ଡଳ ୧, ସୂକ୍ତ ୫୦, ମନ୍ତ୍ର ୧୧ ॥

— ସାଧାରଣ ଲୋକଙ୍କର ଧାରଣା ଯେ ସୂର୍ଯ୍ୟୋଦୟ ଏକ ନୈମିତ୍ତିକ ଘଟଣା । ପରନ୍ତୁ ସୂର୍ଯ୍ୟକିରଣ ପଡ଼ିବାର ବହୁ ପୂର୍ବରୁ ଉଷାବେଳାରୁ ହିଁ ମନୁଷ୍ୟର କଲ୍ୟାଣକାରିଣୀ ବିଭୂତି ପୃଥିବୀ ପୃଷ୍ଠରେ ଅବତରଣ କରେ । ଜୀବମାନଙ୍କର ନିଦ୍ରା ଓ ଆଳସ୍ୟ ଦୂର ହୁଏ । ନବଜୀବନ ସଞ୍ଚରିତ ହୁଏ । ଦେହର ଦୂଷିତ ଅଂଶ ମଳମୂତ୍ରାଦିରୂପରେ ବହିର୍ଗତ ହୁଏ । ପ୍ରାତଃକାଳର ଉପଯୋଗଦ୍ୱାରା ଦେହର ବିଭିନ୍ନ ପୀଡ଼ା ପ୍ରକାଶିତ ହୁଏ । ଦିବସ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ବିଭିନ୍ନ ସମୟରେ ସୂର୍ଯ୍ୟକିରଣର ଗୁଣରେ ପରିବର୍ତ୍ତନ ହୋଇଥାଏ ଏବଂ ତାହା ଦେହର ବିଭିନ୍ନପ୍ରକାର ଦୋଷଦୁର୍ବଳତା ଦୂରୀକରଣରେ ସହାୟକ ହୁଏ ।

ଅଗ୍ନି ସୂର୍ଯ୍ୟରୂପରେ ଦ୍ୟୁଲୋକରେ, ବିଦ୍ୟୁତ ରୂପରେ ଅନ୍ତରୀକ୍ଷରେ ଓ ଭୌତିକ ଅଗ୍ନି ଭାବରେ ପୃଥିବୀ ଉପରେ ପ୍ରତିଷ୍ଠିତ । ସେ ମନୁଷ୍ୟପିଣ୍ଡରେ ମଧ୍ୟ ବୁଦ୍ଧି, ମନ ଓ ଜଠରାଗ୍ନି ଭାବରେ ବ୍ୟାପ୍ତ ଅଛନ୍ତି । ତେଣୁ ସୂର୍ଯ୍ୟକିରଣ ଓ ବିଦ୍ୟୁତ୍ ଇତ୍ୟାଦି ଦ୍ୱାରା ଦେହର ବିଭିନ୍ନ ଦୋଷ ଦୂର କରାଯାଇପାରେ । ସୃଷ୍ଟି ପ୍ରାରମ୍ଭରେ ଏହି ବୈଦିକ ଜ୍ଞାନ ପ୍ରାପ୍ତ ହୋଇ ଋଷିମୁନିଗଣ ପ୍ରାକୃତିକ ଚିକିତ୍ସା, ଆୟୁର୍ବେଦ ପ୍ରଭୃତି ବିଦ୍ୟାର ପ୍ରସାର କରିଥିଲେ ।

ଅଥର୍ବ ବେଦ (୧, ୮, ୨୨) ମନ୍ତ୍ରରେ କପାଳପୀଡ଼ା ଓ ବିଭିନ୍ନ ଅଙ୍ଗର ବେଦନାକୁ ଶାନ୍ତ କରିବା ପାଇଁ ସୂର୍ଯ୍ୟକିରଣକୁ ବ୍ୟବହାର କରିବା ସଙ୍କେତ ଦିଆଯାଇଛି । ସେହି ବେଦର (୨, ୨୩, ୭) ମନ୍ତ୍ରରେ କୁହାଯାଇଛି ଯେ ସୂର୍ଯ୍ୟକିରଣ ପ୍ରୟୋଗ କରି ଦେହର ଅଦୃଶ୍ୟ କୀଟାଣୁମାନଙ୍କୁ ନାଶ କରାଯାଇପାରେ ।

॥ ମଣ୍ଡଳ ୧୦, ସୂକ୍ତ ୧୩୭, ମନ୍ତ୍ର ୨

ରୋଗ କିପରି ଦୂର ହୁଏ ?

ଦ୍ୱାବିମୌ ବାତୌ ବାତ

ଆ ସିନ୍ଧୋରା ପରାବତଃ

ଦକ୍ଷଂ ତେ ଅନ୍ୟ ଆ ବାତୁ

ପରାନ୍ୟୋ ବାତୁ ଯଦ୍ରପଃ ॥

( କଶ୍ୟପଃ । ବିଶ୍ୱେଦେବାଃ । ଅନୁଷ୍ଟୁପ୍ )

ପଦପାଠ : ଦ୍ୱୌ । ଇମୌ । ବାତୌ । ବାତଃ । ଆ । ସିନ୍ଧୋଃ । ଆ । ପରାଽବତଃ । ଦକ୍ଷମ୍ । ତେ । ଅନ୍ୟଃ । ଆ । ବାତୁ । ପରା । ଅନ୍ୟଃ । ବାତୁ । ଯତ୍ । ରପଃ ॥

ପଦାର୍ଥ : ( ଇମୌ ଦ୍ୱୌ ବାତୌ ) ଏହି ଦୁଇ ପ୍ରାଣବାୟୁ ( ବାତଃ ) ପ୍ରବାହିତ ହୁଅନ୍ତି । ( ଆ ସିନ୍ଧୋଃ ) ଗୋଟିଏ ପ୍ରାଣବାୟୁ ସମୁଦ୍ରରୁ, ଅନ୍ୟଟି ( ଆ ପରାବତଃ ) ଦୂର ସ୍ଥଳଭାଗରୁ ଆସେ । ( ଅନ୍ୟଃ ) ଗୋଟିଏ ପ୍ରାଣ ( ତେ ଦକ୍ଷଂ ଆ ବାତୁ ) ତୁମ ପାଇଁ ବଳ ଆଣିଦିଏ, ( ଅନ୍ୟଃ ) ଅନ୍ୟଟି ( ଯତ୍ ) ଯେଉଁ ତୁମର ( ରପଃ ) ରୋଗ ରହିଛି ( ପରା ବାତୁ ) ତାହାକୁ ଦୂର କରେ ।





॥ ମଣ୍ଡଳ ୧୦, ସୂକ୍ତ ୧୩୭, ମନ୍ତ୍ର ୨ ॥

—ନାସିକା ଦେଇ ଯେଉଁ ନିଃଶ୍ୱାସ-ପ୍ରଶ୍ୱାସ ଗତି କରୁଅଛି, ତାହାର ତାତ୍ପର୍ଯ୍ୟ ଏଠାରେ ବର୍ଣ୍ଣନା କରାଯାଇଛି । ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ଶ୍ୱାସପ୍ରଶ୍ୱାସ ଅବିରାମ ଗତି କରୁଅଛି । ପ୍ରଶ୍ୱାସ ବାହାରକୁ ଯାଇ ବାହାରେ ରହି ଯାଉନାହିଁ କିମ୍ବା ନିଃଶ୍ୱାସ ଭିତରକୁ ଆସି ଭିତରେ ପଡ଼ି ରହୁନାହିଁ । ଦିବାରାତ୍ରି ଏହି ନିଃଶ୍ୱାସ-ପ୍ରଶ୍ୱାସ ଗୋଟିକ ପରେ ଗୋଟିଏ ପରିଚାଳିତ ହେଉଅଛି ।

ପ୍ରାଣ ଓ ଅପାନର ଗତି ଅତ୍ୟନ୍ତ ଅଦ୍ଭୁତ । ପ୍ରାଣ ଦେହଭିତରେ ପ୍ରବେଶ କରି ବଳ ପ୍ରଦାନ କରେ, ଜୀବନୀ ଶକ୍ତି ବୃଦ୍ଧି କରେ । ପ୍ରାଣ ହିଁ ଦେହର ଦୀପ୍ତିର କାରଣ ଅଟେ । ବେଦମନ୍ତ୍ର କହୁଛନ୍ତି ଯେ ପ୍ରାଣବାୟୁ ବଳପ୍ରଦାନ କରିବାବେଳେ ଅପାନବାୟୁ ରୋଗନାଶ କରେ । ଦେହର ପରିଶ୍ରମ, ମନର ସଙ୍କଳ୍ପ-ବିକଳ୍ପଦ୍ୱାରା ଅଙ୍ଗପ୍ରତ୍ୟଙ୍ଗରେ ଧୀରେ ଧୀରେ ଅଙ୍ଗାର ଓ ବିଷ ଉତ୍ପନ୍ନ ହୁଏ । ଦେହର ବ୍ୟବସ୍ଥା ଏହିପରି ଅଦ୍ଭୁତ ଯେ ରକ୍ତ ଏସବୁ ବିଷକୁ ଧୋଇ କରି ହୃଦୟରେ ପ୍ରବେଶ କରେ । ବାହାରୁ ଆସୁଥିବା ପ୍ରାଣବାୟୁ ଏହି ଦୂଷିତ ରକ୍ତର ସମ୍ପର୍କରେ ଆସି ସେଥିରୁ ବିଷକୁ ହରଣ କରି-ନିଏ ଓ ଅପାନ ରୂପରେ ବହିର୍ଗତ ହୁଏ । ରକ୍ତ ଶୁଦ୍ଧ ହୁଏ ଓ କର୍ମପାଇଁ ଉତ୍ସାହ ଜନ୍ମେ ।

ପ୍ରଭୁ ଆମ୍ଭମାନଙ୍କ ଦେହରେ ପ୍ରାଣ-ଅପାନ ଶକ୍ତି ସଞ୍ଚାର କରିଛନ୍ତି । ଏଗୁଡ଼ିକୁ ପ୍ରାଣାୟାମ କ୍ରିୟା ଦ୍ୱାରା ସଂଯତ ଓ ବଳଶାଳୀ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ଅଟେ ।

॥ ମଣ୍ଡଳ ୧୦, ସୂକ୍ତ ୧୬, ମନ୍ତ୍ର ୩ ॥

ବୃକ୍ଷରେ ଜୀବ

ସୂର୍ଯ୍ୟଂ ଚକ୍ଷୁର୍ଗଚ୍ଛତୁ ବାତମାତ୍ମା

ଦ୍ୟାଂ ଚ ଗଚ୍ଛ ପୃଥିବୀଂ ଚ ଧର୍ମଣା ।

ଅପୋ ବା ଗଚ୍ଛ ଯଦି ତତ୍ର ତେ ହିତ-

ମୋଷଧୀଷୁ ପ୍ରତି ତିଷ୍ଠା ଶରୀରୈଃ ॥

(ଦମନୋ ଯାମାୟନଃ । ଅଗ୍ନିଃ । ତ୍ରିଷ୍ଟୁପ୍)

ପଦପାଠ : ସୂର୍ଯ୍ୟମ୍ । ଚକ୍ଷୁଃ । ଗଚ୍ଛତୁ । ବାତମ୍ । ଆତ୍ମା । ଦ୍ୟାମ୍ । ଚ । ଗଚ୍ଛ । ପୃଥିବୀମ୍ । ଚ । ଧର୍ମଣା । ଅପଃ । ବା । ଗଚ୍ଛ । ଯଦି । ତତ୍ର । ତେ । ହିତମ୍ । ଓଷଧୀଷୁ । ପ୍ରତି । ତିଷ୍ଠ । ଶରୀରୈଃ ॥

ପଦାର୍ଥ : ହେ ଜୀବ ! (ଚକ୍ଷୁଃ ସୂର୍ଯ୍ୟଂ ଗଚ୍ଛତୁ) ତୁମର ଚକ୍ଷୁ ସୂର୍ଯ୍ୟପ୍ରକାଶକୁ ପ୍ରାପ୍ତ ହେଉ; (ଆତ୍ମା ବାତମ୍) ପ୍ରାଣ ମହାପ୍ରାଣକୁ ପ୍ରାପ୍ତ ହେଉ; (ଧର୍ମଣା) ନିଜ କର୍ମଫଳାନୁସାରେ (ଦ୍ୟାଂ ଚ ଗଚ୍ଛ) ଦ୍ୟୁଲୋକ ପ୍ରାପ୍ତ ହୁଅ (ଚ) ଅଥବା (ପୃଥିବୀମ୍) ପୃଥିବୀରେ ପୁନର୍ବାର ଜନ୍ମଗ୍ରହଣ (ବା) ଅଥବା (ଅପଃ ଗଚ୍ଛ) ଜଳରେ ଦେହ ଧାରଣ କର । (ଶରୀରୈଃ) ଦେହର ଅବୟବଦ୍ୱାରା (ଓଷଧୀଷୁ) ବନସ୍ପତି ମଧ୍ୟରେ (ପ୍ରତି ତିଷ୍ଠ) ପ୍ରତିଷ୍ଠିତ ହୁଅ (ଯଦି ତେ ତତ୍ର ହିତମ୍) ଯଦି ସେଥିରେ ତୁମର ହିତ ସାଧିତ ହୁଏ ।





॥ ମଣ୍ଡଳ ୧୦, ସୂକ୍ତ ୧୬, ମନ୍ତ୍ର ୩ ॥

—ମୃତଦେହକୁ ମନ୍ତ୍ରୋଚ୍ଚାରଣ ଓ ଘୃତାହୁତିପୂର୍ବକ ଅନ୍ତ୍ୟେଷ୍ଟି ଦାହସଂସ୍କାର କରିବାବେଳେ ଏହି ବେଦମନ୍ତ୍ର ପାଠ କରାଯାଏ । ମନୁଷ୍ୟର ଦେହ ପାଞ୍ଚଭୌତିକ । ଜୀବାତ୍ମାର ବିଚ୍ଛେଦ ପରେ ଦେହର ବିଭିନ୍ନ ଅଂଶ ଅନ୍ତ୍ୟେଷ୍ଟି ସଂସ୍କାରଦ୍ୱାରା ପଞ୍ଚମହାଭୂତରେ ବିଲୀନ ହୁଏ । ଚକ୍ଷୁ ସୂର୍ଯ୍ୟତତ୍ତ୍ୱରେ ନିର୍ମିତ, ତେଣୁ ଚକ୍ଷୁଗୋଲକ ସୂର୍ଯ୍ୟତତ୍ତ୍ୱରେ ଲୀନ ହୁଏ । ପ୍ରାଣ ବାୟୁତତ୍ତ୍ୱର ଅଂଶ ଅଟେ । ତେଣୁ ତାହା ସେଥିମଧ୍ୟରେ ପ୍ରବେଶ କରେ । ପିଣ୍ଡର ବିବିଧ ଅଂଶ ଏହି ପ୍ରକାରେ ବ୍ରହ୍ମାଣ୍ଡର ସେହି ସେହି ଆଧାରମାନଙ୍କରେ ସମ୍ମିଳିତ ହୁଅନ୍ତି ।

ମୃତ୍ୟୁପରେ ଜୀବାତ୍ମାର ଗତିସମ୍ବନ୍ଧରେ ବେଦମନ୍ତ୍ର କହୁଛନ୍ତି ଯେ ପୂର୍ବଜନ୍ମର କର୍ମଫଳାନୁସାରେ ସେ ଦ୍ୟୁଲୋକରେ, ପୃଥିବୀଲୋକରେ ଅଥବା ଜଳ ମଧ୍ୟରେ ପୁନର୍ବାର ଦେହଧାରଣ କରେ । କର୍ମଫଳ ନୀଚ ହୋଇଥିଲେ ତିର୍ଯ୍ୟକ୍ ଯୋନି ଅର୍ଥାତ୍ ବନସ୍ପତି ଆଦିରେ ମଧ୍ୟ ଜନ୍ମଲାଭ କରେ । ଜୀବ ସେଠାରେ ବୃକ୍ଷଦେହରେ ପ୍ରତିଷ୍ଠିତ ହୁଏ । ପତିତ କର୍ମଫଳରେ ଜୀବାତ୍ମାର ଏହିପରି ଅଧଃପତନ ଘଟେ । ମନୁଷ୍ୟର ମୁଖ ଉପରେ ଥିବାବେଳେ ଏହା ବୃକ୍ଷର ତଳ ଦେଶରେ ଥାଏ । ପଶୁର ମୁଖ ଭୂମିର ସମାନ୍ତର ହୋଇ ରହେ । ବୃକ୍ଷର ବିକାଶରେ ପଶୁ-ଆଦି ପ୍ରାଣୀଙ୍କର ଏବଂ ସେମାନଙ୍କର ବିକାଶରେ ମନୁଷ୍ୟର ସୃଷ୍ଟି ।

ବେଦମନ୍ତ୍ରରେ ସ୍ପଷ୍ଟ ପ୍ରତିପାଦିତ ହୋଇଛି ଯେ ଜୀବର ଅନ୍ତର୍ନିହିତ ଜୀବନ ବୃକ୍ଷଦେହରେ ପ୍ରକଟିତ ହୁଏ । ବୃକ୍ଷରେ ଜୀବନ ଥିବା ଜ୍ଞାନ ସନାତନ ବୈଦିକ ସିଦ୍ଧାନ୍ତ ଅଟେ ।

॥ ମଣ୍ଡଳ ୧୦, ସୂକ୍ତ ୮୮, ମନ୍ତ୍ର ୧୫ ॥

ଦେବଯାନ ଓ ପିତୃଯାନ

ଦ୍ୱେ ସୃତୀ ଅଶୃଣବଂ ପିତୄଣା-

ମହଂ ଦେବାନାମୁତ ମର୍ତ୍ୟାନାମ୍ ।

ତାଭ୍ୟାମିଦଂ ବିଶ୍ୱମେଜତ୍ ସମେତି

ଯଦନ୍ତରା ପିତରଂ ମାତରଂ ଚ ॥

( ବାମଦେବ୍ୟଃ । ମୂର୍ଦ୍ଧ୍ୟ ବୈଶ୍ୱାନରୋଽଗ୍ନିଃ । ତ୍ରିଷ୍ଟୁପ୍ )

ପଦପାଠ : ଦ୍ୱେ ଇତି । ସୃତୀ ଇତି । ଅଶୃଣବମ୍ । ପିତୄଣାମ୍ । ଅହମ୍ । ଦେବାନାମ୍ । ଉତ । ମର୍ତ୍ୟାନାମ୍ । ତାଭ୍ୟାମ୍ । ଇଦମ୍ । ବିଶ୍ୱମ୍ । ଏଜତ୍ । ସମ୍ । ଏତି । ଯତ୍ । ଅନ୍ତରା । ପିତରମ୍ । ମାତରମ୍ । ଚ ॥

ପଦାର୍ଥ : ( ପିତୄଣାମ୍ ) ପିତୃମାନଙ୍କର ( ଦେବାନାମ୍ ) ଦେବମାନଙ୍କର (ଉତ) ଏବଂ ( ମର୍ତ୍ୟାନାମ୍ ) ମନୁଷ୍ୟମାନଙ୍କର ( ଦ୍ୱେ ) ଦୁଇ ( ସୃତୀ) ମାର୍ଗ (ଅହଂ ଅଶୃଣବମ୍ ) ମୁଁ ଶୁଣିଅଛି । (ତାଭ୍ୟାମ୍ ) ଉଭୟ ମଧ୍ୟରେ (ଇଦମ୍ ) ଏହି ( ବିଶ୍ୱମ୍ ) ଜଗତ୍ ( ଏଜତ୍) ଗତି କରି ( ସମେତି ) ଚାଲିଅଛି (ଯତ୍) ଯାହା (ପିତରଂ ମାତରଂ ଚ) ପିତାମାତାଙ୍କର (ଅନ୍ତରା) ମଧ୍ୟରେ ଘଟେ ।





॥ ମଣ୍ଡଳ ୧୦, ସୂକ୍ତ ୮୮, ମନ୍ତ୍ର ୧୫ ॥

—ସୃଷ୍ଟିମଧ୍ୟରେ ନିଷ୍କାମ ଓ ସକାମ ଭେଦରେ ଦୁଇପ୍ରକାର ମନୁଷ୍ୟ ଦେଖାଯାନ୍ତି । ଜଣେ ନିଷ୍କାମ ମାର୍ଗର ପଥିକ । ସେ କର୍ମଠ ଓ ପୁରୁଷାର୍ଥୀ; ସେ କର୍ମଫଳରେ ଆଶା ରଖନ୍ତି ନାହିଁ । ଫଳାଶା-ଜନିତ ସୁଖ-ଦୁଃଖରେ ଜଡ଼ିତ ହୁଅନ୍ତି ନାହିଁ । ସେ ଲାଳସା ବିମୁକ୍ତ ଓ ସଦା ପ୍ରସନ୍ନ ଥାଆନ୍ତି । ଏହି ମାର୍ଗର ନାମ ଦେବଯାନ । ଶାସ୍ତ୍ରରେ ଦିବସ, ପୂର୍ଣ୍ଣିମା ଇତ୍ୟାଦି ବୃଦ୍ଧିସମ୍ପନ୍ନ ବେଳାକୁ ଦେବବେଳା କୁହାଯାଇଛି । ସେହିପରି ରାତି, ଅମାବାସ୍ୟା ଇତ୍ୟାଦି କ୍ଷୟସମ୍ପନ୍ନ ବେଳାକୁ ପିତୃବେଳା କୁହାଯାଇଛି । ଦେବଯାନର ପଥିକ ମୋକ୍ଷ ଅର୍ଥାତ୍ ସମ୍ପୂର୍ଣ୍ଣ ଦୁଃଖଶୂନ୍ୟ ଓ ଆନନ୍ଦପୂର୍ଣ୍ଣ ସ୍ଥିତି ଲାଭ କରନ୍ତି ।

ଦ୍ୱିତୀୟ ମାର୍ଗ ପିତୃଯାନ । ଏହି ମାର୍ଗର ପଥିକ ପ୍ରକୃତିର ବନ୍ଧନରେ ମୁଗ୍ଧ ଥାଏ । ଲୋଭମୋହାଦିର ଆବେଗରେ ବଶୀଭୂତ ହୁଏ । ସେ କର୍ମ ଅପେକ୍ଷା ଫଳାଶାରେ ଅଧିକ ନିବିଷ୍ଟ ରହେ । ତାହାର ମନ ସର୍ବଦା ଚଞ୍ଚଳ ଓ ସନ୍ଦିଗ୍ଧ ଥାଏ । ଏହି ମାର୍ଗର ପଥିକ ପିତୃତ୍ୱ ପ୍ରାପ୍ତ ହୁଏ ଅର୍ଥାତ୍ ଜନ୍ମମରଣ ଚକ୍ରରେ ଆବଦ୍ଧ ରହେ ।

ସଂସାରମଧ୍ୟରେ ଉଭୟ ପଥିକ ଜୀବନପଥରେ ଯାତ୍ରା କରନ୍ତି । ଦେବଯାନ ଦୁରୂହ ମାର୍ଗ । ପରନ୍ତୁ ପରମାନନ୍ଦପ୍ରାପ୍ତି ପାଇଁ ଏହା ହିଁ ଏକମାତ୍ର ରାଜମାର୍ଗ ଅଟେ ।

॥ ମଣ୍ଡଳ ୯, ସୂକ୍ତ ୧୧୨, ମନ୍ତ୍ର ୩ ॥

ପରିବାରମଧ୍ୟରେ ବିଭିନ୍ନ ବୃତ୍ତି

କାରୁରହଂ ତତୋ ଭିଷ-

ଗୁପଲପ୍ରକ୍ଷିଣୀ ନନା ।

ନାନାଧିୟୋ ବସୂୟବୋ-

ଽନୁ ଗା ଇବ ତସ୍ଥିମେ-

ନ୍ଦ୍ରାୟେନ୍ଦୋ ପରି ସ୍ରବ ॥

(ଶିଶୁରାଙ୍ଗିରସଃ । ପବମାନଃ ସୋମଃ । ପଂକ୍ତିଃ)

ପଦପାଠ : କାରୁଃ । ଅହମ୍ । ତତଃ । ଭିଷକ୍ । ଉପଲଽପ୍ରକ୍ଷିଣୀ । ନନା । ନାନାଽଧିୟଃ । ବସୁଽୟବଃ । ଅନୁ । ଗାଃଽଇବ । ତସ୍ଥିମ । ଇନ୍ଦ୍ରାୟ । ଇନ୍ଦୋ । ପରି । ସ୍ରବ ।

ପଦାର୍ଥ : (ଅହଂ କାରୁଃ) ମୁଁ ଶିଳ୍ପୀ (ତତଃ ଭିଷକ୍) ମୋର ପିତା ଚିକିତ୍ସକ (ନନା) ମୋର ମାତା (ଉପଲପ୍ରକ୍ଷିଣୀ) ପଥରପେଷଣ କରନ୍ତି । ଆମ୍ଭେମାନେ (ବସୂୟବଃ) ଧନର ଇଚ୍ଛା କରି (ନାନାଧିୟଃ) ନାନା ବୁଦ୍ଧି ଓ କଳାକୌଶଳଯୁକ୍ତ ହୋଇ (ଗାଃ ଇବ) ଗାଈମାନଙ୍କ ପରି (ଅନୁ ତସ୍ଥିମ) ଆଜ୍ଞାନୁସାରେ କାର୍ଯ୍ୟ କରୁଁ । (ଇନ୍ଦୋ) ହେ ଐଶ୍ୱର୍ଯ୍ୟଶାଳୀ ପ୍ରଭୋ ! (ଇନ୍ଦ୍ରାୟ) ଐଶ୍ୱର୍ଯ୍ୟପାଇଁ (ପରିସ୍ରବ) ସୁଖବୃଷ୍ଟି କର ।





॥ ମଣ୍ଡଳ ୯, ସୂକ୍ତ ୧୧୨, ମନ୍ତ୍ର ୩ ॥

—ଗୁହାଳରେ ଭିନ୍ନ ଭିନ୍ନ ପ୍ରକାର ଗାଈ ଦେଖାଯାନ୍ତି । ସେମାନଙ୍କର ଆକୃତି ଓ ବର୍ଣ୍ଣ ଭିନ୍ନ ଭିନ୍ନ ହୋଇଥାଏ । ସେମାନେ ଭିନ୍ନ ଭିନ୍ନ ପରିମାଣର ଦୁଧ ଦିଅନ୍ତି । ସମସ୍ତଙ୍କର ଦୁଧର ଗୁଣ ଓ ସ୍ୱାଦ ସମାନ ନ ଥାଏ । ଏହିସବୁ ବିବିଧତା ସତ୍ତ୍ୱେ ସମସ୍ତେ ଗୋଟିଏ ଗୁହାଳରେ ବନ୍ଧା ହୋଇ ରହିଥାନ୍ତି । ଗୃହପତିଙ୍କର ଉପକାରରେ ସମସ୍ତେ ନିଯୁକ୍ତ ହୋଇଥାନ୍ତି ।

ସେହିପରି ଗୋଟିଏ କୁଟୁମ୍ବମଧ୍ୟରେ ବିଭିନ୍ନ ବୃତ୍ତି ଓ ପ୍ରବୃତ୍ତିର ଲୋକ ବାସ କରନ୍ତି । ପ୍ରତ୍ୟେକଙ୍କର ଗୁଣ, କର୍ମ ଓ ସ୍ୱଭାବ ଭିନ୍ନ ଭିନ୍ନ ହୋଇଥାଏ । ପିତା ଚିକିତ୍ସକ ହେଲେ ପୁଅ ପୁଣି ନିଜର ଗୁଣ ଓ ଯୋଗ୍ୟତା ଅନୁସାରେ ଶିଳ୍ପଶାସ୍ତ୍ର ଅଧ୍ୟୟନ କରେ । ଚିକିତ୍ସା ପ୍ରତି ଶ୍ରଦ୍ଧା ନ ଥାଇ ପୁଅ ପୁଣି ଯେ ପିତାଙ୍କର ଚିକିତ୍ସା ବୃତ୍ତିକୁ ଅବଲମ୍ବନ କରିବ, ଏହା ଠିକ୍ ନୁହେଁ । ଏପରି କଲେ ପୁଅର ବ୍ୟକ୍ତିତ୍ୱର ବିକାଶ ଅଥବା କୁଟୁମ୍ବର ମଙ୍ଗଳ ହେବନାହିଁ ।

ବେଦ ବର୍ଣ୍ଣଧର୍ମର ପ୍ରଚାର କରିଛନ୍ତି । 'ବର୍ଣ୍ଣ' ଶବ୍ଦ 'ବୃ-ବରଣେ' ଧାତୁରୁ ଗଠିତ । ବ୍ୟକ୍ତି ନିଜ ଗୁଣ-କର୍ମ-ସ୍ୱଭାବ ଅନୁସାରେ ବର୍ଣ୍ଣ ପ୍ରାପ୍ତ ହୁଏ । ବର୍ଣ୍ଣ ଜନ୍ମରୁ ହୁଏ ନାହିଁ, ବ୍ୟକ୍ତିର ଗୁଣ-କର୍ମ-ସ୍ୱଭାବ ଅନୁସାରେ ନିର୍ଦ୍ଦିଷ୍ଟ ହୁଏ । ଗୋଟିଏ କୁଟୁମ୍ବମଧ୍ୟରେ ରହି ପୁଅ ପିତା, ମାତା ଓ ପୁଅର ଭିନ୍ନ ଭିନ୍ନ ପ୍ରବୃତ୍ତି ଓ ବୃତ୍ତି ବେଦମନ୍ତ୍ରରେ ସୂଚିତ ହୋଇଅଛି ।

॥ ମଣ୍ଡଳ ୧୦, ସୂକ୍ତ ୧୩, ମନ୍ତ୍ର ୧ ॥

ଯଶସ୍ୱୀ ଦମ୍ପତି

ଯୁଜେ ବାଂ ବ୍ରହ୍ମ ପୂର୍ବ୍ୟଂ ନମୋଭି

ର୍ବି ଶ୍ଲୋକ ଏତୁ ପଥ୍ୟେବ ସୂରେଃ ।

ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରା

ଆ ଯେ ଧାମାନି ଦିବ୍ୟାନି ତସ୍ଥୁଃ ॥

(ଆଙ୍ଗିର୍ହବିର୍ଧାନଃ । ହବିର୍ଧାନଃ । ତ୍ରିଷ୍ଟୁପ୍)

ପଦପାଠ : ଯୁଜେ । ବାମ୍ । ବ୍ରହ୍ମ । ପୂର୍ବ୍ୟମ୍ । ନମଃଽଭିଃ । ବି । ଶ୍ଲୋକଃ । ଏତୁ । ପଥ୍ୟାଽଇବ । ସୂରେଃ । ଶୃଣ୍ୱନ୍ତୁ । ବିଶ୍ୱେ । ଅମୃତସ୍ୟ । ପୁତ୍ରାଃ । ଆ । ଯେ । ଧାମାନି । ଦିବ୍ୟାନି । ତସ୍ଥୁଃ ॥

ପଦାର୍ଥ : ହେ ଦମ୍ପତି ! (ବାଂ ପୂର୍ବ୍ୟଂ ବ୍ରହ୍ମ) ତୁମ୍ଭ ଦୁହିଁଙ୍କର ପୂର୍ବବର୍ତ୍ତୀ ଜ୍ଞାନକୁ (ନମୋଭିଃ) ବିନୟ ଓ ଶିଷ୍ଟାଚାର ସହିତ (ଯୁଜେ) ଯୁକ୍ତ କରୁଅଛି, (ସୂରେଃ ପଥ୍ୟା ଇବ) ବିଜ୍ଞଜନଙ୍କର କଲ୍ୟାଣକାରିଣୀ ବାଣୀ ପରି (ଶ୍ଲୋକଃ) ତୁମ୍ଭ ଦୁହିଁଙ୍କର କୀର୍ତ୍ତି (ବି-ଏତୁ) ସର୍ବତ୍ର ବ୍ୟାପ୍ତ ହେଉ । (ବିଶ୍ୱେ) ସମସ୍ତ (ଅମୃତସ୍ୟ ପୁତ୍ରାଃ) ଅମୃତରୂପୀ ପରମାତ୍ମାଙ୍କର ସନ୍ତାନଗଣ (ଯେ) ଯେଉଁମାନେ (ଦିବ୍ୟାନି ଧାମାନି ଆ ତସ୍ଥୁଃ) ଦିବ୍ୟ ସ୍ଥଳରେ, ଦିବ୍ୟଜୀବନରେ ବିଦ୍ୟମାନ ଅଛନ୍ତି, ସେମାନେ (ଶୃଣ୍ୱନ୍ତୁ) ଏହା ଶୁଣନ୍ତୁ ।





॥ ମଣ୍ଡଳ ୧୦, ସୂକ୍ତ ୧୩, ମନ୍ତ୍ର ୧ ॥

—ବ୍ରହ୍ମଚର୍ଯ୍ୟାଶ୍ରମରୁ ଉତ୍ତୀର୍ଣ୍ଣ ହୋଇ ଯୁବକଯୁବତୀ ଗୃହସ୍ଥାଶ୍ରମରେ ପ୍ରବିଷ୍ଟ ହୁଅନ୍ତି । ସେମାନଙ୍କୁ ସମ୍ବୋଧନ କରି ବେଦ କହୁଛନ୍ତି— 'ହେ ନବଦମ୍ପତି ! ପୂର୍ବବର୍ତ୍ତୀ ବ୍ରହ୍ମଚର୍ଯ୍ୟାଶ୍ରମରୁ ଯେଉଁ ବିଦ୍ୟା, ତପ ଓ ବ୍ରହ୍ମଚର୍ଯ୍ୟ ଧାରଣ କରି ଆସିଅଛ, ଏହି ଆଶ୍ରମରେ ସେ ସବୁ ଉପଯୋଗ କର । ବିନୟଦ୍ୱାରା ବିଦ୍ୟାକୁ ସଫଳ କରିଅଛ । ବର୍ତ୍ତମାନ ଗୃହାଶ୍ରମରେ ବିନୟ, ସହିଷ୍ଣୁତାଦି ସଦ୍‌ଗୁଣଦ୍ୱାରା ଗୃହକାର୍ଯ୍ୟ ସଂପାଦନ କର । ତୁମ୍ଭ ଗୃହରେ ଶାନ୍ତି ଓ ଆନନ୍ଦ ବିରାଜିତ ହେଉ । ଆତ୍ମୀୟ-ସହାନୁଭୂତି ପାଇଁ ଲୋକେ ତୁମ୍ଭ ଗୃହକୁ ହସି ହସି ଆସନ୍ତୁ । ତୁମ୍ଭମାନଙ୍କ ଶିଷ୍ଟାଚାରର ସୁଗନ୍ଧ ଗ୍ରାମ, ନଗର ଓ ରାଜ୍ୟରେ ବ୍ୟାପି ଯାଉ । ଧନ, ଜନ ଓ ମନର ସଦ୍‌ବ୍ୟବହାର କରି କୀର୍ତ୍ତି ଲାଭ କର । କୋଟିପତିର ଧନ ନିଜ ଘରେ ପଡ଼ି ରହିଥିଲେ ସେହି ଧନ ପାଇଁ କେହି କେବେ ତାଙ୍କୁ ପ୍ରଶଂସା କରନ୍ତି ନାହିଁ । ସାଇତି ରଖିଥିବା ଘିଅରୁ ସୁଗନ୍ଧ ମିଳେ ନାହିଁ । ତାହାକୁ ଯଜ୍ଞରେ ଆହୁତି ଦେଲେ ସେହି ସୁଗନ୍ଧ ସମସ୍ତଙ୍କ ଠାରେ ବିକୀର୍ଣ୍ଣ ହୁଏ । ସେହିପରି ଧନକୁ ପରୋପକାର କର୍ମରେ ବିନିଯୋଗ କଲେ, ଧନପତିର ଗୌରବ ବୃଦ୍ଧି ପାଏ ।'

ନିଜ ଘରେ ଆଦର୍ଶ ସ୍ଥାପନ କରି ନ ପାରିଲେ, ଅନ୍ୟମାନଙ୍କୁ ପ୍ରଭାବିତ କରି ପାରିବାର ପ୍ରଶ୍ନ ନାହିଁ । ପତିପତ୍ନୀ ଉଭୟେ ଆଦର୍ଶବାନ ହେଲେ ବାହାରର ଲୋକେ ସେମାନଙ୍କ କଥାରେ ଗୁରୁତ୍ୱ ଆରୋପ କରନ୍ତି । ବେଦ କହୁଛନ୍ତି—"ହେ ଅମୃତପୁତ୍ର ମନୁଷ୍ୟଗଣ ! ଆଦର୍ଶ ଦମ୍ପତିଙ୍କ କର୍ମକୁ ଦେଖ । ସେମାନଙ୍କ କୀର୍ତ୍ତିକୁ ଶୁଣ । ସେଥିରେ ଉଦ୍‌ବୁଦ୍ଧ ହୁଅ ।"

॥ ମଣ୍ଡଳ ୧, ସୂକ୍ତ ୬୦, ମନ୍ତ୍ର ୪ ॥

ଜିତେନ୍ଦ୍ରିୟ ଗୃହସ୍ଥ

ଉଶିକ୍ ପାବକୋ ବସୁର୍ମାନୁଷେଷୁ

ବରେଣ୍ୟୋ ହୋତାଧାୟି ବିକ୍ଷୁ ।

ଦମୂନା ଗୃହପତିର୍ଦମ ଆଁ

ଅଗ୍ନିର୍ଭୁବଦ୍ ରୟିପତୀ ରୟୀଣାମ୍ ॥

( ନୋଧା ଗୌତମଃ । ଅଗ୍ନିଃ । ତ୍ରିଷ୍ଟୁପ୍ )

ପଦପାଠ: ଉଶିକ୍ । ପାବକଃ । ମାନୁଷେଷୁ । ବରେଣ୍ୟଃ । ହୋତା । ଅଧାୟି । ବିକ୍ଷୁ । ଦମୂନାଃ । ଗୃହଃପତିଃ । ଦମେ । ଆ । ଅଗ୍ନିଃ । ଭୁବତ୍ । ରୟିଃପତିଃ । ରୟୀଣାମ୍ ॥

ପଦାର୍ଥ : (ଉଶିକ୍) କାମନାଯୁକ୍ତ, କାନ୍ତିମାନ୍ (ପାବକଃ) ପବିତ୍ର (ବସୁଃ) ବସୁ (ମାନୁଷେଷୁ ବରେଣ୍ୟଃ) ମନୁଷ୍ୟଶ୍ରେଷ୍ଠ (ହୋତା) ଦାତା (ବିକ୍ଷୁ) ପ୍ରଜାଙ୍କ ମଧ୍ୟରେ (ଅଧାୟି) ଅଣାଗଲେ । (ଦମୂନାଃ) ଜିତେନ୍ଦ୍ରିୟ (ଗୃହପତିଃ) ଗୃହସ୍ଥ (ଦମେ) ଇନ୍ଦ୍ରିୟଦମନ ଯୋଗୁଁ (ରୟୀଣାଂ ରୟିପତିଃ) ଧନୀମାନଙ୍କ ମଧ୍ୟରେ ଧନୀ (ଅଗ୍ନିଃ) ନେତା (ଆ ଭୁବତ୍) ହୁଅନ୍ତି ।





॥ ମଣ୍ଡଳ ୧, ସୂକ୍ତ ୬୦, ମନ୍ତ୍ର ୪ ॥

—ସନ୍ତାନ-ସନ୍ତତି, ପଶୁଧନ, ଭୂସମ୍ପତ୍ତି, ଯାନବାହନ—ଏସବୁ ଗୃହସ୍ଥର କାମ୍ୟ ବସ୍ତୁ । ପରନ୍ତୁ କେଉଁ ସାଧନାବଳରେ ଗୃହସ୍ଥ ଏସବୁକୁ ଉପାର୍ଜନ କରିପାରେ ? ଗୃହସ୍ଥର ସବୁ ଧନର ମୂଳରେ କେଉଁ ଧନ ରହିଛି ?

ଗୃହସ୍ଥର ଅନ୍ନରେ ବ୍ରହ୍ମଚାରୀ, ବାନପ୍ରସ୍ଥୀ ଓ ସନ୍ନ୍ୟାସୀ ପ୍ରତିପାଳିତ ହୁଅନ୍ତି । ଗୃହସ୍ଥ ଓ ଗୃହିଣୀ ଏହି ପବିତ୍ର କର୍ତ୍ତବ୍ୟକୁ ସ୍ମରଣ ରଖିବା ବିଧେୟ । ମନ, ବଚନ ଓ କର୍ମରେ ସେବା ଓ ପବିତ୍ରତା ସଂଗ୍ରହ କରିବା ହିଁ ଗାର୍ହସ୍ଥ୍ୟର ଉଦ୍ଦେଶ୍ୟ । ଦୁର୍ବୃତ୍ତ ଓ ଅପବିତ୍ର ବ୍ୟକ୍ତି ଗୃହସ୍ଥାଶ୍ରମ ପାଳନ କରିବା ଦ୍ୱାରା ଦୁର୍ବୃତ୍ତର ଓ ଅପବିତ୍ରତା ବିସ୍ତାର ଲାଭ କରେ । ଏଥିରେ ସମାଜର ଅଶେଷ କ୍ଷତି ହୁଏ ।

ଗୃହାଶ୍ରମ ବିଷୟସେବନର ଅନୁମତି-ପତ୍ର ନୁହେଁ । ମହର୍ଷି ମନୁ କହିଛନ୍ତି—"ଦୁର୍ବଳ ଇନ୍ଦ୍ରିୟଯୁକ୍ତ ବ୍ୟକ୍ତିମାନେ ଗୃହାଶ୍ରମ ଧାରଣ କରିବା ପାଇଁ ଯୋଗ୍ୟ ନୁହନ୍ତି ।" କୁଟୁମ୍ବପରିଚାଳନା ପାଇଁ ଶକ୍ତି, ଉତ୍ସାହ ଓ ଆତ୍ମବିଶ୍ୱାସ ଆବଶ୍ୟକ ହୁଏ । ମନ ଓ ପ୍ରାଣରେ ଅଦମ୍ୟ ବଳର ପ୍ରୟୋଜନ ହୁଏ । ଇନ୍ଦ୍ରିୟସଂଯମଦ୍ୱାରା ହିଁ ଏସବୁ ସମ୍ଭବ ହୋଇଥାଏ । ଗୃହସ୍ଥୀ ଋତୁକାଳଗାମୀ ଓ ଏକପତ୍ନୀବ୍ରତଧାରୀ ହୋଇ ବ୍ରହ୍ମଚର୍ଯ୍ୟଜୀବନ ଯାପନ କରିବା ଉଚିତ ବୋଲି ଶାସ୍ତ୍ରକାର ବର୍ଣ୍ଣନା କରିଛନ୍ତି । ବ୍ରହ୍ମଚର୍ଯ୍ୟ ହିଁ ଗୃହସ୍ଥର ମୁଖ୍ୟ ଧନ । ଏହି ଧନ ନ ଥିଲେ ଅନ୍ୟ ସବୁ ଧନର କିଛି ମୂଲ୍ୟ ନାହିଁ । ଏହି ଧନ ଥିଲେ ଅନ୍ୟ ସବୁ ଧନ ଅଜାଡ଼ି ହୋଇ ଆସେ ।

॥ ମଣ୍ଡଳ ୧୦, ସୂକ୍ତ ୧୫୯, ମନ୍ତ୍ର ୨ ॥

ମାନବ ସମାଜର ନେତ୍ରୀ

ଅହଂ କେତୁରହଂ ମୂର୍ଧା

ଅହମୁଗ୍ରା ବିବାଚନୀ ।

ମମେଦନୁ କ୍ରତୁଂ ପତିଃ

ସେହାନାୟା ଉପାଚରେତ୍ ॥

( ପୌଲୋମୀ ଶଚୀ । ଶଚୀ । ଅନୁଷ୍ଟୁପ୍ )

ପଦପାଠ : ଅହମ୍ । କେତୁଃ । ଅହମ୍ । ମୂର୍ଧା । ଅହମ୍ । ଉଗ୍ରା । ବିଽବାଚନୀ । ମମ । ଇତ୍ । ଅନୁ । କ୍ରତୁମ୍ । ପତିଃ । ସେହାନାୟାଃ । ଉପଽଆଚରେତ୍ ॥

ପଦାର୍ଥ : (ଅହଂ) ମୁଁ (କେତୁଃ) ଯଶ ବୈଭବର ପତାକା, (ଅହଂ) ମୁଁ (ମୂର୍ଧା) ମସ୍ତକସଦୃଶ ଆଦରଣୀୟା, (ଅହଂ) ମୁଁ (ଉଗ୍ରା) ବଳଶାଳିନୀ (ବି-ବାଚନୀ) ବ୍ୟାଖ୍ୟାନ-କଳାକାର । (ସେହାନାୟାଃ) ଶତ୍ରୁଘାତିନୀ ବିଜୟିନୀ (ମମ କ୍ରତୁଂ) ମୋର ସୁପରାମର୍ଶ (ଅନୁ ଇତ୍) ଅନୁସାରେ (ପତିଃ) ମୋର ପତି (ଉପାଚରେତ୍) କର୍ମ କରନ୍ତୁ ।





॥ ମଣ୍ଡଳ ୧୦, ସୂକ୍ତ ୧୫୯, ମନ୍ତ୍ର ୨ ॥

—ପତାକା ବିଜୟର ଚିହ୍ନ, ବୈଭବର ସ୍ମାରକ ଅଟେ । ନାରୀ ହିଁ ରାଷ୍ଟ୍ରର ପତାକା ବା ଧ୍ୱଜାସଦୃଶ । ରାଷ୍ଟ୍ରର ଯଶ ଓ ବୈଭବ ନାରୀଜାତି ବା ମାତୃଶକ୍ତିର କର୍ମଶୀଳତା ଉପରେ ନିର୍ଭର କରେ । ବୀର ଓ ସଂକଳ୍ପବତୀ ମାତାର ଗର୍ଭରୁ ବୀର ସନ୍ତାନ ଜନ୍ମଗ୍ରହଣ କରି ଦେଶ-ମାତୃକାର ଯଶ ବର୍ଦ୍ଧନ କରନ୍ତି । ନାରୀଜାତିର ଆଶୀର୍ବାଦରୁ ହିଁ ମନୁଷ୍ୟମାନଙ୍କର ସକଳ ସମୃଦ୍ଧି ସମ୍ଭବପର ହୋଇଥାଏ ।

ନାରୀ ପରିବାରର ମସ୍ତକତୁଲ୍ୟ ଅଟେ । ମସ୍ତକକୁ ଦେଖି ମନୁଷ୍ୟକୁ ଚିହ୍ନି ବା ପରି ଗୃହିଣୀର ଆଚାର-ବ୍ୟବହାରରୁ ପରିବାର ସମ୍ବନ୍ଧରେ ଧାରଣା ମିଳେ । ଗୃହିଣୀର ସୁପରିଚାଳନା ଓ ଶିଷ୍ଟାଚାର ଯୋଗୁଁ ପରିବାର ସ୍ୱର୍ଗ ପାଲଟିଯାଏ । ତାହାର ପ୍ରବଚନଶୈଳୀ ଉଦ୍‌ବୋଧନଦ୍ୱାରା ପତି ଓ ସନ୍ତାନବର୍ଗ ଉତ୍ସାହ ଓ ପ୍ରେରଣା ଲାଭ କରନ୍ତି । ଗୁଣବତୀ ପତ୍ନୀ ଦୁଃସମୟ ପତିର ପଥ-ପ୍ରଦର୍ଶକ ହୋଇଥାଏ । ପତ୍ନୀର ସୁପରାମର୍ଶ ଗ୍ରହଣ କରି ପତି ଅନେକ ବିପଦରୁ ରକ୍ଷା ପାଏ ।

ନାରୀ ଜନନୀ ଓ ନେତ୍ରୀ । ନରର ଏହି ମହତ୍ ସ୍ୱରୂପକୁ ଯେଉଁ ରାଷ୍ଟ୍ରର ନାରୀ ଉପଲବ୍ଧି କରି ସମସ୍ତଙ୍କ ସମକ୍ଷରେ ଦୃଢ଼ ଘୋଷଣା କରିପାରେ, ତାହାର ଅଭ୍ୟୁଦୟ ଅବଶ୍ୟମ୍ଭାବୀ ।

॥ ମଣ୍ଡଳ ୧୦, ସୂକ୍ତ ୧୫୯, ମନ୍ତ୍ର ୩ ॥

ମୁଁ ବିଜୟିନୀ

ମମ ପୁତ୍ରାଃ ଶତ୍ରୁହଣୋ

ଽଥୋ ମେ ଦୁହିତା ବିରାଟ୍ ।

ଉତାହମସ୍ମି ସଂଜୟା

ପତ୍ୟୌ ମେ ଶ୍ଳୋକ ଉତ୍ତମଃ ॥

( ପୌଲୋମୀ ଶଚୀ । ଶଚୀ । ଅନୁଷ୍ଟୁପ୍ )

ପଦପାଠ : ମମ । ପୁତ୍ରାଃ । ଶତ୍ରୁହନଃ । ଅଥୋ ଇତି । ମେ । ଦୁହିତା । ବିରାଟ୍ । ଉତ । ଅହମ୍ । ଅସ୍ମି । ସଂଜୟା । ପତ୍ୟୌ । ମେ । ଶ୍ଳୋକଃ । ଉତ୍ତମଃ ॥

ପଦାର୍ଥ : (ମମ ପୁତ୍ରାଃ) ମୋର ପୁତ୍ରଗଣ (ଶତ୍ରୁହନଃ) ଦୁଷ୍ଟଦଳନକାରୀ (ଅଥୋ) ଏବଂ (ମେ ଦୁହିତା) ମୋର କନ୍ୟା (ବିରାଟ୍) ତେଜସ୍ୱିନୀ (ଉତ) ତଥା (ଅହଂ) ମୁଁ (ସଞ୍ଜୟା) ବିଜୟିନୀ (ଅସ୍ମି) ଅଟେ । (ମେ) ମୋର (ପତ୍ୟୌ) ପତିଙ୍କ ଠାରେ (ଉତ୍ତମଃ ଶ୍ଳୋକଃ) ଉତ୍ତମ ଯଶ ରହୁ ।





॥ ମଣ୍ଡଳ ୧୦, ସୂକ୍ତ ୧୫୯, ମନ୍ତ୍ର ୩ ॥

—କୁଟୁମ୍ବ କହିଲେ ପ୍ରାସାଦକୁ ବୁଝାଏ ନାହିଁ । କୁଟୁମ୍ବର ଅର୍ଥ ଧନଧାନ୍ୟ ସ୍ଥାବର ସଂମ୍ପତ୍ତି ନୁହେଁ । ଯେତେକ ଲୋକ ଗୋଟିଏ ଗୃହରେ ଏକାଠି ବାସ କଲେ, ତାହା ଏକ କୁଟୁମ୍ବରେ ପରିଣତ ହୁଏ ନାହିଁ । ପିତାମାତାସନ୍ତାନଙ୍କର ସ୍ନେହପ୍ରେମଶ୍ରଦ୍ଧାଶୂନ୍ୟ ଏକ ପରିବେଶ ପ୍ରକୃତ କୁଟୁମ୍ବ ପଦବାଚ୍ୟ ନୁହେଁ । ଏମାନଙ୍କର ପରସ୍ପର ଏକନିଷ୍ଠ ଶ୍ରଦ୍ଧା ଓ ଭକ୍ତିବ୍ୟଞ୍ଜନ ଦ୍ୱାରା ଏକ କୁଟୁମ୍ବ ଗଠିତ ହୁଏ ଓ ତାହା ସ୍ୱର୍ଗ ବା ଆନନ୍ଦ-ଭୂମିରେ ପରିଣତ ହୁଏ ।

ସ୍ୱାମୀର ଅକଳଙ୍କ ସାଧନା-ସମ୍ପୃକ୍ତ ଦ୍ୱାରା ଗୃହିଣୀ ସୁଫଳଭ କରେ ନାହିଁ । ପୁତ୍ର ସାର ଓ ଶତ୍ରୁହନ୍ତା ହେଲେ ଗୃହିଣୀ ସୁଖୀ ହୁଏ । ବୈଦିକ-ସାହିତ୍ୟରେ ଶତ୍ରୁର ଅର୍ଥ ଯାହା (ଅର୍ଥାତ୍ କଦମ) ଭଙ୍ଗ କରୁଥିବା ଦୁଷ୍ଟ ବ୍ୟକ୍ତି । ନଗର ସ୍ୱ ସମାଜରେ ଅନ୍ୟାୟ ସାଧନ କରୁଥିବା ଲୋକଙ୍କୁ ପରାଭବ କରି ଧର୍ମ ଓ ନ୍ୟାୟ ପ୍ରତିଷ୍ଠା କରିବାର ଦେଖିଲେ ମାତା ଅପୂର୍ବ ଗର୍ବ ଅନୁଭବ କରେ । ପୁତ୍ରଗୌରବରୁ ସ୍ୱଧର ବିଜୟସମ୍ବାଦ ମାତାପାଇଁ ସ୍ୱର୍ଗୀୟ ସମ୍ବାଦ । ସେହିପରି କନ୍ୟା ବିଦ୍ୟା କଳାବତୀ ଓ ତେଜସ୍ୱିନୀ ହେଲେ ମାତା ଆନନ୍ଦ ଲାଭ କରେ । ଏଭଳି କନ୍ୟାରତ୍ନ ପାଇ ସେ ଭୌତିକ ରତ୍ନକୁ ଭୁଲିଯାଏ । ସେବାବ୍ରତକର କର୍ମଦ୍ୱାରା ପତି ପ୍ରଶଂସିତ ହେଲେ ପତ୍ନୀର ଆନନ୍ଦର ପାରାବାର ରହେ ନାହିଁ । ଅନ୍ୟ ପକ୍ଷରେ ପୁତ୍ର ଦୁର୍ବଳ ଓ ସ୍ୱାର୍ଥପର ହେଲେ, କନ୍ୟା ବିଳାସିନୀ ହେଲେ ଓ ପତି ଅସାଧୁକର କାର୍ଯ୍ୟ କରି ସମାଜରେ ଉପହସିତ ହେଲେ, ସ୍ତ୍ରୀର ଜୀବନ ଦୁଃଖମୟ ହୁଏ ।

॥ ମଣ୍ଡଳ ୧୦, ସୂକ୍ତ ୮୬, ମନ୍ତ୍ର ୯ ॥

ବୈଦିକ ନାରୀ

ଅବୀରାମିବ ମାମୟଂ

ଶରାରୁରଭି ମନ୍ୟତେ ।

ଉତାହମସ୍ମି ବୀରିଣୀ-

ନ୍ଦ୍ରପତ୍ନୀ ମରୁତ୍‌ସଖା

ବିଶ୍ୱସ୍ମାଦିନ୍ଦ୍ର ଉତ୍ତରଃ ॥

( ଇନ୍ଦ୍ରାଣୀ । ଇନ୍ଦ୍ରଃ । ପଂକ୍ତିଃ )

ପଦପାଠ : ଅବୀରାଂଃଇବ । ମାମ୍ । ଅୟମ୍ । ଶରାରୁଃ । ଅଭି । ମନ୍ୟତେ । ଉତ । ଅହମ୍ । ଅସ୍ମି । ବୀରିଣୀ । ଇନ୍ଦ୍ରଃପତ୍ନୀ । ମରୁତ୍‌ଃସଖା । ବିଶ୍ୱସ୍ମାତ୍ । ଇନ୍ଦ୍ରଃ । ଉତ୍‌ଃତରଃ ॥

ପଦାର୍ଥ : (ଅୟଂ ଶରାରୁଃ) ଏହି ଘାତକ (ମାମ୍) ମୋତେ (ଅବୀରାମ୍ ଇବ) ଅବଳା ପରି (ଅଭିମନ୍ୟତେ) ମନେ କରୁଛି । (ଅହଂ ବୀରିଣୀ ଅସ୍ମି) ମୁଁ ବୀରାଙ୍ଗନା ଅଟେ (ଉତ) ଏବଂ (ଇନ୍ଦ୍ରପତ୍ନୀ) ବୀରପୁରୁଷଙ୍କ ପତ୍ନୀ ଅଟେ; (ମରୁତ୍ ସଖା) ମୃତ୍ୟୁକୁ ଡରୁ ନ ଥିବା ବୀର ମୋର ସଖା; (ଇନ୍ଦ୍ରଃ) ମୋର ପତିଦେବ (ବିଶ୍ୱସ୍ମାତ୍) ସମସ୍ତଙ୍କଠାରୁ (ଉତ୍ତରଃ) ଉତ୍କୃଷ୍ଟତର ଅଟନ୍ତି ।



॥ ମଣ୍ଡଳ ୧୦, ସୂକ୍ତ ୮୬, ମନ୍ତ୍ର ୯ ॥

—ବେଦ ନାରୀକୁ ଅବଳା ବୋଲି ବର୍ଣ୍ଣନା କରି ନାହାନ୍ତି । ଯେ ବୀର ପୁରୁଷଙ୍କୁ ଜନ୍ମ ଦିଏ, ସେ ମହାବୀରା । ପରବର୍ତ୍ତୀ କାଳରେ ନାରୀର ପ୍ରତିଷ୍ଠାକୁ ଗୌଣ କରି ଦିଆଗଲା । ବେଦାଦି ଶାସ୍ତ୍ରର ଅଧ୍ୟୟନ-ଅଧ୍ୟାପନରେ ନାରୀର ଅଧିକାର ନାହିଁ ବୋଲି ପ୍ରଚାର କରାଗଲା । କୁହାଗଲା ଯେ, ନାରୀ ଜୀବନ ସାରା ଅନ୍ୟର ଆଶ୍ରୟରେ ରହେ । ନାରୀ ଏକାକୀ ରହି ପାରେ ନାହିଁ । ସାଧୁସନ୍ଥ ବୋଲାଉଥିବା ଲୋକେ ମଧ୍ୟ ନାରୀକୁ ସମସ୍ତ ପାପର ମୂଳ ବୋଲି ବର୍ଣ୍ଣନା କରିଛନ୍ତି ।

ବେଦବର୍ଣ୍ଣିତା ନାରୀ ନୀରବରେ ଲାଞ୍ଛନା ଓ ଅତ୍ୟାଚାର ସହ୍ୟ କରେ ନାହିଁ । ଦୋଷୀ ପ୍ରତି ନାରୀର ଭାବନା କଠୋର । ପାପୀ ପ୍ରତି ମାୟାର ଲେଶ ନାହିଁ । ନାରୀ ଈର୍ଷାଳୁ ନୁହେଁ, ବରଂ ସେ ଅନ୍ୟର ଦୋଷ-ସଂଶୋଧନ ପାଇଁ ଉଚିତ ଶିକ୍ଷା ଦେବାକୁ ଜାଣେ । ମନ୍ତ୍ରରେ ଜଣେ ଘାତକ ଓ ଅତ୍ୟାଚାରୀ ପ୍ରତି ଧିକ୍‌କାର-ବାଣୀ ଶୁଣାଇ ନାରୀ କହେ—"ରେ ଘାତକ! ମୋତେ ତୁ ଭୁଲରେ ଅବଳା ବୋଲି ମନେ କରୁଅଛୁ । ମୁଁ ବୀର, ମୋର ପତି ବୀର । ସେ ବୀର ମରୁତ୍ ଅର୍ଥାତ୍ ଦେଶ ମଣ୍ଡ ଭୃତି ଅତ୍ୟାଚାରୀ ବିରୁଦ୍ଧରେ ସଂଗ୍ରାମ କରନ୍ତି । ରେ କାପୁରୁଷ ! ମୋର ଶକ୍ତି ବାଣୀ ଓ ଦୃଷ୍ଟିରେ ତୁ କମ୍ପମାନ ହେଉଥିବା ମୁଁ ଦେଖୁଅଛି ।"

ବେଦ ନାରୀର ଗୁଣଗରିମା ଗାନ କରିଛନ୍ତି । ନାରୀକୁ ସଭା ଓ ସେନାର ପରିଚାଳନା ପାଇଁ ଉପଦେଶ ଦେଇଛନ୍ତି । ଏପରିକି ସୈନ୍ୟଚାଳନା ପାଇଁ ମଧ୍ୟ ତାହାକୁ ଯୋଗ୍ୟ ବୋଲି ପ୍ରତିପାଦନ କରିଛନ୍ତି ।

॥ ମଣ୍ଡଳ ୧୦, ସୂକ୍ତ ୮୫, ମନ୍ତ୍ର ୪୭ ॥

ବରକନ୍ୟାଙ୍କ ଘୋଷଣା

ସମଂଜନ୍ତୁ ବିଶ୍ୱେଦେବାଃ

ସମାପୋ ହୃଦୟାନି ନୌ ।

ସଂ ମାତରିଶ୍ୱା ସଂ ଧାତା

ସମୁ ଦେଷ୍ଟ୍ରୀ ଦଧାତୁ ନୌ ॥

(ସାବିତ୍ରୀ ସୂର୍ଯ୍ୟା । ସାବିତ୍ରୀ । ଅନୁଷ୍ଟୁପ୍)

ପଦପାଠ : ସମ୍ । ଅଂଜନ୍ତୁ । ବିଶ୍ୱେ । ଦେବାଃ । ସମ୍ । ଆପଃ । ହୃଦୟାନି । ନୌ । ସମ୍ । ମାତରିଶ୍ୱା । ସମ୍ । ଧାତା । ସମ୍ । ଉଁ ଇତି । ଦେଷ୍ଟ୍ରୀ । ଦଧାତୁ । ନୌ ॥

ପଦାର୍ଥ : (ବିଶ୍ୱେଦେବାଃ) ହେ ବିଶ୍ୱର ଦେବତାଗଣ ! (ସମ୍ ଅଂଜନ୍ତୁ) ଆମ୍ଭମାନଙ୍କର ସମାନ ଚରିତ୍ରକୁ ନିଶ୍ଚୟପୂର୍ବକ ଜାଣନ୍ତୁ । (ନୌ ହୃଦୟାନି) ଆମ୍ଭ ଦୁହିଙ୍କ ହୃଦୟ (ଆପଃ) ଜଳସମାନ (ସମ୍) ଶାନ୍ତ ହେଉ । ଆମ୍ଭେମାନେ (ମାତରିଶ୍ୱା ସମ୍) ପ୍ରାଣବାୟୁ ପରି ଶାନ୍ତିକାରକ ହେବୁଁ; (ଧାତା ସମ୍) ଧାରଣକର୍ତ୍ତା ପରମେଶ୍ୱରଙ୍କ ପରି ପରସ୍ପର ଧାରଣ କରି ରହିବୁଁ; (ଦେଷ୍ଟ୍ରୀ) ଉପଦେଶକ (ନୌ) ଆମ ଦୁହିଁଙ୍କୁ (ସଂ ଦଧାତୁ) ଉତ୍ତମ ଭାବରେ ଧାରଣ କରନ୍ତୁ ।





॥ମଣ୍ଡଳ୧୦, ସୂକ୍ତ ୮୫, ମନ୍ତ୍ର ୪୭ ॥

—ବିବାହସଂସ୍କାର ବେଳେ ବରକନ୍ୟା ଉଭୟେ ପ୍ରତିଜ୍ଞା ନେଇ କହନ୍ତି—

ଯଜ୍ଞବେଦୀରେ ବସିଥିବା ହେ ବିଦ୍ୱାନ୍‌ଗଣ ! ଅଗ୍ନି, ବାୟୁ ପ୍ରଭୃତି ବିଶ୍ୱର ସମସ୍ତ ଦିବ୍ୟ ଶକ୍ତିସମ୍ପନ୍ନ ହେ ଦେବଗଣ ! ଆମ୍ଭେ ଦୁହେଁ ସମସ୍ତଙ୍କର ସମ୍ମୁଖରେ ଶପଥ ନେଉଅଛୁଁ । ଗୃହସ୍ଥାଶ୍ରମରେ ଆମ୍ଭ ଦୁହିଁଙ୍କ ହୃଦୟ ଜଳସମାନ ଶାନ୍ତ ଓ ଶୀତଳ ହେଉ । ଜଳକୁଣ୍ଡରେ ଜଳ ମିଶାଇଲେ ଅଥବା ଜଳକୁଣ୍ଡରୁ ଜଳ ଉତ୍ତୋଳନ କଲେ କୁଣ୍ଡରେ ଥିବା ଜଳର ପୃଷ୍ଠଭାଗ ବା ତଳ ସବୁବେଳେ ସମାନ ରହେ । ସେହିପରି ଆମ୍ଭେ ଦୁହେଁ ପରସ୍ପର ସୁଖଦୁଃଖରେ ସମଭାଗୀ ହେବୁ । ଜଣକର ଦୁଃଖରେ ଜଣେ ସମଦୁଃଖୀ, ଜଣକର ସୁଖରେ ଜଣେ ସମସୁଖୀ ହୋଇ କାଳାତିପାତ କରିବୁଁ । ପ୍ରାଣବାୟୁ ଯେପରି ଦେହର ନିଃସ୍ୱାର୍ଥ ସେବକ, ସେହିପରି ଜଣେ ଅନ୍ୟର ସହାୟକ ହେବୁଁ । ପରମେଶ୍ୱର ଜୀବମାନଙ୍କୁ ଧାରଣ କରି ରଖିବା ପରି ଜୀବନଯାତ୍ରାରେ ଜଣେ ଅନ୍ୟର ସହଯାତ୍ରୀ ଓ ସହାୟକ ହେବୁଁ । ଶତ ବାଧାବିଘ୍ନ ସତ୍ତ୍ୱେ କେହି କାହାରିକୁ ପରିତ୍ୟାଗ କରିବୁ ନାହିଁ । ଉପଦେଶକ ଶ୍ରୋତାମାନଙ୍କୁ ଆକୃଷ୍ଟ କରି ରଖୁଥିବା ପରି ପରସ୍ପର ପ୍ରୀତିପୂର୍ବକ ବାସ କରିବୁଁ ।

ମନ୍ତ୍ରରେ 'ନୌ' ଅର୍ଥାତ୍ 'ଆମ୍ଭେ ଦୁହେଁ' ଏହି ଦ୍ୱିବଚନର ସର୍ବନାମ ପ୍ରୟୋଗ କରାଯାଇଛି । କାରଣ ଏଠାରେ ବରକନ୍ୟା ଉଭୟେ ଶପଥ ନିଅନ୍ତି । ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ବେଦପାଠ ଓ ଯଜ୍ଞକ୍ରିୟାରେ ସ୍ତ୍ରୀର ପୂର୍ଣ୍ଣ ଅଧିକାର ଅଛି ।

॥ ମଣ୍ଡଳ ୮, ସୂକ୍ତ ୮୮, ମନ୍ତ୍ର ୩ ॥

ମନୁଷ୍ୟର ଅମାପ ବଳ

ନ କ୍ଷୋଣୀଭ୍ୟାଂ ପରିଭ୍ୱେ ତ ଇନ୍ଦ୍ରିୟଂ
ନ ସମୁଦ୍ରୈଃ ପର୍ବତୈରିନ୍ଦ୍ର ତେ ରଥଃ ।
ନ ତେ ବଜ୍ରମନ୍ୱଶ୍ନୋତି କଶ୍ଚନ
ଯଦାଶୁଭିଃ ପତସି ଯୋଜନା ପୁରୁ ॥

(ଶ୍ରୌତକକ୍ଷଃ । ଇନ୍ଦ୍ରଃ । ଜଗତୀ)

ପଦପାଠ : ନ । କ୍ଷୋଣୀଭ୍ୟାମ୍ । ପରିଭ୍ୱେ । ତେ । ଇନ୍ଦ୍ରିୟମ୍ । ନ । ସମୁଦ୍ରୈଃ । ପର୍ବତୈଃ । ଇନ୍ଦ୍ର । ତେ । ରଥଃ । ନ । ତେ । ବଜ୍ରମ୍ । ଅନୁ । ଅଶ୍ନୋତି । କଃ । ଚନ । ଯତ୍ । ଆଶୁଭିଃ । ପତସି । ଯୋଜନା । ପୁରୁ ॥

ପଦାର୍ଥ : (ଇନ୍ଦ୍ର) ହେ ମନୁଷ୍ୟ! (ତେ ଇନ୍ଦ୍ରିୟଂ) ତୁମର ଇନ୍ଦ୍ରିୟବଳ (କ୍ଷୋଣୀଭ୍ୟାମ୍) ଭୂମି ଓ ଆକାଶଦ୍ୱାରା ଏବଂ (ତେ ରଥଃ) ତୁମର ରଥ (ସମୁଦ୍ରୈଃ ପର୍ବତୈଃ) ସମୁଦ୍ର ପାହାଡ଼ଦ୍ୱାରା (ପରିଭ୍ୱେ ନ) ପରାଜିତ ହୁଏ ନାହିଁ । (ତେ ବଜ୍ରମ୍) ତୁମର ବଜ୍ରକୁ (କଶ୍ଚନ) କେହି (ନ ଅନ୍ୱଶ୍ନୋତି) ସମ୍ମୁଖୀନ ହୁଏ ନାହିଁ (ଯତ୍) ଯେଣୁ ତୁମେ (ଆଶୁଭିଃ) ଶୀଘ୍ରଗାମୀ ବାହନ ଦ୍ୱାରା (ପୁରୁ ଯୋଜନା) ବହୁ ଯୋଜନ ପର୍ଯ୍ୟନ୍ତ (ପତସି) ଉଡ଼ିପାର ।





॥ ମଣ୍ଡଳ ୮, ସୂକ୍ତ ୮୮, ମନ୍ତ୍ର ୩ ॥

—ଲୌକିକ ସାହିତ୍ୟରେ ମନୁଷ୍ୟକୁ କ୍ଷୁଦ୍ର, ନୀଚ ଓ ସ୍ଥଳେ ସ୍ଥଳେ ପାପୀ ବୋଲି ବର୍ଣ୍ଣନା କରାଯାଇଛି । ପରନ୍ତୁ ବୈଦିକ ସାହିତ୍ୟ ମନୁଷ୍ୟକୁ ମହାନ୍ ବୋଲି ସଂବୋଧନ କରିଛନ୍ତି । ବେଦ କହିଛନ୍ତି—

"ହେ ମନୁଷ୍ୟ! ତୁମେ ଅପାର ଶକ୍ତିର ଅଧିକାରୀ; ଏହି ଆତ୍ମବିଶ୍ୱାସ ଲାଭ କରିବା ପାଇଁ ମୁଁ ତୁମକୁ ବେଦୋପଦେଶ ଦେଇଅଛି । ସୃଷ୍ଟିରେ ବହୁ ଭୟାନକ ଜୀବ ଅଛନ୍ତି । ତୁମ ଠାରୁ ଆକୃତି ଓ ବଳରେ ସେମାନେ ଅତି ବୃହତ୍ । ପରନ୍ତୁ ବୁଦ୍ଧିଦ୍ୱାରା ତୁମେ ସେହି ପଶୁରାଜ ସିଂହ, ମତୁଆଲା ହାତୀକୁ ମଧ୍ୟ ବାନ୍ଧି ଦେଇପାର । ଏହି ଦୁର୍ଦ୍ଧର୍ଷ ବନ୍ଦୀମାନଙ୍କଦ୍ୱାରା ନିଜର କାର୍ଯ୍ୟ ସମ୍ପାଦନ କରିପାର । ତୁମକୁ ଜାଳିପୋଡ଼ି, ଉଡ଼ାଇ, ଭସାଇ ଦେବା ପରି ମହାନ୍ ପାଞ୍ଚଭୌତିକ ଶକ୍ତିମାନେ ସୃଷ୍ଟିରେ ଅଛନ୍ତି । ଶୀଘ୍ରଗାମୀ ବିଦ୍ୟୁତ୍, ପ୍ରଚଣ୍ଡ ତାପ, ମହାବଳୀ ବାୟୁର ସମ୍ମୁଖରେ ତୁମେ ତୁଚ୍ଛ ଅଟ! ପରନ୍ତୁ ନିଜ ଜ୍ଞାନବିଜ୍ଞାନ ବଳରେ ତୁମେ ସେ ସମସ୍ତଙ୍କୁ କ୍ରୀତଦାସ ପରି ପରିଭୂତ କରି ନିଜ ସେବାରେ ନିଯୁକ୍ତ କରିପାରୁଅଛ । ବିଦ୍ୟା ଓ ସାଧନା ବଳରେ ତୁମେ ଆକାଶ ଓ ଭୂମିକୁ ସହଜରେ ଅତିକ୍ରମ କରିବା କୌଶଳ ଜାଣ । ମନୁଷ୍ୟ! ମନେରଖ, ତୁମେ ଅଲୌକିକ ତତ୍ତ୍ୱରେ ନିର୍ମିତ ହୋଇଅଛ । ମୁହୂର୍ତ୍ତକ ମଧ୍ୟରେ ତୁମର ତେଜସ୍ୱୀ ମନ ପୃଥିବୀ ପରିକ୍ରମା କରିପାରେ, ତୁମର ଶ୍ରଦ୍ଧାଳୁ ହୃଦୟ ସମସ୍ତ ସଂସାରକୁ ଜୟ କରିପାରେ । ତୁମେ ଶ୍ରଦ୍ଧା ଓ ସଂକଳ୍ପମୟ ଜୀବ । ଏହା ସର୍ବଦା ସ୍ମରଣ ରଖ ।"

॥ ମଣ୍ଡଳ ୧୦, ସୂକ୍ତ ୧୮, ମନ୍ତ୍ର ୪ ॥

ଶତବର୍ଷୀୟ ଯୋଜନା

ଇମଂ ଜୀବେଭ୍ୟଃ ପରିଧିଂ ଦଧାମି

ମୈଷାଂ ନୁ ଗାଦପରୋ ଅର୍ଥମେତମ୍ ।

ଶତଂ ଜୀବନ୍ତୁ ଶରଦଃ ପୁରୂଚୀ-

ରନ୍ତର୍ମୃତ୍ୟୁଂ ଦଧତାଂ ପର୍ବତେନ ॥

( ସଂକୁସୁକୋ ଯାମାୟନଃ । ମୃତ୍ୟୁଃ । ତ୍ରିଷ୍ଟୁପ୍ )

**ପଦପାଠ :** ଇମମ୍ । ଜୀବେଭ୍ୟଃ । ପରିଧିମ୍ । ଦଧାମି । ମା । ଏଷାମ୍ । ନୁ । ଗାତ୍ । ଅପରଃ । ଅର୍ଥମ୍ । ଏତମ୍ । ଶତମ୍ । ଜୀବନ୍ତୁ । ଶରଦଃ । ପୁରୂଚୀଃ ଅନ୍ତଃ । ମୃତ୍ୟୁମ୍ । ଦଧତାମ୍ । ପର୍ବତେନ ॥

**ପଦାର୍ଥ :** ପରମେଶ୍ୱର ଉପଦେଶ ଦିଅନ୍ତି—(ଜୀବେଭ୍ୟଃ) ମନୁଷ୍ୟଙ୍କ ପାଇଁ (ଇମଂ ପରିଧିମ୍) ପ୍ରାଣରକ୍ଷାବ୍ୟବସ୍ଥା, ଆୟୁ ମର୍ଯ୍ୟାଦା (ଦଧାମି) ସ୍ଥାପନ କରୁଅଛି । (ଏଷାମ୍) ଏମାନଙ୍କ ମଧ୍ୟରେ (ଅପରଃ) କେହି ହେଲେ (ଏତମ୍ ଅର୍ଥମ୍) ଏହି ଜୀବନରୂପୀ ଧନକୁ (ମା ଗାତ୍ ନୁ) ଉଲ୍ଲଙ୍ଘନ କରନ୍ତୁ ନାହିଁ; (ଶତଂ ଶରଦଃ) ଶତବର୍ଷ (ପୁରୂଚୀଃ) ତା'ଠାରୁ ମଧ୍ୟ ଅଧିକ କାଳ (ଜୀବନ୍ତୁ) ଜୀବିତ ରହନ୍ତୁ; (ଅନ୍ତଃ ମୃତ୍ୟୁମ୍) ଅକାଳମୃତ୍ୟୁକୁ (ପର୍ବତେନ) ପୁରୁଷାର୍ଥ ଦ୍ୱାରା (ଦଧତାମ୍) ଦୂର କରନ୍ତୁ ।





॥ ମଣ୍ଡଳ ୧୦, ସୂକ୍ତ ୧୮, ମନ୍ତ୍ର ୪ ॥

—ମନୁଷ୍ୟର ସ୍ୱାଭାବିକ ଆୟୁ ଶହେ ବର୍ଷ ଅଟେ । ପ୍ରାଚୀନ ମନୁଷ୍ୟମାନେ ଶୁଦ୍ଧ ଆହାରବିହାର ପୂର୍ବକ ସରଳ ଓ ସଂଯତ ଜୀବନ ଯାପନ କରି ଶହେରୁ ଅଧିକ ବର୍ଷ ଜୀବିତ ରହୁଥିଲେ । ବେଦମଂତ୍ରରେ ମନୁଷ୍ୟର ଆୟୁବ୍ୟବସ୍ଥାକୁ 'ପରିଧି' କୁହାଯାଇଛି । ଏହି 'ପରିଧି' ଶବ୍ଦ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ବୃତ୍ତର ପରିଧି ଗୋଟିଏ ବିନ୍ଦୁକୁ କେନ୍ଦ୍ର କରି ସମାନ ବ୍ୟାସାର୍ଦ୍ଧଦ୍ୱାରା ଗଠିତ ହୋଇଥାଏ । ସୁତରାଂ ଶହେ ବର୍ଷର ଆୟୁବ୍ୟବସ୍ଥା ଗୋଟିଏ ବିନ୍ଦୁକୁ କେନ୍ଦ୍ର କରି ଗଠିତ । ଏହି କେନ୍ଦ୍ର ବିନ୍ଦୁ ମୋକ୍ଷ ଅଟେ । ଧର୍ମଶକ୍ତିଦ୍ୱାରା ଅର୍ଥ ଓ କାମକୁ ସଂଯତ କରି ରଖିବା ଜୀବନର ଅନ୍ତରଙ୍ଗ ମାର୍ଗ ବା ଜୀବନ ବୃତ୍ତର ବ୍ୟାସ ଅଟେ । ମୋକ୍ଷ ଜୀବନର ଲକ୍ଷ୍ୟ ବା କେନ୍ଦ୍ର । ପରିଧି ଯେଉଁ ବିନ୍ଦୁରୁ ବାହାରିଥାଏ, ସେଠାରେ ସମାପ୍ତ ହୁଏ । ଜୀବନ-ମୃତ୍ୟୁର ଚକ୍ର ମଧ୍ୟ ଠିକ୍ ଏହିପରି ।

ମନୁଷ୍ୟର ଜନ୍ମ, ବୃଦ୍ଧି, ହ୍ରାସ ଓ ମୃତ୍ୟୁକୁ ଲକ୍ଷ୍ୟ କରି ଋଷିଗଣ ବ୍ରହ୍ମଚର୍ଯ୍ୟାଦି ଚାରି ଆଶ୍ରମର ଆବିଷ୍କାର କରିଥିଲେ । ଗୋଟିଏ ଆଶ୍ରମ ପରେ ଅନ୍ୟଟିରେ ପ୍ରବେଶ ନ କଲେ ଜୀବନର ପରିଧି ସମାପ୍ତ ହୁଏ ନାହିଁ, ଖଣ୍ଡିତ ହୋଇଯାଏ । ପରିଧି ସମାପ୍ତ ନ ହେଲେ କ୍ଷେତ୍ରଫଳ ସିଦ୍ଧ ହୁଏ ନାହିଁ; ଅର୍ଥାତ୍ ଦେହରୂପୀ କ୍ଷେତ୍ରର ଉବେଣୀ ଫଳ ହୁଏ । ମଂତ୍ରର ଶେଷାର୍ଦ୍ଧରେ କୁହାଯାଇଛି ଯେ ପୁରୁଷାର୍ଥଦ୍ୱାରା ମନୁଷ୍ୟ ଅକାଳମୃତ୍ୟୁକୁ ଜୟ କରେ ।

॥ ମଣ୍ଡଳ ୧୦, ସୂକ୍ତ ୧୮, ମନ୍ତ୍ର ୫ ॥

ଜୀବନକ୍ରମ

ଯଥାହାନ୍ୟନୁପୂର୍ବଂ ଭବନ୍ତି
ଯଥା ଋତବ ଋତୁଭିର୍ଯନ୍ତି ସାଧୁ ।
ଯଥା ନ ପୂର୍ବମପରୋ ଜହାତ୍ୟେ-
ବା ଧାତରାୟୂଂଷି କଳ୍ପୟୈଷାମ୍ ॥

( ସଙ୍କସୁକୋ ଯାମାୟନଃ । ଧାତା । ତ୍ରିଷ୍ଟୁପ୍ )

ପଦପାଠ : ଯଥା । ଅହାନି । ଅନୁଽପୂର୍ବମ୍ । ଭବନ୍ତି । ଯଥା । ଋତବଃ । ଋତୁଽଭିଃ । ଯନ୍ତି । ସାଧୁ । ଯଥା । ନ । ପୂର୍ବମ୍ । ଅପରଃ । ଜହାତି । ଏବ । ଧାତଃ । ଆୟୂଂଷି । କଳ୍ପୟ । ଏଷାମ୍ ॥

ପଦାର୍ଥ : (ଯଥା) ଯେଉଁ ପ୍ରକାରେ (ଅହାନି) ଦିନସବୁ (ଅନୁପୂର୍ବମ୍) ଗୋଟିଏ ପଛରେ ଗୋଟିଏ (ଭବନ୍ତି) ହୁଅନ୍ତି, (ଯଥା) ଯେଉଁ ପ୍ରକାରେ (ଋତବଃ ଋତୁଭିଃ ସାଧୁ ଯନ୍ତି) ଋତୁମାନେ ଋତୁମାନଙ୍କ ସହିତ ଉତ୍ତମ ଭାବରେ ଗତ କରନ୍ତି; (ଯଥା) ଯେଉଁପରି (ଅପରଃ) ପରବର୍ତ୍ତୀ ସନ୍ତାନ (ପୂର୍ବମ୍) ପୂର୍ବବର୍ତ୍ତୀ ପିତାଙ୍କୁ ତ୍ୟାଗ କରନ୍ତି ନାହିଁ (ଏବ) ଏହିପରି (ଧାତଃ) ହେ ଧାରଣାକର୍ତ୍ତା ପ୍ରଭୋ ! (ଏଷାମ୍) ଏମାନଙ୍କ (ଆୟୂଂଷି) ଆୟୁକୁ (କଳ୍ପୟ) ଯୋଜନା କର ।





॥ ମଣ୍ଡଳ ୧୦, ସୂକ୍ତ ୧୮, ମନ୍ତ୍ର ୫ ॥

—ବେଦମନ୍ତ୍ରରେ ତିନୋଟି ଦୃଷ୍ଟାନ୍ତ ଦିଆଯାଇଛି । ପ୍ରଥମତଃ ଦିନ ଓ ରାତି ବ୍ୟବଧାନରହିତ ହୋଇ ଗୋଟିକ ପରେ ଗୋଟିଏ ଅବିରତ ଆସନ୍ତି । ଦ୍ୱିତୀୟତଃ ଗ୍ରୀଷ୍ମ, ବର୍ଷାଦି ଋତୁମାନେ ଗୋଟିଏ ଅନ୍ୟର ଗତିରେ କୌଣସି ବାଧା ନ ଦେଇ ସମ୍ମାନଜନକ ଭାବରେ ଉପସ୍ଥିତ ହୁଅନ୍ତି । ତୃତୀୟତଃ ସନ୍ତାନମାନେ ପିତାଙ୍କର ରୂପ, ଗୁଣ ଓ ଆକୃତି ନେଇ ଜନ୍ମଲାଭ କରନ୍ତି ଓ ଶେଷରେ ନିଜେ ପିତା ହୋଇ ସନ୍ତାନ ଉତ୍ପନ୍ନ କରନ୍ତି । ମନୁଷ୍ୟ ଉଲ୍ଲିଖିତ ତିନୋଟି ଦୃଷ୍ଟାନ୍ତର ଆଦର୍ଶ ଦେଖି ଜୀବନରେ ଚାରି ଆଶ୍ରମ ମଧ୍ୟରେ ଗତିଶୀଳ ହେବା ଆବଶ୍ୟକ । ଉକ୍ତ ଚାରି ଆଶ୍ରମ ହେଉଛି ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ।

ଦିନ ସ୍ୱାଭାବିକ ଭାବରେ ରାତିରେ ପରିଣତ ହେଉଥିବା ପରି ମନୁଷ୍ୟ ଗୋଟିଏ ଆଶ୍ରମ ଅତିବାହିତ କରିବା ପରେ ପରବର୍ତ୍ତୀ ଆଶ୍ରମକୁ ଗ୍ରହଣ କରିବା ଉଚିତ୍ । ଋତୁମାନଙ୍କର ସରଳ ଗତି ପରି ବିନା ଦ୍ୱିଧାରେ ଗୋଟିଏ ଆଶ୍ରମରୁ ଅନ୍ୟ ମଧ୍ୟକୁ ପ୍ରବିଷ୍ଟ ହେବା କର୍ତ୍ତବ୍ୟ । ପିତାପୁତ୍ରଙ୍କ ସମ୍ବନ୍ଧ ପରି ପୂର୍ବବର୍ତ୍ତୀ ଆଶ୍ରମର ପରିପୂର୍ଣ୍ଣତା ଉପରେ ପରବର୍ତ୍ତୀ ଆଶ୍ରମର ସଫଳତା ନିର୍ଭର କରେ । ଆଶ୍ରମହୀନ ଜୀବନ ଲକ୍ଷ୍ୟଶୂନ୍ୟ ଓ କ୍ରମହୀନ ଅଟେ ।

ବିଧାତା ସଂସୃଷ୍ଟ ବ୍ରହ୍ମାଣ୍ଡର ନିୟମକୁ ଧାରଣ କରିଥିବା ପରି ମନୁଷ୍ୟ ଧାତା ଅର୍ଥାତ୍ ଆଶ୍ରମନିୟମକୁ ଅଖଣ୍ଡିତ ଭାବରେ ଜୀବନ ସାରା ଧାରଣ କରିବା ଆବଶ୍ୟକ ।

॥ ମଣ୍ଡଳ ୧୦, ସୂକ୍ତ ୧୧୭, ମନ୍ତ୍ର ୯ ॥

ସମସ୍ତେ ସମାନ ନୁହନ୍ତି

ସମୌ ଚିଦ୍ଧସ୍ତୌ ନ ସମଂ ବିବିଷ୍ଟଃ

ସଂମାତରା ଚିନ୍ନ ସମଂ ଦୁହାତେ ।

ଯମୟୋଶ୍ଚିନ୍ନ ସମା ବୀର୍ଯାଣି ।

ଜ୍ଞାତୀ ଚିତ୍ ସନ୍ତୌ ନ ସମଂ ପୃଣୀତଃ ॥

( ଭିକ୍ଷୁର୍ଋଷି । ଧନାନ୍ନଦାନଂ । ତ୍ରିଷ୍ଟୁପ୍ )

ପଦପାଠ : ସମୌ । ଚିତ୍ । ହସ୍ତୌ । ନ । ସମମ୍ । ବିବିଷ୍ଟଃ । ସଂମାତରା । ଚିତ୍ । ନ । ସମମ୍ । ଦୁହାତେ ଇତି । ଯମୟୋଃ । ଚିତ୍ । ନ । ସମା । ବୀର୍ଯାଣି । ଜ୍ଞାତୀ ଇତି । ଚିତ୍ । ସନ୍ତୌ । ନ । ସମମ୍ । ପୃଣୀତଃ ॥

ପଦାର୍ଥ : (ହସ୍ତୌ) ଦୁଇ ହାତ (ସମୌ ଚିତ୍) ସମାନ ହୋଇ ସୁଦ୍ଧା (ସମଂ ନ ବିବିଷ୍ଟଃ) ସମାନ କାର୍ଯ୍ୟ କରି ପାରନ୍ତି ନାହିଁ । (ସଂ ମାତରା ଚିତ୍) ଗୋଟିଏ ଗାଈର ଦୁଇ ବାଛୁରୀ ( ସମଂ ନ ଦୁହାତେ) ସମାନ ଦୁଧ ଦିଅନ୍ତି ନାହିଁ । (ଯମୟୋଃ ଚିତ୍) ଏକାଠି ଜାତ ହୋଇଥିବା ଯାଆଁଳା ପୁଅଙ୍କର (ବୀର୍ଯାଣି ନ ସମା) ବଳ ସମାନ ହୁଏ ନାହିଁ । (ଜ୍ଞାତୀ ସନ୍ତୌ ଚିତ୍) ଦୁଇଜଣ ଆତ୍ମୀୟ-ସ୍ୱଜନ ହୋଇ ସୁଦ୍ଧା (ସମଂ ନ ପୃଣୀତଃ) ସମାନ ଭାବରେ ଦାନଶୀଳ ନୁହନ୍ତି ।





॥ ମଣ୍ଡଳ ୧୦, ସୂକ୍ତ ୧୧୭, ମନ୍ତ୍ର ୯ ॥

—ଋଗ୍ବେଦ ଦଶମ ମଣ୍ଡଳର ଦାନସୂକ୍ତର ଶେଷ ମନ୍ତ୍ର ଏଠାରେ ଉଲ୍ଲେଖ କରାଯାଇଛି । ସମଗ୍ର ସୂକ୍ତରେ ଦାନଶୀଳତାର ମହତ୍ତ୍ୱ ବୁଝାଇ ସାରି ବେଦ କହୁଛନ୍ତି ଯେ ସବୁ ମନୁଷ୍ୟଙ୍କ ଗୁଣ, କର୍ମ, ସ୍ୱଭାବ ସମାନ ନୁହେଁ । ମାନବର ପ୍ରବୃତ୍ତିରେ ଅସମତା ସ୍ୱାଭାବିକ । ସମସ୍ତଙ୍କୁ ସମାନ ସୁଯୋଗ ମିଳିଲେ ସୁଦ୍ଧା ସମସ୍ତଙ୍କ ପ୍ରବୃତ୍ତି ଓ ଦକ୍ଷତା ସମାନ ରହେ ନାହିଁ । ବାମ ଓ ଡାହାଣ ହାତ ସମାନ ଦେଖାଯାଉଥିଲେ ମଧ୍ୟ ଉଭୟ ସମାନ ଭାବରେ ଶକ୍ତିସମ୍ପନ୍ନ ଓ କର୍ମତତ୍ପର ନୁହନ୍ତି । ଡାହାଣ ହାତ ବାମହାତ ଠାରୁ ଅଧିକ ଦାନଶୀଳ । ଦାନପାଇଁ ପ୍ରଥମେ ଡାହାଣ ହାତ ଆଗେଇ ଆସେ । ସେହିପରି ଗୋଟିଏ ଗାଈର ଦୁଇଟି ବାଛୁରୀ ସମାନ ଭାବରେ ଦୁଧ ଦିଅନ୍ତି ନାହିଁ । ଦୁଧର ଘନତା ଓ ପରିମାଣ ଭିନ୍ନ ଭିନ୍ନ ହୁଏ । ଏକା ପିତାମାତାଙ୍କ ଠାରୁ ଜାତ ହୋଇଥିବା ଦୁଇ ଭାଇ ସମାନ ଭାବରେ ବଳବାନ୍ ଓ ଗୁଣବାନ୍ ନୁହନ୍ତି ।

ଋଗ୍ବେଦର ଅନ୍ୟ ଏକ ମନ୍ତ୍ର (୧୦, ୭୧, ୭) ରେ ଏହି ସଂବନ୍ଧରେ ସୁନ୍ଦର ବର୍ଣ୍ଣନା ମିଳେ—"ଆଖିକାନ ଥିବା ସବୁ ମନୁଷ୍ୟଙ୍କ ମନର ଆବେଗ ସମାନ ନୁହେଁ । ଭୂମି ଉପରେ ଥିବା କେଉଁ ଗଡ଼ିଆ ଆଣ୍ଠୁଏ, କେଉଁଟି ବା ବେକେ ପର୍ଯ୍ୟନ୍ତ ଗଭୀର, କେଉଁଟି ବା ବୁଡ଼ ଦେଇ ଗାଧୋଇବା ପାଇଁ ଉପଯୋଗୀ । ସେହିପରି ସବୁ ଲୋକଙ୍କର ହୃଦୟର ଗଭୀରତା ଓ ବୁଦ୍ଧିର ପ୍ରଖରତା ସମାନ ନହେଁ ।"

॥ ମଣ୍ଡଳ ୮, ସୂକ୍ତ ୫୯, ମନ୍ତ୍ର ୭ ॥

ସପ୍ତ ସମ୍ପଦ

ଇନ୍ଦ୍ରାବରୁଣା ସୌମନସମଦୃପ୍ତଂ

ରାୟସ୍ପୋଷଂ ଯଜମାନେଷୁ ଧତ୍ତମ୍ ।

ପ୍ରଜାଂ ପୁଷ୍ଟିଂ ଭୂତିମସ୍ମାସୁ ଧତ୍ତଂ

ଦୀର୍ଘାୟୁତ୍ୱାୟ ପ୍ର ତିରତଂ ନ ଆୟୁଃ ॥

( ସୁପର୍ଣଃ କାଣ୍ୱଃ । ଇନ୍ଦ୍ରାବରୁଣୌ । ଜଗତୀ )

ପଦପାଠ : ଇନ୍ଦ୍ରାବରୁଣା । ସୌମନସମ୍ । ଅଦୃପ୍ତମ୍ । ରାୟଃ । ପୋଷମ୍ । ଯଜମାନେଷୁ । ଧତ୍ତମ୍ । ପ୍ରଜାମ୍ । ପୁଷ୍ଟିମ୍ । ଭୂତିମ୍ । ଅସ୍ମାସୁ । ଧତ୍ତମ୍ । ଦୀର୍ଘାୟୁଃତ୍ୱାୟ । ପ୍ର । ତିରତମ୍ । ନଃ । ଆୟୁଃ ॥

ପଦାର୍ଥ : (ଇନ୍ଦ୍ରାବରୁଣା) ହେ ଅଧ୍ୟାପକ, ଉପଦେଶକ ! (ଯଜମାନେଷୁ) ଆମ୍ଭ ଯଜ୍ଞଶୀଳ ବ୍ୟକ୍ତିଙ୍କ ଠାରେ (ଅଦୃପ୍ତମ୍) ଅହଙ୍କାରଶୂନ୍ୟତା (ସୌମନସମ୍) ସୁପ୍ରସନ୍ନତା (ରାୟଃପୋଷମ୍) ପୋଷକ ଧନସମ୍ପଦ (ଧତ୍ତମ୍) ଧାରଣ କରନ୍ତୁ । (ଅସ୍ମାସୁ) ଆମ୍ଭମାନଙ୍କ ଠାରେ (ପ୍ରଜାମ୍) ସୁସନ୍ତାନ (ପୁଷ୍ଟିମ୍) ଶାରୀରିକ ଦୃଢ଼ତା (ଭୂତିମ୍) ଆତ୍ମବିଭୂତି (ଧତ୍ତମ୍) ଧାରଣ କରନ୍ତୁ । (ଦୀର୍ଘାୟୁତ୍ୱାୟ) ଦୀର୍ଘଜୀବନ ପାଇଁ (ନଃ ଆୟୁଃ) ଆମ୍ଭମାନଙ୍କର ଆୟୁ (ପ୍ର ତିରତଂ) ବୃଦ୍ଧି କରନ୍ତୁ ।





॥ ମଣ୍ଡଳ ୮, ସୂକ୍ତ ୫୯, ମନ୍ତ୍ର ୭ ॥

—ଯଜ୍ଞକର୍ତ୍ତା ଯଜମାନ ଯେଉଁ ବର ବା କଲ୍ୟାଣ ଲାଭ କରନ୍ତି, ତାହା ଏଠାରେ ଉଲ୍ଲେଖ କରାଯାଇଛି । ଯଜ୍ଞ ଜନକଲ୍ୟାଣ କର୍ମର ନାମ ଅଟେ । ଉକ୍ତ କର୍ମରେ ପ୍ରବୃତ୍ତ ହୋଇଥିବା ସମାଜସେବୀ ବ୍ୟକ୍ତିଙ୍କୁ ଯଜମାନ କୁହାଯାଏ । ବେଦ ଏହି ପ୍ରସଙ୍ଗରେ ଯଜମାନଙ୍କ ନିମ୍ନୋକ୍ତ ସପ୍ତସଂପଦ ବର୍ଣ୍ଣନା କରିଛନ୍ତି ।

(୧) ଯଜମାନ ପରୋପକାରରେ ନିଜକୁ ସର୍ବଦା ନିୟୁକ୍ତ ରଖନ୍ତି । ତାଙ୍କ ହୃଦୟରେ ଅଭିମାନ ନଥାଏ । ନିନ୍ଦା କରୁଥିବା ଲୋକଙ୍କୁ ମଧ୍ୟ ସେ ସୁଖୀ ରଖିବାକୁ ଚାହାନ୍ତି ।

(୨) ଦୁଃଖ ହେଉ ବା ସୁଖ ହେଉ ସମସ୍ତ କର୍ମଫଳକୁ ପରମାତ୍ମାଙ୍କ ପ୍ରସାଦ ଭାବି ପ୍ରସନ୍ନ ଚିତ୍ତରେ ସେ ସବୁକୁ ଗ୍ରହଣ କରନ୍ତି ।

(୩) ଧନସଂଗ୍ରହ କରିବା ପାଇଁ ସେ କାହାକୁ ପୀଡ଼ା ଦିଅନ୍ତି ନାହିଁ । ସଦୁପାର୍ଜିତ ଧନରେ ଅନ୍ୟର ପୋଷଣ କରନ୍ତି; ତଦ୍ଦ୍ୱାରା କାହାର ଅନିଷ୍ଟ ସାଧନ କରନ୍ତି ନାହିଁ ।

(୪) ଯୋଗ୍ୟ ସନ୍ତାନ ସନ୍ତତି ଯଜମାନର ସଂପଦ । ଏମାନଙ୍କଦ୍ୱାରା ପୃଥିବୀରେ ଯଜ୍ଞର ପରମ୍ପରା ସୁରକ୍ଷିତ ରହେ ।

(୫) ଯଜ୍ଞ ଭାବର ଓ କର୍ମ ଯୋଗୁଁ ଯଜମାନ ସର୍ବଦା ନୀରୋଗ ଓ ପୁଷ୍ଟ ରହନ୍ତି ।

(୬) ଭୌତିକ ଐଶ୍ୱର୍ଯ୍ୟ ନିଜକୁ ହଜାଇ ନ ଦେଇ ଯଜମାନ ଆତ୍ମଚିନ୍ତନରେ ନିବିଷ୍ଟ ରହନ୍ତି ।

(୭) ସେ ଦୀର୍ଘାୟୁ ଚାହାନ୍ତି । ନିଜର ଭୋଗପାଇଁ ନୁହେଁ, ବରଂ ପରୋପକାର ପାଇଁ ଦୀର୍ଘଜୀବନ ଲାଭ କରିବା ତାଙ୍କର ଧ୍ୟେୟ ଅଟେ ।

॥ ମଣ୍ଡଳ ୧୦, ସୂକ୍ତ ୧୧୯, ମନ୍ତ୍ର ୪ ॥

ସୋମରୁ ସୁମତି

ଉପ ମା ମତିରସ୍ଥିତ

ବାଶ୍ରା ପୁତ୍ରମିବ ପ୍ରିୟମ୍ ।

କୁବିତ୍ ସୋମସ୍ୟାପାମିତି ॥

( ଐନ୍ଦ୍ରୋଲବଃ । ଇନ୍ଦ୍ରଃ । ଗାୟତ୍ରୀ )

ପଦପାଠ : ଉପ । ମା । ମତିଃ । ଅସ୍ଥିତ । ବାଶ୍ରା । ପୁତ୍ରଂଇବ । ପ୍ରିୟମ୍ । କୁବିତ୍ । ସୋମସ୍ୟ । ଅପାମ୍ । ଇତି ॥

ପଦାର୍ଥ : (ବାଶ୍ରା) କାମନାଯୁକ୍ତ ମାତାପିତା (ପ୍ରିୟମ୍ ପୁତ୍ରମ୍ ଇବ) ଯେପରି ପ୍ରିୟପୁତ୍ରଙ୍କୁ ପ୍ରାପ୍ତ ହୁଅନ୍ତି, ସେହିପରି (ମତିଃ) ଉତ୍ତମ ବୁଦ୍ଧି (ମା ଉପ ଅସ୍ଥିତ) ମୋତେ ପ୍ରାପ୍ତ ହୋଇଛି । (ଇତି) ଏହି (କୁବିତ୍ ସୋମସ୍ୟ ଅପାମ୍) ଆତ୍ମରସକୁ ଅଧିକ ଭାବରେ ପାନ କରିଛି ।





॥ ମଣ୍ଡଳ ୧୦, ସୂକ୍ତ ୧୧୯, ମନ୍ତ୍ର ୪ ॥

—ଅଦ୍ଭୁତ ଓ ଅଦ୍ୱିତୀୟ ଏହି ସୋମରସ ! ପାର୍ଥିବ ସୋମପାନ ଅର୍ଥାତ୍ ମଦ୍ୟସେବନ ଦ୍ୱାରା ମନୁଷ୍ୟର ବୁଦ୍ଧି ନଷ୍ଟ ହୁଏ, ପରନ୍ତୁ ଆଧ୍ୟାତ୍ମିକ ସୋମପାନ ଦ୍ୱାରା ମନୁଷ୍ୟର ମେଧା ବୃଦ୍ଧିଲାଭ କରେ । ପାର୍ଥିବ ମାଦକରସ ଗ୍ରହଣ କରି ମନୁଷ୍ୟ ଆଳସ୍ୟ ଓ ପ୍ରମାଦଗ୍ରସ୍ତ ହୋଇପଡ଼େ; ଆଧ୍ୟାତ୍ମିକ ସୋମରସ ମାନବର ଅନ୍ତଃକରଣର ସୁପ୍ତ ଶକ୍ତିକୁ ଜାଗ୍ରତ କରେ । ସାମବେଦର ବହୁ ସ୍ଥଳରେ ସୋମରସକୁ ବୁଦ୍ଧି ପ୍ରଦାତା କୁହାଯାଇଛି ।

ଦୈନନ୍ଦିନ ଜୀବନରେ ଆମ୍ଭେମାନେ କେତେକ ସମୟ ଜାଗ୍ରତ ରହୁ । ପରନ୍ତୁ ଏହି ସାଧାରଣ ଜାଗୃତ ସୋମଜାଗରଣ ତୁଳନାରେ ତୁଚ୍ଛ । ଜାଗ୍ରତ ଅବସ୍ଥାରେ ରହି ମଧ୍ୟ ଯେଉଁ ବ୍ୟକ୍ତି ମିଥ୍ୟାକୁ ସତ୍ୟ ଏବଂ ଅଜ୍ଞାନକୁ ଜ୍ଞାନ ବୋଲି ବୁଝେ, ସେ ପ୍ରକୃତ ପକ୍ଷରେ ଜାଗ୍ରତ ନୁହେଁ । ଏହା ଅପେକ୍ଷା ନିଦ୍ରା ବରଂ ଉତ୍ତମ ଅଟେ । ବୁଦ୍ଧି ଯେତେବେଳେ ବିସ୍ତାରଶୀଳ ଓ ସୃଜନଶୀଳ ହୁଏ, ସେତେବେଳେ ହିଁ ମନୁଷ୍ୟକୁ ଜାଗ୍ରତ କହିବା ଉଚିତ ।

ସୋମପାୟୀ ଆନନ୍ଦ ରସରେ ମଗ୍ନ ହୋଇ କହେ—"ମୁଁ ସୋମରୂପୀ ପ୍ରଭୁଙ୍କର ଆତ୍ମିକରସ ପାନ କରିଅଛି । ମୋର ଅନ୍ତ-ଦର୍ଶନର ମାର୍ଗ ପ୍ରଶସ୍ତ ହୋଇଛି । ଗାଈ ନିଜ ବାଛୁରୀ ପାଖକୁ ଆସି ତାକୁ ଆଲିଙ୍ଗନ କରିବା ପରି ମହାନ୍ ପ୍ରକାଶକ ପ୍ରଭୁ ତାହାଙ୍କର ଅମୃତ ସନ୍ତାନକୁ ବିମଳ ଜ୍ୟୋତିର୍ଲୋକରେ ଉଦ୍ଭାସିତ କରୁଛନ୍ତି ।"

॥ ମଣ୍ଡଳ ୧୦, ସୂକ୍ତ ୫, ମନ୍ତ୍ର ୬ ॥

ସପ୍ତ ମର୍ଯ୍ୟାଦା

ସପ୍ତ ମର୍ଯ୍ୟାଦାଃ କବୟସ୍ତତକ୍ଷୁ-

ସ୍ତାସାମେକାମିଦଭ୍ୟଂହୁରୋ ଗାତ୍ ।

ଆୟୋର୍ହ ସ୍କମ୍ଭ ଉପମସ୍ୟ ନୀଡ଼େ

ପଥାଂ ବିସର୍ଗେ ଧରୁଣେଷୁ ତସ୍ଥୌ ॥

( ତ୍ରିତ ଆପ୍ତ୍ୟଃ । ଅଗ୍ନିଃ । ତ୍ରିଷ୍ଟୁପ୍ )

ପଦପାଠ : ସପ୍ତ । ମର୍ଯ୍ୟାଦାଃ । କବୟଃ । ତତକ୍ଷୁଃ । ତାସାମ୍ । ଏକାମ୍ । ଇତ୍ । ଅଭି । ଅଂହୁରଃ । ଗାତ୍ । ଆୟୋଃ । ହ । ସ୍କମ୍ଭଃ । ଉପମସ୍ୟ । ନୀଡ଼େ । ପଥାମ୍ । ବିସର୍ଗେ । ଧରୁଣେଷୁ । ତସ୍ଥୌ ।

ପଦାର୍ଥ : (କବୟଃ) ଜ୍ଞାନୀ ଲୋକେ (ସପ୍ତ ମର୍ଯ୍ୟାଦାଃ) ସାତ ମର୍ଯ୍ୟାଦା (ତତକ୍ଷୁଃ) ଦର୍ଶନ କରିଛନ୍ତି । (ତାସାମ୍) ସେଥିରୁ (ଏକାମ୍ ଇତ୍) ଗୋଟିକୁ ମଧ୍ୟ (ଅଭିଗାତ୍) ଲଙ୍ଘନ କଲେ ଲୋକ (ଅଂହୁର) ପାପୀ ହୁଏ । ମନୁଷ୍ୟ (ହ) ନିଶ୍ଚୟ (ଆୟୋଃ) ଅଭ୍ୟୁଦୟର (ସ୍କମ୍ଭଃ) ସ୍ତମ୍ଭ (ଧରୁଣେଷୁ) ଉପସ୍ଥିତି ସମୟରେ (ପଥାଂ ବିସର୍ଗେ) ମାର୍ଗଗୁଡ଼ିକର ଛକସ୍ଥଳରେ (ଉପମସ୍ୟ ନୀଡ଼େ) ଭଗବାନଙ୍କ ଆଶ୍ରୟରେ (ତସ୍ଥୌ) ସ୍ଥିର ରହେ ।







—ମନୁଷ୍ୟ ଦେହ ଛଡ଼ା ଅନ୍ୟ କୌଣସି ଦେହରେ ସଦାଚାର ଅଥବା ବ୍ୟଭିଚାର ନ ଥାଏ । ଆଚରଣ ମାନବର ଧର୍ମ ଅଟେ । ବେଦମନ୍ତ୍ରରେ ମନୁଷ୍ୟତା ଅବଲମ୍ବନ କରିବା ପାଇଁ କେତେକ ଆଦର୍ଶ ବର୍ଣ୍ଣିତ ହୋଇଛି । ଋଷି ଏଗୁଡ଼ିକୁ ମର୍ଯ୍ୟାଦା ଆଖ୍ୟା ଦେଇଛନ୍ତି । ମୃତ୍ୟୁପର୍ଯ୍ୟନ୍ତ ଏଗୁଡ଼ିକୁ ପାଳନ କରିବା ଉଚିତ ।

(୧) ଅହିଂସା—ଅନ୍ୟର କଲ୍ୟାଣରେ ପ୍ରତିବନ୍ଧକ ସୃଷ୍ଟି ନ କରିବା ଅହିଂସା ଅଟେ । ମନବଚନକର୍ମରେ କାହାକୁ ପୀଡ଼ା ନ ଦେବା ଅହିଂସା । (୨) ସତ୍ୟ—ଯାହା ତ୍ରିକାଳରେ ସମାନ ତାହା ସତ୍ୟ । ଯଥାର୍ଥ ଜ୍ଞାନ ଲାଭ କରି ତଦନୁସାରେ ଆଚରଣ କରିବା ସତ୍ୟ ଅଟେ । (୩) ଅସ୍ତେୟ—ସ୍ତେୟତ୍ୟାଗ ଅର୍ଥାତ୍ ଅନ୍ୟର ପଦାର୍ଥରେ ଅଧିକାରୀ ହେବା ପାଇଁ ଇଚ୍ଛା ଓ ଉଦ୍ୟମ ନ କରିବା । (୪) ବ୍ରହ୍ମଚର୍ଯ୍ୟ—କାମ ମନୋବୃତ୍ତି ତ୍ୟାଗ କରିବା । ବୀର୍ଯ୍ୟରକ୍ଷା ଦ୍ୱାରା ଉକ୍ତ ମନୋଭାବ ଜାତ ହେଉଥିବା ଯୋଗୁଁ ଏହା ବ୍ରହ୍ମଚର୍ଯ୍ୟର ମୁଖ୍ୟ ଅଙ୍ଗ । (୫) ଶୌଚ—ଶାରୀରିକ, ମାନସିକ ଓ ଆତ୍ମିକ ଶୁଚି । (୬) ସ୍ୱାଧ୍ୟାୟ—ଅଧ୍ୟୟନ ଅଧ୍ୟାପନର ଅଭ୍ୟାସ । ଶାସ୍ତ୍ରରେ ସ୍ୱାଧ୍ୟାୟକୁ ମନର ଖୋରାକ କୁହାଯାଇଛି । (୭) ଈଶ୍ୱରପ୍ରଣିଧାନ—ସମସ୍ତ କର୍ମକୁ ପ୍ରଭୁଙ୍କ ପାଦରେ ଅର୍ପଣ କରିବା ।

ଚମଡ଼ା ଥଳିରୁ ଜଳ ବୋହିଯିବା ପରି ଗୋଟିଏ ମାତ୍ର ମର୍ଯ୍ୟାଦା ଲଙ୍ଘନ ହେଲେ ମନୁଷ୍ୟଠାରୁ ପବିତ୍ରତା ଧୀରେ ଧୀରେ ଲୁଚିଯାଏ । ଯେଉଁ ମନୁଷ୍ୟ ଉକ୍ତ ମର୍ଯ୍ୟାଦାଗୁଡ଼ିକୁ ବ୍ରତପାଳନ କରେ, ସେ ଏକ ଆଲୋକ-ସ୍ତମ୍ଭ ପରି ଚତୁର୍ଦ୍ଦିଗରେ ଆଲୋକ ବିକୀରଣ କରେ । ଜୀବନର କେତେ ବାଧାବିଘ୍ନ, ପ୍ରଲୋଭନ ସତ୍ତ୍ୱେ ଏହି ସ୍ତମ୍ଭ ଊର୍ଦ୍ଧ୍ୱମୁଖୀ ହୋଇରହେ ।

॥ ମଣ୍ଡଳ ୧୦, ସୂକ୍ତ ୨୬, ମନ୍ତ୍ର ୫ ॥

ଋଷି

ପ୍ରତ୍ୟର୍ଦ୍ଧିର୍ଯଜ୍ଞାନା-

ମଶ୍ୱହୟୋ ରଥାନାମ୍ ।

ଋଷିଃ ସ ଯୋ ମନୁର୍ହିତୋ

ବିପ୍ରସ୍ୟ ଯାବୟତ୍ସଖଃ ॥

( ଐନ୍ଦ୍ରୋ ବିମଦଃ । ପୂଷା । ଅନୁଷ୍ଟୁପ୍ )

ପଦପାଠ : ପ୍ରତିଅର୍ଦ୍ଧିଃ । ଯଜ୍ଞାନାମ୍ । ଅଶ୍ୱହୟଃ । ରଥାନାମ୍ । ଋଷିଃ । ସଃ । ଯଃ । ମନୁଃହିତଃ । ବିପ୍ରସ୍ୟ । ଯବୟତ୍‌ସଖଃ ॥

ପଦାର୍ଥ : (ସଃ ଋଷିଃ) ସେ ଋଷି ଅଟନ୍ତି (ଯଃ) ଯେ (ଯଜ୍ଞାନାଂ ପ୍ରତି-ଅର୍ଦ୍ଧିଃ) ଯଜ୍ଞର ପ୍ରତିପାଦକ, (ରଥାନାଂ) ରଥଗୁଡ଼ିକର (ଅଶ୍ୱହୟଃ) ଶୀଘ୍ର ସଞ୍ଚାଳକ, (ମନୁର୍ହିତଃ) ମନୁଷ୍ୟଙ୍କ ହିତକାରକ (ବିପ୍ରସ୍ୟ ସଖଃ) ଜ୍ଞାନୀ ବ୍ୟକ୍ତିଙ୍କର ସଖା, (ଯବୟତ୍) ଦୁଃଖନାଶକ ଅଟନ୍ତି ।





॥ ମଣ୍ଡଳ ୧୦, ସୂକ୍ତ ୨୬, ମନ୍ତ୍ର ୫ ॥

—ମନୁଷ୍ୟଙ୍କ ମଧ୍ୟରେ ଋଷି କିଏ ? ଋଷି ଯଜ୍ଞର ନେତା ଅଟନ୍ତି । ସେ ଯଜ୍ଞର ପ୍ରସାରକ ଅଟନ୍ତି । ସେ ମାନବ ସମାଜରେ ସଂସ୍କୃତି ପ୍ରଜ୍ୱଳନ କରନ୍ତି । ସେ ସର୍ବଦା ଯଜ୍ଞ ଅର୍ଥାତ୍ ନିର୍ଦ୍ଦୋଷ, ପବିତ୍ର ଓ ପରୋପକାରୀ କର୍ମରେ ଓତଃପ୍ରୋତ ଥାଆନ୍ତି ।

ଋଷି ମନ୍ତ୍ରଦ୍ରଷ୍ଟା ଅଟନ୍ତି ଅର୍ଥାତ୍ ସେ ମନୁଷ୍ୟ ଜୀବନର ରହସ୍ୟ ଓ ଉଦ୍ଦେଶ୍ୟ ଜାଣନ୍ତି । ମନୁଷ୍ୟ ନିଜର ଜୀବନରୂପକ ରଥକୁ କେଉଁ ମାର୍ଗରେ କି ରୂପେ ସଞ୍ଚାଳନ କଲେ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବ, ସେ ତାହାର ଉପଦେଶ ଦିଅନ୍ତି । ତାହାଙ୍କର ସାନ୍ନିଧ୍ୟ ଲାଭ କରି କୁଟିଳ, ଦୁରବୃତ୍ତ ମଧ୍ୟ ସତ୍ପଥରେ ପରିଚାଳିତ ହୁଏ । ସେ ସ୍ୱୟଂ ପ୍ରକାଶମୟ ଥାଇ ଅନ୍ୟର ହୃଦୟକୁ ପ୍ରକାଶିତ କରନ୍ତି । ସେ କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ, ଦେଶ ବା ଜାତିର ଲୋକ ନ ହୋଇ ସମସ୍ତ ମନୁଷ୍ୟ ସମାଜର ଶୁଭଚିନ୍ତକ ଅଟନ୍ତି । ଜିଜ୍ଞାସୁ, କର୍ମପିପାସୁ, ବ୍ରତଶୀଳ ଶିଷ୍ୟମାନଙ୍କୁ ଉପଦେଶ ଦେଇ ସେ ସେମାନଙ୍କୁ ସମାଜସେବକ ରୂପରେ ପ୍ରସ୍ତୁତ କରନ୍ତି ।

ଋଷି ସଂସାରର ଭାରକୁ ନିଜର କରି ଏବଂ ସଂସାରର ଦୁଃଖକୁ ନିଜର ଦୁଃଖ ମଣନ୍ତି । ଅନ୍ଧ, ଅଙ୍ଗ ଓ ପଙ୍ଗୁଙ୍କ ହାତ ଧରି ଧରି ସେମାନଙ୍କୁ ଠିକ୍ ବାଟରେ ନିଅନ୍ତି । ରୋଗୀ ଓ ବିକଳାଙ୍ଗର ଯନ୍ତ୍ରଣା ଉପଶମ କରିବା ପାଇଁ ନିଜ ଗାତ୍ରରୁ ଲୁଗା ଚିରାଇ ସେମାନଙ୍କ କ୍ଷତସ୍ଥଳରେ ବାନ୍ଧି ଦିଅନ୍ତି । ସେ ସମସ୍ତଙ୍କଠାରେ ନିଜ ସ୍ୱରୂପକୁ ଓ ନିଜଠାରେ ସମସ୍ତଙ୍କ ସ୍ୱରୂପକୁ ଦେଖନ୍ତି ।

॥ ମଣ୍ଡଳ ୧୦, ସୂକ୍ତ ୨୨, ମନ୍ତ୍ର ୮ ॥

ଦସ୍ୟୁ କିଏ ?

ଅକର୍ମା ଦସ୍ୟୁରଭି ନୋ ଅମନ୍ତୁ-

ରନ୍ୟବ୍ରତୋ ଅମାନୁଷଃ ।

ତ୍ୱଂ ତସ୍ୟାମିତ୍ରହନ୍ବଧ-

ର୍ଦାସସ୍ୟ ଦମ୍ଭୟ ॥

(ବୈଦ୍ୟୋ । ବମଦ୍ୱାଃ । ଇନ୍ଦ୍ରଃ । ସ୍ୱରାଡ୍ ବୃହତୀ)

ପଦପାଠ : ଅକର୍ମା । ଦସ୍ୟୁଃ । ଅଭି । ନଃ । ଅମନ୍ତୁଃ । ଅନ୍ୟବ୍ରତଃ । ଅମାନୁଷଃ । ତ୍ୱମ୍ । ତସ୍ୟ । ଅମିତ୍ରହନ୍ । ବଧଃ । ଦାସସ୍ୟ । ଦମ୍ଭୟ ॥

ପଦାର୍ଥ : (ଅକର୍ମା) କର୍ମହୀନ (ଅମନ୍ତୁଃ) ବସ୍ତୁରଣନ୍ୟ (ଅନ୍ୟବ୍ରତଃ) ଦୁଷ୍ଟ (ଅମାନୁଷଃ) ମନୁଷ୍ୟତାହୀନ (ଅଭି) ନିଶ୍ଚିତ ରୂପରେ (ନଃ) ଆମ୍ଭ-ସମାଜର (ଦସ୍ୟୁଃ) ଶତ୍ରୁ ଅଟେ । (ଅମିତ୍ରହନ୍) ହେ ଶତ୍ରୁସଂହାରକ ଶାସକ ! (ତ୍ୱମ୍) ତୁମ୍ଭେ (ତସ୍ୟ ଦାସସ୍ୟ) ସେହି ଶତ୍ରୁର (ବଧଃ) ଦଣ୍ଡଦାତା ହୋଇ (ଦମ୍ଭୟ) ତାଡ଼ନା କର ।



॥ ମଣ୍ଡଳ ୧୦, ସୂକ୍ତ ୨୨, ମନ୍ତ୍ର ୮ ॥

—ବେଦରେ କର୍ମଠ, ଈଶ୍ୱରବାଦୀ, ବ୍ରତଶୀଳ ଓ ମନସ୍ୱୀ ପୁରୁଷଙ୍କୁ 'ଆର୍ଯ୍ୟ' କୁହାଯାଇଛି । ସେହିପରି ଆର୍ଯ୍ୟର ବିପରୀତଗୁଣଧର୍ମୀ ମନୁଷ୍ୟଙ୍କୁ 'ଦସ୍ୟୁ' କୁହାଯାଇଛି । ଆଜିକାଲି ଦସ୍ୟୁ କହିଲେ ଚୋରକୁ ବୁଝାଯାଉଛି । ପରନ୍ତୁ ବେଦମନ୍ତ୍ରରେ ଚାରି ଶ୍ରେଣୀର ଲୋକଙ୍କୁ ଦସ୍ୟୁ ନାମ ଦିଆଯାଇଛି ।

(କ) 'ଅକର୍ମାଃ'—ନିଷ୍କ୍ରିୟ, ଆଳସ୍ୟପରାୟଣ ଓ କର୍ମପାଇଁ ଅନୁତ୍ସୁକ ବ୍ୟକ୍ତିମାନେ ଦସ୍ୟୁ ଅଟନ୍ତି । ଏମାନେ ନିଜେ କର୍ମ ନ କରି ଅନ୍ୟମାନଙ୍କର ଉପାର୍ଜନ ଭୋଗ କରନ୍ତି ଏବଂ ପରିବାର ଓ ଦେଶରେ ଭାର-ସଦୃଶ ରହନ୍ତି ।

(ଖ) 'ଅମନ୍ତୁଃ'—ବସ୍ତୁରଣକ ବ୍ୟକ୍ତି ଦସ୍ୟୁ ଅଟନ୍ତି । ଏମାନେ ବୁଦ୍ଧି ବିଚାର କର୍ମ କରନ୍ତି ନାହିଁ । ଅବିଚାରିତ ଭାବରେ କହନ୍ତି ଓ ଅବିବେକ କାର୍ଯ୍ୟ କରନ୍ତି । ସର୍ବଦା ବିଭ୍ରାଟ ଓ ବିଶୃଙ୍ଖଳା ସୃଷ୍ଟି କରନ୍ତି ।

(ଗ) 'ଅନ୍ୟବ୍ରତଃ'—ଏହି ଶ୍ରେଣୀର ଦସ୍ୟୁମାନେ କଳାବଜାର, ମଦ୍ୟପାନ, ଜୁଆଖେଳ ପ୍ରଭୃତି ନୀଚ କର୍ମଦ୍ୱାରା ସମାଜରେ ନୀଚ ଆଦର୍ଶ ସ୍ଥାପନ କରନ୍ତି ଏବଂ ନୈତିକ ବ୍ରତକୁ ଉପେକ୍ଷା କରନ୍ତି ।

(ଘ) 'ଅମାନୁଷଃ'—ଏଭଳି ଦସ୍ୟୁ ମନୁଷ୍ୟଦେହରେ ଥାଇ ମଧ୍ୟ ଅମନୁଷ୍ୟ ଅଟନ୍ତି । ଏମାନେ ପଶୁପରି ଆଚରଣ କରନ୍ତି ଏବଂ ହିଂସା, ହତ୍ୟା, ଅଶ୍ଳୀଳତା ଆଦି କୁକର୍ମରେ ଲିପ୍ତ ରହନ୍ତି ।

ଉକ୍ତ ଦସ୍ୟୁମାନଙ୍କ ପ୍ରତି ଦଣ୍ଡ ବିଧାନ କରିବା ଉଚିତ । ଏମାନଙ୍କୁ ଯଥାର୍ଥ ଶିକ୍ଷାଦାନ ଦେଇ ସଂଶୋଧନ କରିବା କର୍ତ୍ତବ୍ୟ ।

॥ ମଣ୍ଡଳ ୬, ସୂକ୍ତ ୨୮, ମନ୍ତ୍ର ୬॥

ଗୋମାତା

ଯୂୟଂ ଗାବୋ ମେଦୟଥା କୃଶଂ ଚି-

ଦଶ୍ରୀରଂ ଚିତ୍ କୃଣୁଥା ସୁପ୍ରତୀକମ୍ ।

ଭଦ୍ରଂ ଗୃହଂ କୃଣୁଥ ଭଦ୍ରବାଚୋ

ବୃହଦ୍ ବୋ ବୟ ଉଚ୍ୟତେ ସଭାସୁ ॥

( ବାର୍ହସ୍ପତ୍ୟୋ ଭରଦ୍ୱାଜଃ । ଗାବଃ । ତ୍ରିଷ୍ଟୁପ୍ )

ପଦପାଠ ; ଯୂୟମ୍ । ଗାବଃ । ମେଦୟଥ । କୃଶମ୍ । ଚିତ୍ । ଅଶ୍ରୀରମ୍ । ଚିତ୍ । କୃଣୁଥ । ସୁପ୍ରତୀକମ୍ । ଭଦ୍ରମ୍ । ଗୃହମ୍ । କୃଣୁଥ । ଭଦ୍ରବାଚଃ । ବୃହତ୍ । ବଃ । ବୟଃ । ଉଚ୍ୟତେ । ସଭାସୁ ।

ପଦାର୍ଥ: (ଗାବଃ) ହେ ଗୋବର୍ଗ ! (ଯୂୟଂ) ତୁମ୍ଭେମାନେ (କୃଶଂ ଚିତ୍) ଦୁର୍ବଳ ମନୁଷ୍ୟକୁ (ମେଦୟଥ) ବଳଶାଳୀ କର । (ଅଶ୍ରୀରଂ ଚିତ୍) କାନ୍ତିରହିତକୁ (ସୁପ୍ରତୀକମ୍ ) ସୁନ୍ଦର (କୃଣୁଥ) କର । (ଭଦ୍ରବାଚଃ) ହେ କଲ୍ୟାଣବାଣୀ ! (ଗୃହଂ) ଗୃହକୁ (ଭଦ୍ରଂ କୃଣୁଥ) କଲ୍ୟାଣକାରକ କର । (ବଃ) ତୁମ୍ଭମାନଙ୍କର (ବୟଃ) ଗୌରବ (ସଭାସୁ) ସଭାମାନଙ୍କରେ (ବୃହଦ୍ ଉଚ୍ୟତେ) ପ୍ରଶଂସିତ ହୁଏ ।





॥ ମଣ୍ଡଳ ୬, ସୂକ୍ତ ୨୮, ମନ୍ତ୍ର ୬ ॥

—ବେଦରେ ଉପକାରୀ ପଶୁଙ୍କୁ ମନୁଷ୍ୟସମାଜ ସହିତ ବିଶେଷ ଭାବରେ ସଂଯୁକ୍ତ କରାଯାଇଛି । ଏମାନେ ଗୋ-ବର୍ଗ, ଅଶ୍ୱବର୍ଗ ଓ ଶ୍ୱବର୍ଗ । ଏମାନଙ୍କ ମଧ୍ୟରୁ ଯେଉଁ ପଶୁମାନେ ଦୁଗ୍ଧଦାନ କରନ୍ତି, ସେମାନେ ଗୋବର୍ଗର ଅନ୍ତର୍ଗତ । ଏମାନଙ୍କ ବ୍ୟବହାର ମାତୃବତ୍ ଅତ୍ୟନ୍ତ ପ୍ରିୟ । ମାତାଙ୍କୁ ଉଦ୍‌ବୋଧନ କରି ବେଦ ଏକ ସ୍ୱରରେ କହନ୍ତି—"ହେ ମାତଃ ! କଲ୍ୟାଣ-ପାଇଁ ତୁମର ଉପକାର ଅତୁଳନୀୟ । ତେବେ ସମସ୍ତ ସଂସାର ମଧ୍ୟରେ ଗୋବର୍ଗ ହିଁ ତୁମର ତୁଳନୀୟ ହୋଇପାରେ ।" ଏଣୁ ବୈଦିକ ସାହିତ୍ୟରେ ଗାଈକୁ ଗୋମାତା କୁହାଯାଇଛି ।

ଜନ୍ମପରେ ଶିଶୁ ବର୍ଷେ ଦୁଇ ବର୍ଷ ପର୍ଯ୍ୟନ୍ତ ମାତୃସ୍ତନରୁ ଦୁଗ୍ଧପାନ କରେ । ଏହି ସମୟରେ ମାତୃଦୁଗ୍ଧର ଅଭାବ ଘଟିଲେ ଗୋ-ଦୁଗ୍ଧ ହିଁ ବ୍ୟବହାର କରାଯାଏ । ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ଆମ୍ଭେମାନେ ଗୋ-ଦୁଗ୍ଧ ସେବନ କରୁଁ । ଖାଦ୍ୟର ସମସ୍ତ ଉପାଦାନ ଯଥା ଶ୍ୱେତସାର, ସ୍ନେହସାର, ପୁଷ୍ଟିସାର ଆଦି ଏକାଧାରରେ ଦୁଗ୍ଧରେ ସମାବିଷ୍ଟ ଥାଏ । ଏଣୁ ଗୋ-ଦୁଗ୍ଧ ଆଦର୍ଶ ଖାଦ୍ୟ । ରୋଗଜର୍ଜରିତ ଦେହପାଇଁ ଅନ୍ୟ ଖାଦ୍ୟ ନିଷେଧ ହେଲେ ସୁଦ୍ଧା ଗୋ-ଦୁଗ୍ଧ ପଥ୍ୟ ଅଟେ । ତାହା ସ୍ୱାସ୍ଥ୍ୟର ଆଧାର । ମନୁଷ୍ୟର ସୌନ୍ଦର୍ଯ୍ୟ ତାହାର ପୋଷାକପରିଚ୍ଛଦରେ ନ ଥାଏ; ସ୍ୱାସ୍ଥ୍ୟ ହିଁ ତାହାର ସୌନ୍ଦର୍ଯ୍ୟ । ଗୋ-ବର୍ଗର ଧ୍ୱନି ଶୁଭସୂଚକ । ଯେଉଁ ଗୃହ ଏହି ଧ୍ୱନିରେ ମୁଖରିତ, ତାହା ଧନ୍ୟ ଓ ଭାଗ୍ୟଶାଳୀ ଅଟେ । ଯେଉଁ ରାଷ୍ଟ୍ର ଗୋ-ଜାତିର ଉନ୍ନତିପାଇଁ ଚେଷ୍ଟାଶୀଳ, ତାହାର ସମୃଦ୍ଧି ଅନିବାର୍ଯ୍ୟ ।

॥ ମଣ୍ଡଳ ୫, ସୂକ୍ତ ୨୦, ମନ୍ତ୍ର ୨ ॥

ବୃଦ୍ଧ କିଏ ?

ଯେ ଅଗ୍ନେ ନେରୟନ୍ତି ତେ

ବୃଦ୍ଧା ଉଗ୍ରସ୍ୟ ଶବସଃ ।

ଅପ ଦ୍ୱେଷୋ ଅପ ହ୍ୱରୋ

ଽନ୍ୟବ୍ରତସ୍ୟ ସଶ୍ଚିରେ ॥

( ପ୍ରୟସ୍ୱନ୍ତ ଆତ୍ରେୟାଃ । ଅଗ୍ନିଃ । ଅନୁଷ୍ଟୁପ୍ )

ପଦପାଠ : ଯେ । ଅଗ୍ନେ । ନ । ଇରୟନ୍ତି । ତେ । ବୃଦ୍ଧାଃ । ଉଗ୍ରସ୍ୟ । ଶବସଃ । ଅପ । ଦ୍ୱେଷଃ । ଅପ । ହ୍ୱରଃ । ଅନ୍ୟବ୍ରତସ୍ୟ । ସଶ୍ଚିରେ ॥

ପଦାର୍ଥ : (ଅଗ୍ନେ) ହେ ନାୟକ ! (ତେ) ସେମାନେ (ବୃଦ୍ଧାଃ) ବୃଦ୍ଧ ଅଟନ୍ତି (ଯେ ନ ଇରୟନ୍ତି) ଯେଉଁମାନେ କମ୍ପିତ ବା ବିଚଳିତ ହୁଅନ୍ତି ନାହିଁ; (ଉଗ୍ରସ୍ୟ ଶବସଃ) ଉଗ୍ର ବଳବାନ ଲୋକର (ଅନ୍ୟବ୍ରତସ୍ୟ) ବ୍ରତହୀନ ନାସ୍ତିକ ଲୋକର (ଦ୍ୱେଷଃ) ଦ୍ୱେଷଭାବ (ହ୍ୱରଃ) କୁଟିଳତା (ଅପ ସଶ୍ଚିରେ) ଦୂର କରନ୍ତି ।





॥ ମଣ୍ଡଳ ୫, ସୂକ୍ତ ୨୦, ମନ୍ତ୍ର ୨ ॥

—ବେଦ ଏଠାରେ ବୃଦ୍ଧପୁରୁଷଙ୍କର ଲକ୍ଷଣ ଚର୍ଚ୍ଚା କରୁଛନ୍ତି । ଏହା ଜଣାଶୁଣା କଥା ଯେ ବୃଦ୍ଧାବସ୍ଥାରେ ମନୁଷ୍ୟ ବୟସାଧିକ୍ୟ ଓ ଦୁର୍ବଳତା ହେତୁ କମ୍ପମାନ ହୁଏ । କମ୍ପିତ ହେବା ବାର୍ଦ୍ଧକ୍ୟର ଲକ୍ଷଣ । ପରନ୍ତୁ ଏଠାରେ ବର୍ଣ୍ଣିତ ବୃଦ୍ଧମାନେ କମ୍ପନଶୀଳ ନୁହନ୍ତି । ଏଠାରେ ବାର୍ଦ୍ଧକ୍ୟ ସହିତ ବୟସର ସମ୍ପର୍କ ନାହିଁ । ଯେ ଦୃଢ଼ମନା, ସାହସୀ ଓ ପରୋପକାରୀ, ସେ ବୃଦ୍ଧ । ଶତ ବାଧାବିଘ୍ନ ଓ ପ୍ରତିବନ୍ଧକ ସତ୍ତ୍ୱେ ସେ ନ୍ୟାୟୋକ୍ତ ମାର୍ଗରୁ ବିଚ୍ୟୁତ ହୁଅନ୍ତି ନାହିଁ । ସେ ସଙ୍କଟ ସମୟରେ ସାହସ ପ୍ରଦାନ କରନ୍ତି ଓ ସର୍ବଦା ଅବିଚଳିତ ରହନ୍ତି ।

ସାଧାରଣ ଭାଷାରେ କୁହାଯାଉଥିବା ବୃଦ୍ଧଲୋକେ ଅନେକ ସମୟରେ ମୋହଗ୍ରସ୍ତ ହୋଇଥାନ୍ତି । ସମାଜ-କଲ୍ୟାଣ କାର୍ଯ୍ୟପାଇଁ ବେଳ ପାଆନ୍ତି ନାହିଁ । ପରନ୍ତୁ ମନୁଷ୍ୟସମାଜରୁ ଦ୍ୱେଷ ଓ କୁଟିଳତା ଦୂର କରୁଥିବା ସାହସୀ ବ୍ୟକ୍ତି ଏଠାରେ ବୃଦ୍ଧ ବୋଲି କୁହାଯାଇଛି । ଏମାନେ ସ୍ୱୟଂ ଈଶ୍ୱର ବିଶ୍ୱାସୀ ହୋଇ ନିଜର ଆଦର୍ଶ ଦ୍ୱାରା ଅନ୍ୟମାନଙ୍କୁ କର୍ତ୍ତବ୍ୟପରାୟଣ ଓ ଈଶ୍ୱରବିଶ୍ୱାସୀ କରନ୍ତି । ଏମାନେ ନାସ୍ତିକକୁ ଆସ୍ତିକ, ହିଂସ୍ରକକୁ ପ୍ରେମିକ, ଦୁଷ୍ଟକୁ ଶିଷ୍ଟ ରୂପରେ ପରିଣତ କରନ୍ତି । ଯେ ନିଜର ଉତ୍ତମତାରେ ସନ୍ତୁଷ୍ଟ ନ ରହି ଅନ୍ୟମାନଙ୍କୁ ଉତ୍ତମ କରିବାରେ ନିରନ୍ତର ପ୍ରୟାସୀ, ସେ ହିଁ ପ୍ରକୃତ ବୃଦ୍ଧ ।

॥ ମଣ୍ଡଳ ୧୦, ସୂକ୍ତ ୫୩, ମନ୍ତ୍ର ୮ ॥

ନଦୀରୂପକ ସଂସାର

ଅଶ୍ମନ୍ୱତୀ ରୀୟତେ ସଂ ରଭଧ୍ୱ-
ମୁତ୍ତିଷ୍ଠତ ପ୍ର ତରତା ସଖାୟଃ ।
ଅତ୍ରା ଜହାମ ଯେ ଅସନ୍ନଶେବାଃ
ଶିବାନ୍ ବୟମୁତ୍ତରେମାଭି ବାଜାନ୍ ॥

(ଦେବାଃ । ଅଗ୍ନିଃ । ତ୍ରିଷ୍ଟୁପ୍)

**ପଦପାଠଃ** ଅଶ୍ମନ୍‌ଽବତୀ । ରୀୟତେ । ସମ୍ । ରଭଧ୍ୱମ୍ । ଉତ୍ । ତିଷ୍ଠତ । ପ୍ର । ତରତ । ସଖାୟଃ । ଅତ୍ର । ଜହାମ । ଯେ । ଅସନ୍ । ଅଶେବାଃ । ଶିବାନ୍ । ବୟମ୍ । ଉତ୍ । ତରେମ । ଅଭି । ବାଜାନ୍ ॥

**ପଦାର୍ଥଃ** (ସଖାୟଃ) ହେ ମିତ୍ରଗଣ ! (ଅଶ୍ମନ୍ୱତୀ) ପ୍ରସ୍ତରପୂର୍ଣ୍ଣ ଭୟଂକର ନଦୀ (ରୀୟତେ) ବେଗରେ ପ୍ରବାହିତ ହେଉଅଛି । ଏଣୁ (ଉତ୍ତିଷ୍ଠତ) ଉଠ, (ସଂ ରଭଧ୍ୱମ୍) ସଂଗଠିତ ହୁଅ, ଏହାକୁ (ପ୍ର ତରତ) ଅତିକ୍ରମ କର । (ଯେ) ଯେଉଁସବୁ (ଅଶେବାଃ ଅସନ୍) ଦୁର୍ଗୁଣ ଅଛି (ଅତ୍ର ଜହାମ) ଏଠାରେ ତ୍ୟାଗ କରୁଁ । (ବୟମ୍) ଆମ୍ଭେମାନେ (ଶିବାନ୍ ବାଜାନ୍) କଲ୍ୟାଣକାରୀ କର୍ମଗୁଡ଼ିକୁ (ଅଭି) ଆଗରେ ରଖି (ଉତ୍ ତରେମ) ନଦୀ ପାର ହେଉଁ ।





॥ ମଣ୍ଡଳ ୧୦, ସୂକ୍ତ ୫୩, ମନ୍ତ୍ର ୮ ॥

—ସଂସାର ପ୍ରସ୍ତରପୂର୍ଣ୍ଣ ନଦୀସଦୃଶ ଅଟେ । ସାଧାରଣତଃ ପାର୍ବତ୍ୟ ପ୍ରଦେଶରେ ଏହିପରି ନଦୀ ଦେଖାଯାଏ । ନଦୀଶଯ୍ୟା ଗଡ଼ାଣିଆ ଓ ବଡ଼ ବଡ଼ ପଥରରେ ପୂର୍ଣ୍ଣ ରହିଥାଏ । ଏଥିଯୋଗୁଁ ନଦୀସ୍ରୋତ ଅତ୍ୟନ୍ତ ପ୍ରଖର ହୁଏ । ସ୍ରୋତର ତୀବ୍ର ଗତି ଯୋଗୁଁ ଏକାକୀ ନଦୀ ପାର ହେବା କଷ୍ଟସାଧ୍ୟ ହୁଏ । ପାର୍ବତ୍ୟ ସ୍ରୋତର ଗଭୀରତା କମ୍ । ଏଥିରେ ନୌକା ଯାତାୟାତ କରିପାରେ ନାହିଁ । ଏଣୁ ପଥିକମାନେ ହାତ ଧରାଧରି ହୋଇ ସ୍ରୋତ ପାର ହୁଅନ୍ତି । ସଂସାର ଏହିପରି ଏକ ପ୍ରଖର ନଦୀ ଅଟେ । ଏଣୁ ମନ୍ତ୍ର କହୁଛନ୍ତି—'ସଂ ରଭଧ୍ୱମ୍', ଅର୍ଥାତ୍ ଏକାଠି ହୋଇ ପାର ହୁଅ । ଏକୁଟିଆ ରହି ସଂସାରରେ ଚଳିବା ସମ୍ଭବ ନୁହେଁ । ଏଣୁ ପରସ୍ପର ସହାୟକ ହୁଅ । ପରସ୍ପର ସଖା ହୋଇ ସଂସାରଯାତ୍ରା କର । ବିଷମ ପରିସ୍ଥିତିରେ ଯେ ଉଦ୍ଧାର କରେ, ସେ ସଖା ଅଟେ ।

ମୁଣ୍ଡରେ ବୋଝ ଥାଇ ଖରସ୍ରୋତା ନଦୀ ପାର ହେବା ଦୁଃସାଧ୍ୟ । କାମକ୍ରୋଧାଦି ଆବେଗଗୁଡ଼ିକ ମନୁଷ୍ୟର ଭାରସଦୃଶ । ସଂସାରଯାତ୍ରାରେ ଏଗୁଡ଼ିକୁ ତ୍ୟାଗ କରିବାପାଇଁ ପରାମର୍ଶ ଦିଆଯାଇଛି । ବେଦମନ୍ତ୍ରର 'ଅଶ୍ମନ୍ୱତୀ ରୀୟତେ'କୁ ଉପନିଷଦ୍‌ର ଋଷି କହୁଛନ୍ତି—'କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା ।' ଅର୍ଥାତ୍ ସଂସାରପଥ କ୍ଷୁରଧାର ପରି ତୀକ୍ଷ୍ଣ ଓ ଦୁର୍ଗମ । ଅତ୍ୟନ୍ତ ସାବଧାନତାପୂର୍ବକ ଏହାକୁ ଅତିକ୍ରମ କରିବାକୁ ହେବ ।

॥ ମଣ୍ଡଳ ୧, ସୂକ୍ତ ୧, ମନ୍ତ୍ର ୪ ॥

ହିଂସାରହିତ କର୍ମକୁ ଯଜ୍ଞ କହନ୍ତି

ଅଗ୍ନେ ଯଂ ଯଜ୍ଞମଧ୍ୱରଂ

ବିଶ୍ୱତଃ ପରିଭୂରସି ।

ସ ଇଦ୍ ଦେବେଷୁ ଗଚ୍ଛତି ॥

(ମଧୁଚ୍ଛନ୍ଦା ବୈଶ୍ୱାମିତ୍ରଃ । ଅଗ୍ନିଃ । ଗାୟତ୍ରୀ)

ପଦପାଠ : ଅଗ୍ନେ । ଯମ୍ । ଯଜ୍ଞମ୍ । ଅଧ୍ୱରମ୍ । ବିଶ୍ୱତଃ । ପରିଭୂଃ । ଅସି । ସଃ । ଇତ୍ । ଦେବେଷୁ । ଗଚ୍ଛତି ॥

ପଦାର୍ଥ : (ଅଗ୍ନେ) ହେ ସର୍ବପ୍ରକାଶକ ପ୍ରଭୋ ! (ଯଂ) ଯେଉଁ (ଅଧ୍ୱରଂ) ହିଂସାରହିତ (ଯଜ୍ଞଂ) ଯଜ୍ଞକୁ (ବିଶ୍ୱତଃ) ସର୍ବତ୍ର (ପରିଭୂଃ ଅସି) ପରିବ୍ୟାପ୍ତ କରିଅଛ, (ସଃ ଇତ୍) ତାହା ନିଶ୍ଚୟ (ଦେବେଷୁ ଗଚ୍ଛତି) ଦେବତାଙ୍କଠାରେ ପହଞ୍ଚିଥାଏ ।





॥ ମଣ୍ଡଳ ୧, ସୂକ୍ତ ୧, ମନ୍ତ୍ର ୪ ॥

—ହେ ସର୍ବପ୍ରକାଶକ ଦେବ ! ଆପଣଙ୍କ ଦ୍ୱାରା ଆଚ୍ଛାଦିତ ସୃଷ୍ଟି-ରୂପକ ଯଜ୍ଞରେ ହିଂସାଦି ଦୋଷ ଭସ୍ମୀଭୂତ ହୁଏ । ବସ୍ତୁତଃ ଏହି ଜଗତ୍‌ମାତ୍ରର ଯଜ୍ଞାନୁଷ୍ଠାନକୁ ପ୍ରତିରୋଧ କରିବାପାଇଁ କୌଣସି ହିଂସ୍ରକର ଶକ୍ତି ନାହିଁ ? ରାକ୍ଷସମାନେ ଲୌକିକ ଯଜ୍ଞରେ ହିଂସାଚରଣ କରନ୍ତି ଅର୍ଥାତ୍ ମନୁଷ୍ୟ ସମାଜରେ ଲୋକକଲ୍ୟାଣକାରୀ କର୍ମଗୁଡ଼ିକରେ ବିଘ୍ନ ସୃଷ୍ଟି କରନ୍ତି । ପରନ୍ତୁ ସୃଷ୍ଟିଯଜ୍ଞକୁ ବିଚଳିତ କରିବାପାଇଁ କାହାରି ଦମ୍ଭ ନାହିଁ । ବିଶ୍ୱଯଜ୍ଞରେ ଅଗ୍ନି, ସୂର୍ଯ୍ୟ, ବାୟୁ, ଜଳ ପ୍ରଭୃତି ଦିବ୍ୟଶକ୍ତିସମୂହ ନିରନ୍ତର କର୍ମରତ ହୋଇଛନ୍ତି । ଏମାନଙ୍କର କର୍ମ ହିଂସାଶୂନ୍ୟ । ଦେବତାମାନେ ଅନ୍ୟର ମୁଖରେ କଲ୍ୟାଣରୂପକ ଆହୁତି ପ୍ରଦାନ କରନ୍ତି । ସେମାନେ ନିଜର ଭୋଗ-ପାଇଁ ବ୍ୟାକୁଳ ନୁହନ୍ତି । ବିଶ୍ୱଯଜ୍ଞରେ ଦେବତା ଉତ୍ପନ୍ନ ହୁଅନ୍ତି ଓ ଯଜ୍ଞର ପ୍ରସାର କରନ୍ତି ।

ବେଦମନ୍ତ୍ରରେ ଯଜ୍ଞକୁ 'ଅଧ୍ୱର' ବା ଅହିଂସକ କୁହାଯାଇଛି । ଏଣୁ ଲୌକିକ ଯଜ୍ଞର ଚାରିପାଖରେ ଯେଉଁ ଚାରି ଜଣ ଋତ୍ୱିକ୍ ବସନ୍ତି, ସେମାନଙ୍କ ମଧ୍ୟରୁ ଜଣଙ୍କର ନାମ ଅଧ୍ୱର୍ଯ୍ୟୁ ବା ଅହିଂସାର ପ୍ରତିନିଧି । ସେ କାୟମନୋ-ବାକ୍ୟରେ ଯଜ୍ଞସ୍ଥଳୀରେ ହିଂସାଚରଣ କରିବାକୁ ଦିଅନ୍ତି ନାହିଁ । ତେଣୁ ଯଜ୍ଞରେ ପଶୁହିଂସା ବା ପଶୁବଳିର କଳ୍ପନା ଅବୈଦିକ । ବୈଦିକ ପରିଭାଷାରେ 'ଗୋ-ମେଧ'ର ଅର୍ଥ ବାଣୀର ସ୍ୱାଧ୍ୟାୟ କରିବା, ଗୋ-ପ୍ରଦର୍ଶନୀ କରିବା । 'ଅଶ୍ୱମେଧ'ର ଅର୍ଥ ଅଶ୍ୱ ବା ରାଷ୍ଟ୍ରର ସମୃଦ୍ଧି କରିବା । ବେଦ କହୁଛନ୍ତି 'ପଶୂନ୍ ପାହି' ଅର୍ଥାତ୍ ପଶୁମାନଙ୍କୁ ରକ୍ଷା କର ।

॥ ମଣ୍ଡଳ ୯, ସୂକ୍ତ ୮୩, ମନ୍ତ୍ର ୧ ॥

ତପ

ପବିତ୍ରଂ ତେ ବିତତଂ ବ୍ରହ୍ମଣସ୍ପତେ

ପ୍ରଭୁର୍ଗାତ୍ରାଣି ପର୍ଯ୍ୟେଷି ବିଶ୍ୱତଃ ।,

ଅତପ୍ତତନୂର୍ନ ତଦାମୋ ଅଶ୍ନୁତେ

ଶୃତାସ ଇଦ୍ବହନ୍ତସ୍ତତ୍ ସମାଶତ ॥

( ପବିତ୍ର ଆଙ୍ଗିରସଃ । ପବମାନଃ ସୋମଃ । ଜଗତୀ)

ପଦପାଠ : ପବିତ୍ରମ୍ । ତେ । ବିଽତତମ୍ । ବ୍ରହ୍ମଣଃ । ପତେ । ପ୍ରଽଭୁଃ । ଗାତ୍ରାଣି । ପରି । ଏଷି । ବିଶ୍ୱତଃ । ଅତପ୍ତଽତନୂଃ । ନ । ତତ୍ । ଆମଃ । ଅଶ୍ନୁତେ । ଶୃତାସଃ । ଇତ୍ । ବହନ୍ତଃ । ତତ୍ । ସମ୍ । ଆଶତ ॥

ପଦାର୍ଥ : (ବ୍ରହ୍ମଣ ପତେ) ହେ ବେଦଜ୍ଞାନର ସ୍ୱାମୀ ! ( ତେ ପବିତ୍ରମ୍ ) ତୁମର ପବିତ୍ରତା (ବିତତମ୍ ) ସର୍ବତ୍ର ବ୍ୟାପି ରହିଛି । (ପ୍ରଭୁଃ) ପ୍ରଭୁ (ବିଶ୍ୱତଃ) ସବୁ ଦିଗରୁ (ଗାତ୍ରାଣି ପରି ଏଷି) ସଂସାରର ସବୁ ଅଙ୍ଗକୁ ଆଚ୍ଛାଦିତ କରିଛନ୍ତି । (ତତ୍ ଆମଃ) ସେହି ଜ୍ଞାନମୟ ଆନନ୍ଦକୁ (ଅତପ୍ତତନୂଃ) ଶାରୀରିକ ତପବିହୀନ ବ୍ୟକ୍ତି (ନ ଅଶ୍ନୁତେ) ପ୍ରାପ୍ତ ହୁଏ ନାହିଁ । ( ଶୃତାସଃ) ପରିପକ୍ୱ ମହାପୁରୁଷମାନେ (ଇତ୍ ବହନ୍ତଃ) ସେ ଆନନ୍ଦକୁ ଧାରଣ କରି (ତତ୍) ନିଶ୍ଚୟ (ସମ୍ ଆଶତ) ସମ୍ୟକ୍ ରୂପରେ ପ୍ରାପ୍ତ ହୁଅନ୍ତି ।





॥ ମଣ୍ଡଳ ୯, ସୂକ୍ତ ୮୩, ମନ୍ତ୍ର ୧ ॥

—ପ୍ରଭୁଙ୍କର ଆନନ୍ଦମୟ ସ୍ରୋତ ସର୍ବତ୍ର ପ୍ରବାହିତ ହେଉଅଛି । ଯେଉଁମାନେ ନିଜକୁ ତପାଗ୍ନି ଦ୍ୱାରା ତପସ୍ୱୀ କରନ୍ତି, ସେମାନେ ହିଁ ସେହି ଆନନ୍ଦରସ ଉପଲବ୍ଧ କରନ୍ତି । ଯଥା ମାଟିହାଣ୍ଡିରେ ଜଳ ରଖିଲେ, ତାହା ମଳେଇ ଯିବା ପରି ଦେହକୁ ତପାଗ୍ନି ଦ୍ୱାରା ସିଦ୍ଧ କଲେ ତାହାର ଅବିଳତା ଦୂର ହୁଏ ।

ତପ କହିଲେ ପ୍ରଚଣ୍ଡ ଖରାରେ ସ୍ୱନିବଗରେ ଅଗ୍ନି ଜାଳି ଦେଇ ମଝିରେ ବସି ରହିବା, ବର୍ଷ ବର୍ଷ ଧରି ଊର୍ଦ୍ଧ୍ୱବାହୁ ହୋଇ ଠିଆ ହେବା, ଗୋଡ଼କୁ ଗଛରେ ବାନ୍ଧି ଦେଇ ଓଲଟି ହୋଇ ରହିବା, ବହୁଦିନ କ୍ଷୁଧାର୍ତ୍ତ ରହିବା ପ୍ରଭୃତି କଠୋର କର୍ମ ବୁଝାଏ ନାହିଁ । ଏସବୁ କଠୋର ସାଧନାଗୁଡ଼ିକ ଶ୍ରଦ୍ଧା ସହକାରେ ସମ୍ପାଦିତ ହେଲେ ମଧ୍ୟ ତଦ୍ୱାରା ମନ ଓ ବୁଦ୍ଧିର ମଳିନତା ନଷ୍ଟ ହୁଏ ନାହିଁ । ଗୀତା କହୁଛନ୍ତି —"ଯେଉଁମାନେ ଶାସ୍ତ୍ରୋକ୍ତ ତପ ଆଚରଣ ନ କରି ବୁଦ୍ଧି, ସାଧନାରେ ବ୍ୟାପୃତ ରହନ୍ତି କାମ-କ୍ରୋଧ-ଲୋଭ-ମୋହାଦି କାରଣରୁ ଘୋର କର୍ମ କରନ୍ତି, ସେମାନେ ତପସ୍ୱୀ ନୁହନ୍ତି । ଯେଉଁମାନେ ଶରୀରସ୍ଥ ଦେବତା ଓ ଆତ୍ମାକୁ ଏହିରୂପେ ଦୁର୍ବଳ କରିଦିଅନ୍ତି, ସେମାନେ ଅସୁର ଅଟନ୍ତି ।"

ଦେବ-ଦ୍ୱିଜ-ଗୁରୁ-ପ୍ରାଜ୍ଞପୂଜା, ଶୌଚ, ନମ୍ରତା, ବ୍ରହ୍ମଚର୍ଯ୍ୟ ଓ ଅହିଂସାକୁ ଶାସ୍ତ୍ରରେ ଶାରୀରିକ ତପ କୁହାଯାଇଛି । ମହର୍ଷି ମନୁ କହୁଛନ୍ତି, 'ତପସା କଲ୍ମଷଂ ହନ୍ତି' ଅର୍ଥାତ୍ ତପଦ୍ୱାରା ଲୋକ ପାପ ଦୂର କରେ ।

॥ ମଣ୍ଡଳ ୩, ସୂକ୍ତ ୮, ମନ୍ତ୍ର ୮ ॥

ଯଜ୍ଞର ପତାକା ଉନ୍ନତ କର

ଆଦିତ୍ୟା ରୁଦ୍ରା ବସବଃ ସୁନୀଥା

ଦ୍ୟାବାକ୍ଷାମା ପୃଥିବୀ ଅନ୍ତରିକ୍ଷମ୍ ।

ସଜୋଷସୋ ଯଜ୍ଞମବନ୍ତୁ ଦେବା

ଊର୍ଦ୍ଧ୍ୱଂ କୃଣ୍ୱନ୍ତ୍ୱଧ୍ୱରସ୍ୟ କେତୁମ୍ ॥

(ଗାଥିନୋ ବିଶ୍ୱାମିତ୍ରଃ । ବିଶ୍ୱେଦେବାଃ । ତ୍ରିଷ୍ଟୁପ୍ )

ପଦପାଠ : ଆଦିତ୍ୟାଃ । ରୁଦ୍ରାଃ । ବସବଃ । ସୁନୀଥାଃ । ଦ୍ୟାବାକ୍ଷାମା । ପୃଥିବୀ । ଅନ୍ତରିକ୍ଷମ୍ । ସଜୋଷସଃ । ଯଜ୍ଞମ୍ । ଅବନ୍ତୁ । ଦେବାଃ । ଊର୍ଦ୍ଧ୍ୱମ୍ । କୃଣ୍ୱନ୍ତୁ । ଅଧ୍ୱରସ୍ୟ । କେତୁମ୍ ॥

ପଦାର୍ଥ : (ସୁନୀଥାଃ) ନୀତିଜ୍ଞ (ଆଦିତ୍ୟାଃ) ନେତା (ରୁଦ୍ରାଃ) ସୈନିକ (ବସବଃ) ଧନପତି (ପୃଥିବୀ) ବିଶାଳ (ଦ୍ୟାବାକ୍ଷାମା) ଦ୍ୟୌ ଓ ପୃଥିବୀ (ଅନ୍ତରିକ୍ଷମ୍) ଅନ୍ତରିକ୍ଷ (ଦେବାଃ) ପରୋପକାରୀ ବିଦ୍ୱାନ୍ (ସଜୋଷସଃ) ପ୍ରୀତିସମ୍ପନ୍ନ ହୋଇ (ଯଜ୍ଞମ୍) ଯଜ୍ଞକୁ (ଅବନ୍ତୁ) ରକ୍ଷା କରନ୍ତୁ । (ଅଧ୍ୱରସ୍ୟ) ଯଜ୍ଞର (କେତୁମ୍) ପତାକାକୁ (ଊର୍ଦ୍ଧ୍ୱଂ କୃଣ୍ୱନ୍ତୁ) ଉନ୍ନତ କରନ୍ତୁ ।





॥ ମଣ୍ଡଳ ୩, ସୂକ୍ତ ୮, ମନ୍ତ୍ର ୮ ॥

—ପତାକା ଜୀବନର ଚିହ୍ନ ଅଟେ । ଏଣୁ ରାଷ୍ଟ୍ରବାସୀ ନିଜର ଜୀବନ ଦାନ କରି ତାଙ୍କର ପତାକାକୁ ଅକ୍ଷୁର୍ଣ୍ଣ ରଖନ୍ତି । ପତାକାର ପରିବର୍ତ୍ତନ ହେଲେ ଆଦର୍ଶ ପରିବର୍ତ୍ତିତ ହୁଏ । ମନ୍ତ୍ରରେ ପତାକାକୁ ଉତ୍ତୋଳିତ ରଖିବା ପାଇଁ ଉଦ୍‌ବୋଧନ ଦିଆଯାଇଛି । ଏହି ପତାକା ଯଜ୍ଞର ପତାକା । ଯଜ୍ଞ ମାନବତା ଅଟେ । ଯଜ୍ଞ ପରାର୍ଥର ନାମ ଅଟେ । ଯଜ୍ଞକୁ ଏଠାରେ ଅଧ୍ୱର ବା ଅହିଂସକ କୁହାଯାଇଛି । ଅହିଂସାଚରଣ ମାନବର ପରମ କର୍ତ୍ତବ୍ୟ ।

ପଶୁରାଜ୍ୟରେ ଯେ ଅଧିକ ହିଂସ୍ରକ, ସେ ବଳବାନ୍‌ରୂପେ ପରିଗଣିତ । ପରନ୍ତୁ ପରୋପକାର ମନୁଷ୍ୟର ବଳ; ଦୟା ତାହାର ସୌନ୍ଦର୍ଯ୍ୟ, କ୍ଷମା ତାହାର ଭୂଷଣ । ଅନ୍ୟର ପ୍ରଗତିକୁ ରୁଦ୍ଧ କରି ନିଜେ ଅଗ୍ରସର ହେବାର ନାମ ହିଂସା । ସମାଜରେ ହିଂସା ବୃଦ୍ଧି ପାଇଲେ ମାନବତା କ୍ଷୀଣ ହୁଏ । ଯଜ୍ଞର ପତାକା ଅବନତ ହୁଏ । କୁହାଯାଇଛି ଯେ ଦେବତା ଯଜ୍ଞକୁ ରକ୍ଷା କରନ୍ତି । ମନୁଷ୍ୟଠାରେ ଦିବ୍ୟଭାବନା ଜାଗ୍ରତ ହେଲେ, ମାନବହୃଦୟ ବିକଶିତ ହୁଏ । ମନୁଷ୍ୟ ସମାଜ ଯଜ୍ଞମୟ ହୁଏ । ଅନ୍ୟ ପକ୍ଷରେ ଆସୁରି ଭାବନା ଦ୍ୱାରା ମାନବତା ବିପନ୍ନ ହୁଏ । ମନୁଷ୍ୟ ସମାଜ ବିଷାକ୍ତ ହୁଏ ।

॥ ମଣ୍ଡଳ ୫, ସୂକ୍ତ ୪୪, ମନ୍ତ୍ର ୧୪ ॥

ପ୍ରଭୁ ଜାଗ୍ରତ ପୁରୁଷର ବନ୍ଧୁ

ଯୋ ଜାଗାର ତମୃଚଃ କାମୟନ୍ତେ

ଯୋ ଜାଗାର ତମୁ ସାମାନି ଯନ୍ତି ।

ଯୋ ଜାଗାର ତମୟଂ ସୋମ ଆହ

ତବାହମସ୍ମି ସଖ୍ୟେ ନ୍ୟୋକାଃ ॥

( ଅବତ୍ସାରଃ । ବିଶ୍ୱେଦେବାଃ । ତ୍ରିଷ୍ଟୁପ୍ )

**ପଦପାଠ :** ଯଃ । ଜାଗାର । ତମ୍ । ଋଚଃ । କାମୟନ୍ତେ । ଯଃ । ଜାଗାର । ତମ୍ । ଉଁ ଇତି । ସାମାନି । ଯନ୍ତି । ଯଃ । ଜାଗାର । ତମ୍ । ଅୟମ୍ । ସୋମଃ । ଆହ । ତବ । ଅହମ୍ । ଅସ୍ମି । ସଖ୍ୟେ । ନିଓକାଃ ॥

**ପଦାର୍ଥ :** ( ଯଃ ଜାଗାର ) ଯେଉଁ ବ୍ୟକ୍ତି ଜାଗ୍ରତ ଥାଏ ( ତମ୍ ) ତାହାକୁ (ଋଚଃ କାମୟନ୍ତେ) ଋଗ୍ୱେଦର ମନ୍ତ୍ର ଇଚ୍ଛା କରନ୍ତି । (ଯଃ ଜାଗାର) ଯେଉଁ ବ୍ୟକ୍ତି ଜାଗ୍ରତ ଥାଏ (ତମ୍ ଉ) ତାହାକୁ ହିଁ (ସାମାନି ଯନ୍ତି) ସାମବେଦର ମନ୍ତ୍ରମାନେ ପ୍ରାପ୍ତ ହୁଅନ୍ତି । (ଯଃ ଜାଗାର ) ଯେ ଜାଗ୍ରତ ଥାଏ ( ତମ୍ ) ତାହାକୁ ( ଅୟଂ ସୋମ ଆହ ) ଏହି ଶାନ୍ତସ୍ୱରୂପ ପ୍ରଭୁ କହନ୍ତି (ଅହଂ) ମୁଁ (ତବ ସଖ୍ୟେ) ତୁମ ବନ୍ଧୁତାରେ (ନ୍ୟୋକାଃ ଅସ୍ମି ) ଭିତରର ସହବାସୀ ହୋଇ ରହିଛି ।





॥ ମଣ୍ଡଳ ୫, ସୂକ୍ତ ୪୪, ମନ୍ତ୍ର ୧୪ ॥

—ଋଗ୍‌ବେଦର ମନ୍ତ୍ରକୁ 'ଋକ୍' କୁହାଯାଏ । ଋକ୍‌ର ଅର୍ଥ ଛନ୍ଦୋବଦ୍ଧ ହେବା । ଋଗ୍‌ବେଦର ଛନ୍ଦୋବଦ୍ଧ ମନ୍ତ୍ରମାନଙ୍କରେ ଜ୍ଞାନକାଣ୍ଡ ବର୍ଣ୍ଣିତ ହୋଇଛି । ଯେଉଁମାନେ ଜ୍ଞାନାହରଣ ପାଇଁ ଉଦ୍ୟମ କରନ୍ତି, ଋକ୍ ସେମାନଙ୍କୁ ବରଣ କରନ୍ତି । ଶୋଇବା ଲୋକର ଜ୍ଞାନବୃଦ୍ଧି ହୁଏ ନାହିଁ । ତାହାର ଜ୍ଞାନେନ୍ଦ୍ରିୟଗୁଡିକ ଶିଥିଳ ଥାଆନ୍ତି । ଆଳସ୍ୟ ତ୍ୟାଗ କରି ଜାଗ୍ରତ ହେଲେ ଜ୍ଞାନପାଇଁ ପିପାସା ବଢ଼େ; ମନୁଷ୍ୟ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହୁଏ ।

ମନୁଷ୍ୟ କର୍ମମଧ୍ୟରେ ସର୍ବଦା ଅଶାନ୍ତ ଓ ଦୁଃଖୀ ହୋଇ ରହିଲେ କର୍ମର ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ । ଶାନ୍ତିଲାଭପାଇଁ କର୍ମର ପ୍ରୟୋଜନ । ସାମବେଦ ଶାନ୍ତିରସର ସଂଗୀତ ଅଟେ । କେବଳ କର୍ମତତ୍ପର ହେଲେ ମନୁଷ୍ୟକୁ ଶାନ୍ତି ମିଳେ ନାହିଁ । ଆଳସ୍ୟ ଓ ପ୍ରମାଦ ତ୍ୟାଗ କରି ଆତ୍ମାକୁ ଖୋଜିବାକୁ ହେବ । ଆତ୍ମାନୁଭବଦ୍ୱାରା ଶୋକ ଓ ମୋହ ଦୂର ହୁଏ; ଶାନ୍ତି ମିଳେ ।

ସଂଗ୍ରହ କହନ୍ତି—'ତବାହମସ୍ମି ସଖ୍ୟେ ନ୍ୟୋକାଃ' ଅର୍ଥାତ୍ ତୁମେ ଜାଗ୍ରତ ହୋଇ ପୁରୁଷାର୍ଥ କର; ମୁଁ ତୁମର ହୃଦୟ ଅନ୍ତରର ସଖା ହୋଇ ରହିବି । ପ୍ରଭୁଙ୍କୁ ଖୋଜିବାର ନାମ ଜାଗରଣ, ପୁରୁଷାର୍ଥ । ହେ ଆତ୍ମନ୍ ! ଆନନ୍ଦନିଧି ପରମାତ୍ମାଙ୍କ ମିଳନପାଇଁ ଉଠ, ଜାଗ୍ରତ ହୁଅ, ପୁରୁଷାର୍ଥ କର ।

॥ ମଣ୍ଡଳ ୭, ସୂକ୍ତ ୩୨, ମନ୍ତ୍ର ୯ ॥

ହିଂସା କର ନାହିଁ

ମା ସ୍ରେଧତ ସୋମିନୋ ଦକ୍ଷତା ମହେ

କୃଣୁଧ୍ୱଂ ରାୟ ଆତୁଜେ

ତରଣିରିଜ୍ଜୟତି କ୍ଷେତି ପୁଷ୍ୟତି

ନ ଦେବାସଃ କବତ୍ନବେ ॥

( ଶକ୍ତିର୍ବାସିଷ୍ଠୋ ବା । ଇନ୍ଦ୍ରଃ । ବୃହତୀ )

**ପଦପାଠ:** ମା । ସ୍ରେଧତ । ସୋମିନଃ । ଦକ୍ଷତ । ମହେ । କୃଣୁଧ୍ୱମ୍ । ରାୟେ । ଆଽତୁଜେ । ତରଣିଃ । ଇତ୍ । ଜୟତି । କ୍ଷେତି । ପୁଷ୍ୟତି । ନ । ଦେବାସଃ । କବତ୍ନବେ ॥

**ପଦାର୍ଥ:** (ସୋମିନଃ) ହେ ଅନ୍ନଧନାଦିପାଳକ ମନୁଷ୍ୟଗଣ! (ମା ସ୍ରେଧତ) ପରସ୍ପର ହିଂସା କରନାହିଁ । (ମହେ ଦକ୍ଷତ) ମହତ୍ତ୍ୱପାଇଁ ଯତ୍ନ କର । (ଆତୁଜେ ରାୟେ) ସର୍ବପ୍ରକାର ସମୃଦ୍ଧି ପାଇଁ (କୃଣୁଧ୍ୱମ୍) ଉଦ୍ୟୋଗ କର । (ତରଣିଃ ଇତ୍) ସଙ୍କଟ ପାରକରୁଥିବା ପୁରୁଷାର୍ଥୀ ହିଁ (ଜୟତି) ବିଜୟ ଲାଭ କରେ, (କ୍ଷେତି) ପ୍ରତିଷ୍ଠିତ ହୁଏ, (ପୁଷ୍ୟତି) ପୁଷ୍ଟ ହୁଏ । (ଦେବାସଃ) ଦୈବୀ ସମ୍ପତ୍ତି (କବତ୍ନବେ) ଦୁର୍ବୃତ୍ତପାଇଁ (ନ) ନୁହେଁ ।





॥ ମଣ୍ଡଳ ୭, ସୂକ୍ତ ୩୨, ମନ୍ତ୍ର ୯ ॥

—ମନୁଷ୍ୟ ନିଜସ୍ୱାର୍ଥପାଇଁ ଅକର୍ମ କରେ; କୁକର୍ମ ମଧ୍ୟ କରେ । ନିଜ ବାସନାତୃପ୍ତି ପାଇଁ ସେ କଳହ, ହତ୍ୟା, ରକ୍ତପାତ ଆଦି ଘୋର କର୍ମରେ ବ୍ୟାପୃତ ରହେ । ଏହାଦ୍ୱାରା ସେ କେବେ କେବେ ଜୟଲାଭ କରେ । ପରନ୍ତୁ ତାହା ସ୍ଥିର ରହେ ନାହିଁ । ହିଂସାରୁ ଶାନ୍ତି ମିଳେ ନାହିଁ । ହିଂସା ପ୍ରତିହିଂସା ଓ ସଂଘର୍ଷ ସୃଷ୍ଟି କରେ । ମନୁଷ୍ୟର ଇତିହାସ ଦେଖିଲେ ଜଣାଯାଏ ଯେ ହିଂସା ଦ୍ୱାରା ବିଶ୍ୱକୁ ଜୟ କରି ବିଶ୍ୱସାମ୍ରାଜ୍ୟ ପ୍ରତିଷ୍ଠା କରିବାପାଇଁ ଅନେକ ସ୍ୱପ୍ନ କଳ୍ପନା ଉଦ୍ୟମ ହୋଇଛି । ପରନ୍ତୁ ସେ ସବୁ କଦାପି ସଫଳ ହୋଇନାହିଁ । ଅନ୍ୟ ପକ୍ଷରେ ସ୍ନେହ ଓ ମୈତ୍ରୀର ବାଣୀ ଶୁଣାଇ ବହୁ ସନ୍ଥ ଓ ମହାତ୍ମା ଅଖିଳ ମାନବର ହୃଦୟକୁ ଜୟ କରିଛନ୍ତି ।

ଅନ୍ୟର ପଥରେ ବାଧା ଦେଇ କେହି ନିଜର ପ୍ରଗତି କରି ପାରେ ନାହିଁ । ଯେ ହିଂସ୍ରକ ଓ ଭକ୍ଷକ ସେ ନିଜର ଆସନ ଓ ଆକାଂକ୍ଷାକୁ ସ୍ୱୟଂ ଭକ୍ଷଣ ବା ନାଶ କରି ବସେ । ହିଂସା ଦ୍ୱାରା ଅନ୍ୟକୁ ପୀଡ଼ା ଦେବା ପୂର୍ବରୁ ହିଂସ୍ରକ ନିଜର ବୃତ୍ତିକୁ ଦଂଶନ କରି ପ୍ରଥମେ ନିଜର ଅନିଷ୍ଟ ସାଧନ କରେ । ହିଂସା ମୁକ୍ତ ପ୍ରେମାଚରଣ କରୁଥିବା ବ୍ୟକ୍ତି 'ଜୟତି' ଜୟଲାଭ କରେ, 'କ୍ଷେତି' ନିଜର କ୍ଷେତ୍ରକୁ ସୁଦୃଢ଼ କରେ ଓ 'ପୁଷ୍ୟତି' ସମୃଦ୍ଧି ଶାଳୀ ହୁଏ ।

॥ ମଣ୍ଡଳ ୭, ସୂକ୍ତ ୧୦୪, ମନ୍ତ୍ର ୧୨ ॥

## ସତ୍ୟ ଓ ଅସତ୍ୟର ସଂଘର୍ଷ

ସୁବିଜ୍ଞାନଂ ଚିକିତୁଷେ ଜନାୟ

ସଚ୍ଚାସଚ୍ଚ ବଚସୀ ପସ୍ପୃଧାତେ ।

ତୟୋର୍ଯତ୍ ସତ୍ୟଂ ଯତରଦୃଜୀୟସ୍

ତଦିତ୍ ସୋମୋଽବତି ହନ୍ତ୍ୟାସତ୍ ॥

(ମୈତ୍ରାବରୁଣିର୍ବସିଷ୍ଠଃ । ସୋମଃ । ତ୍ରିଷ୍ଟୁପ୍)

**ପଦପାଠ :** ସୁଽବିଜ୍ଞାନମ୍ । ଚିକିତୁଷେ । ଜନାୟ । ସତ୍ । ଚ । ଅସତ୍ । ଚ । ବଚସୀ ଇତି । ପସ୍ପୃଧାତେ ଇତି । ତୟୋଃ । ଯତ୍ । ସତ୍ୟମ୍ । ଯତରତ୍ । ଋଜୀୟଃ । ତତ୍ । ଇତ୍ । ସୋମଃ । ଅବତି । ହନ୍ତି । ଆସତ୍ ॥

**ପଦାର୍ଥ :** (ସୁବିଜ୍ଞାନଂ) ଉତ୍ତମ ଜ୍ଞାନକୁ (ଚିକିତୁଷେ) ଜିଜ୍ଞାସା କରୁଥିବା (ଜନାୟ) ମନୁଷ୍ୟପାଇଁ ( ସତ୍ ଚ ଅସତ୍ ଚ ବଚସୀ ) ସତ୍ୟ ଓ ଅସତ୍ୟ ବଚନ (ପସ୍ପୃଧାତେ) ପରସ୍ପର ସ୍ପର୍ଦ୍ଧା କରି ଥାଆନ୍ତି । (ତୟୋଃ) ସେହି ଦୁଇଟି ମଧ୍ୟରୁ (ଯତ୍) ଯେଉଁଟି (ସତ୍ୟଂ) ସତ୍ୟ, (ଯତରତ୍) ଯେଉଁଟି (ଋଜୀୟଃ) ସରଳ (ତତ୍ ଇତ୍) ତାହାକୁ ହିଁ (ସୋମଃ) ଜ୍ଞାନୀ ପୁରୁଷ (ଅବତି) ରକ୍ଷା କରେ, (ଅସତ୍ ହନ୍ତି) ଅସତ୍ୟକୁ ତ୍ୟାଗ କରେ ।





॥ ମଣ୍ଡଳ ୭, ସୂକ୍ତ ୧୦୪, ମନ୍ତ୍ର ୧୨ ॥

—ଭୂମିକୁ ଅଧିକାର କରିବାପାଇଁ ଦେବତା ଓ ଅସୁରଙ୍କ ମଧ୍ୟରେ ଯୁଦ୍ଧ ହୁଏ, ଯୁଦ୍ଧଭୂମି ରକ୍ତସିକ୍ତ ହୋଇଯାଏ । ସେହିପରି ଦେହରୂପକ କ୍ଷେତ୍ରକୁ ଅଧିକାର କରିବାପାଇଁ ମନୁଷ୍ୟର ଅନ୍ତଃକରଣରେ ସତ୍ୟ ଓ ଅସତ୍ୟ ପରସ୍ପର ସଂଘର୍ଷ କରନ୍ତି । ବେଳେ ବେଳେ ମନୁଷ୍ୟ ଏଭଳି ଦ୍ୱନ୍ଦ୍ୱର ସମ୍ମୁଖୀନ ହୁଏ ଯେ ସେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼େ ।

ବେଦ ଯାହାକୁ ସତ୍ୟ-ଅସତ୍ୟ କହୁଛନ୍ତି, ବେଦର ବ୍ୟାଖ୍ୟାନ କରୁଥିବା ବ୍ରାହ୍ମଣ ଗ୍ରନ୍ଥରେ ତାହାକୁ ଦେବାସୁରସଂଗ୍ରାମ ଓ ଉପନିଷଦରେ ତାହାକୁ ଶ୍ରେୟ-ପ୍ରେୟ ମାର୍ଗ କୁହାଯାଇଛି । ପ୍ରତ୍ୟେକ କର୍ମର ଆରମ୍ଭରେ ସତ୍ୟ ଓ ଅସତ୍ୟ ନିଜ ନିଜ ଶସ୍ତ୍ର ଓ ଯୁକ୍ତି ଧରି ମନୁଷ୍ୟର ବିବେକ ଆଗରେ ଉପସ୍ଥିତ ହୁଅନ୍ତି । ପ୍ରତ୍ୟେକ ରୂପ ଆକର୍ଷଣୀୟ ଦେଖାଯାଏ । କେଉଁଟି ଶ୍ରେୟସ୍କର, ତାହାକୁ ଚିହ୍ନିବା ଦୁଷ୍କର ହୁଏ । ବେଦ କହୁଛନ୍ତି 'ଯତ୍ ସତ୍ୟଂ ଯତରଦ୍ ଋଜୀୟଃ'—ଯେଉଁଟିକୁ ସରଳ ବୋଲି ବୁଝିବ, ତାହାକୁ ହିଁ ସତ୍ୟ ବୋଲି ଗ୍ରହଣ କରିବ । ଅସତ୍ୟ ମନମୋହକ ରୂପରେ ଉଭା ହୋଇ ବିବିଧ ନୃତ୍ୟ ଅଭିନୟ କରେ । ତାହାର କୁଟିଳ ଓ କୃତ୍ରିମ ଗତିବିଧିକୁ ଲକ୍ଷ୍ୟ କରି ତାକୁ ପରିତ୍ୟାଗ କରିବାକୁ ହେବ । ଯେ ସୌମ୍ୟପୁରୁଷ ସେ ସରଳତା ଓ ନିର୍ମଳ ଥାଏ ।

॥ ମଣ୍ଡଳ ୭, ସୂକ୍ତ ୩୩, ମନ୍ତ୍ର ୧୦ ॥

ମନୁଷ୍ୟର ଦ୍ୱିତୀୟ ଜନ୍ମ

ବିଦ୍ୟୁତୋ ଜ୍ୟୋତିଃ ପରି ସଂଜିହାନଂ
ମିତ୍ରାବରୁଣା ଯଦପଶ୍ୟତାଂ ତ୍ୱା ।
ତତ୍ ତେ ଜନ୍ମୋତୈକଂ ବସିଷ୍ଠା–
ଽଗସ୍ତ୍ୟୋ ଯତ୍ ତ୍ୱା ବିଶ ଆଜଭାର ।

(ବସିଷ୍ଠପୁତ୍ରାଃ । ବସିଷ୍ଠଃ । ତ୍ରିଷ୍ଟୁପ୍)

ପଦପାଠ : ବିଦ୍ୟୁତଃ । ଜ୍ୟୋତିଃ । ପରି । ସଂଽଜିହାନମ୍ । ମିତ୍ରାବରୁଣା । ଯତ୍ । ଅପଶ୍ୟତାମ୍ । ତ୍ୱା । ତେ । ଜନ୍ମ । ଉତ । ଏକମ୍ । ବସିଷ୍ଠ । ଅଗସ୍ତ୍ୟଃ । ଯତ୍ । ତ୍ୱା । ବିଶଃ । ଆଽଜଭାର ॥

ପଦାର୍ଥ: (ବସିଷ୍ଠ) ହେ ବେଦବାଣୀ ଜୀବ ! (ବିଦ୍ୟୁତଃ ଜ୍ୟୋତିଃ) ବିଦ୍ୟୁତ୍ ଜ୍ୟୋତିରୂପୀ (ପରି ସଂଜିହାନଂ) ସମସ୍ତ ସୃଷ୍ଟିର ଧାରକ (ତ୍ୱା) ତୋତେ (ମିତ୍ରାବରୁଣୌ) ମାତାପିତା (ଯତ୍) ଯେବେ (ଅପଶ୍ୟତାମ୍) ଦୃଷ୍ଟି କରନ୍ତି (ତତ୍) ସେବେ (ତେ ଜନ୍ମ) ତୋର ଗୋଟିଏ ଜନ୍ମ ହୁଏ । (ଉତ) ପୁନଶ୍ଚ (ଏକ) ଅନ୍ୟ ଏକ ଜନ୍ମ (ଯତ୍) ଯେବେ (ଅଗସ୍ତ୍ୟ) ଆଚାର୍ଯ୍ୟ (ତ୍ୱା) ତୋତେ (ବିଶଃ) ପ୍ରବେଶଯୋଗ୍ୟ ଦେହକୁ (ଆଜଭାର) ପ୍ରାପ୍ତ କରାନ୍ତି ।





॥ ମଣ୍ଡଳ ୭, ସୂକ୍ତ ୩୩, ମନ୍ତ୍ର ୧୦ ॥

—ଦିବସରେ ସୂର୍ଯ୍ୟଙ୍କର ଜ୍ୟୋତି ଦ୍ୱାରା ମନୁଷ୍ୟ ମାର୍ଗଦର୍ଶନ କରେ ଓ ରାତିରେ ଚନ୍ଦ୍ରଙ୍କ ଜ୍ୟୋତିରୁ ଆଲୋକ ପାଏ । ଅନ୍ଧକାର ରାତିରେ ସାଥୀ ବାଣୀ ବା ଶବ୍ଦ ଉଚ୍ଚାରଣ କରି ପଥ ପାଇ ହୁଏ । ଯେଉଁଠାରେ ସୂର୍ଯ୍ୟ, ଚନ୍ଦ୍ର ବା ବାଣୀ କିଛି ନ ଥାଏ, ସେଠାରେ ଆତ୍ମାର ଜ୍ୟୋତିଦ୍ୱାରା ଜ୍ଞାନାଲୋକ ମିଳେ । ଏଣୁ ବେଦମନ୍ତ୍ରରେ ଆତ୍ମାକୁ ଜ୍ୟୋତିର୍ମୟ କୁହାଯାଇଛି ।

ସନ୍ତାନଲାଭପାଇଁ ପିତାମାତା ଅଦୃଷ୍ଟ ଜ୍ୟୋତିର୍ମୟ ଆତ୍ମାକୁ ଆମନ୍ତ୍ରଣ କରନ୍ତି । ଆତ୍ମା ମାତୃଗର୍ଭକୁ ଆଲୋକିତ କରି ଆଗମନ କରେ; ସେଠାରେ ସେ ଦେହଧାରଣ କରେ ଓ ଶେଷରେ ଭୂମିଷ୍ଠ ହୁଏ । ଏହା ଆତ୍ମାର ଜନ୍ମଲାଭ । ପଶୁପକ୍ଷୀଙ୍କ ଜୀବନରେ ଏପରି ଜନ୍ମ ଥରେ ମାତ୍ର ଘଟେ । ପରନ୍ତୁ ମାନବକୁ ମାନବତା ଲାଭ କରିବାପାଇଁ ଆଉ ଏକ ଜନ୍ମ ଗ୍ରହଣ କରିବାକୁ ହୁଏ । ଏଥିପାଇଁ ବାଳକ-ବାଳିକାମାନଙ୍କୁ ପିତାମାତାଙ୍କ କୁଳରୁ ନେଇ ଗୁରୁଙ୍କ କୁଳରେ ଅବସ୍ଥାପିତ କରାଯାଏ । ଗୁରୁ ଏକାଧାରରେ ପିତା, ମାତା ଓ ଆଚାର୍ଯ୍ୟ ହୁଅନ୍ତି । ସେ ବିଦ୍ୟାର୍ଥୀକୁ ନିଜ ଗର୍ଭରେ ରଖନ୍ତି ଅର୍ଥାତ୍ ନିଜର ପୂର୍ଣ୍ଣ ସଂରକ୍ଷଣରେ ରଖି ବିଦ୍ୟାଦାନ କରନ୍ତି । ଗୁରୁଙ୍କ ବିଚାର, ଆଚାର ଓ ବ୍ୟବହାର ଦ୍ୱାରା ବିଦ୍ୟାର୍ଥୀ ସୁପ୍ରତିଷ୍ଠିତ ହୁଅନ୍ତି । ଶିକ୍ଷା ସମାପ୍ତି ପରେ ବିଦ୍ୟାର୍ଥୀ ଗୃହକୁ ଫେରନ୍ତି । ଗୁରୁକୁଳରୁ ଏହି ସମାବର୍ତ୍ତନ ମନୁଷ୍ୟର ଦ୍ୱିତୀୟ ଜନ୍ମ ।

॥ ମଣ୍ଡଳ ୪, ସୂକ୍ତ ୫୮, ମନ୍ତ୍ର ୩ ॥

ଅଦ୍ଭୁତ ବୃଷଭ

ଚତ୍ୱାରି ଶୃଙ୍ଗା ତ୍ରୟୋ ଅସ୍ୟ ପାଦା

ଦ୍ୱେ ଶୀର୍ଷେ ସପ୍ତ ହସ୍ତାସୋ ଅସ୍ୟ ।

ତ୍ରିଧା ବଦ୍ଧୋ ବୃଷଭୋ ରୋରବୀତି

ମହୋ ଦେବୋ ମର୍ତ୍ୟାଁ ଆ ବିବେଶ ॥

(ବାମଦେବୋ ଗୌତମଃ । ଅଗ୍ନିଃ । ତ୍ରିଷ୍ଟୁପ୍)

ପଦପାଠ : ଚତ୍ୱାରି । ଶୃଂଗା । ତ୍ରୟଃ । ଅସ୍ୟ । ପାଦାଃ । ଦ୍ୱେ ଇତି । ଶୀର୍ଷେ ଇତି । ସପ୍ତ । ହସ୍ତାସଃ । ଅସ୍ୟ । ତ୍ରିଧା । ବଦ୍ଧଃ । ବୃଷଭଃ । ରୋରବୀତି । ମହଃ । ଦେବଃ । ମର୍ତ୍ତ୍ୟାନ୍ । ଆ ବିବେଶ ॥

ପଦାର୍ଥ : (ଅସ୍ୟ) ଏହାର (ଚତ୍ୱାରି ଶୃଙ୍ଗା) ଚାରୋଟି ଶିଙ୍ଗ, (ତ୍ରୟଃ ପାଦାଃ) ତିନୋଟି ପାଦ, (ଦ୍ୱେ ଶୀର୍ଷେ) ଦୁଇଟି ମୁଣ୍ଡ (ସପ୍ତ ହସ୍ତାସଃ) ସାତୋଟି ହାତ । ସେ (ତ୍ରିଧା ବଦ୍ଧଃ) ତିନପ୍ରକାରେ ବନ୍ଧା ହୋଇଛି । (ବୃଷଭଃ ରୋରବୀତି) ବୃଷଭ ଗର୍ଜନ କରୁଅଛି । ସେ (ମହଃ ଦେବଃ) ମହାନ୍ ଦେବ (ମର୍ତ୍ତ୍ୟାନ୍ ଆ ବିବେଶ) ମନୁଷ୍ୟଙ୍କ ମଧ୍ୟରେ ପ୍ରବିଷ୍ଟ ହୋଇଛି ।





॥ ମଣ୍ଡଳ ୪, ସୂକ୍ତ ୫୮, ମନ୍ତ୍ର ୩ ॥

ପାଠକ ! ଏକ ଅଦ୍ଭୁତ ବୃଷଭକୁ ଜାଣ କି ? ବେଦ କହୁଛନ୍ତି— 'ତୁମେ ବି ଏକ ବୃଷଭ' । ଚତୁର୍ଦ୍ଦିଗରେ କର୍ମଧାରା ପ୍ରବାହିତ କରୁଥିବା ଜୀବାତ୍ମା ବୃଷଭ ଅଟେ । ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ବୃଷଭରୂପକ ଆତ୍ମାର ଚାରୋଟି ଶିଙ୍ଗସଦୃଶ । ଭୂତ, ବର୍ତ୍ତମାନ ଓ ଭବିଷ୍ୟତ୍ କାଳ ତିନପାଦ-ସଦୃଶ । ଜ୍ଞାନ ଓ ପ୍ରଯତ୍ନ ଦୁଇ ଶିରସଦୃଶ । ପଞ୍ଚ ଜ୍ଞାନେନ୍ଦ୍ରିୟ, ମନ ଓ ବୁଦ୍ଧି ଆତ୍ମାର ସାତୋଟି ହସ୍ତସଦୃଶ । ସତ୍ତ୍ୱ, ରଜଃ ଓ ତମଃ ଏହି ତିନପ୍ରକାର ବନ୍ଧନରେ ଆତ୍ମା ବନ୍ଧାହୋଇ ରହିଅଛି । ଏଣୁ ସେ ଭୟଙ୍କର ଗର୍ଜନ କରୁଅଛି ।

ମହାଦେବ ମରଣଧର୍ମୀ ଦେହମଧ୍ୟରେ ପ୍ରବେଶ କରିଛନ୍ତି । ଆତ୍ମା ମହାଦେବ ଅଟେ । ଚକ୍ଷୁ, କର୍ଣ୍ଣାଦି ଇନ୍ଦ୍ରିୟ କ୍ଷୁଦ୍ର କ୍ଷୁଦ୍ର ଦେବ ଅଟନ୍ତି । ଉକ୍ତ ଦେବମାନଙ୍କର ଅଧିଷ୍ଠାତା ଆତ୍ମା ମହାଦେବ ଅଟେ ।

ଏହି ମନ୍ତ୍ରର ବିବିଧ ବ୍ୟାଖ୍ୟା କରାଯାଇପାରେ । ବ୍ୟାକରଣ ଦୃଷ୍ଟିରୁ ନାମ, ଆଖ୍ୟାତ, ଉପସର୍ଗ ଓ ନିପାତ ଚାରୋଟି ଶୃଙ୍ଗ । ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପୁରୁଷ ତିନପାଦ । ସାତ ବିଭକ୍ତି ସାତୋଟି ହାତ । ନିତ୍ୟ ଓ ଅନିତ୍ୟ ଶବ୍ଦ ଦୁଇ ଶିର । ସେହିପରି ଯଜ୍ଞାର୍ଥରେ ବିଚାର କଲେ ଚାରିବେଦ ଚାରିଶୃଙ୍ଗ, ତିନି ସବନ ତିନି ପାଦ, ସାତ ଛନ୍ଦ ସାତ ହାତ, ପ୍ରାୟଣୀୟ ଓ ଉଦୟନୀୟ ଇଷ୍ଟି ଦୁଇ ଶିର ଇତ୍ୟାଦି ।

॥ ମଣ୍ଡଳ ୧, ସୂକ୍ତ ୯୦, ମନ୍ତ୍ର ୬ ॥

ମଧୁମୟ ବାତାବରଣ

ମଧୁ ବାତା ଋତାୟତେ

ମଧୁ କ୍ଷରନ୍ତି ସିନ୍ଧବଃ

ମାଧ୍ଵୀର୍ନଃ ସନ୍ତ୍ୱୋଷଧୀଃ ॥

( ଗୌତମୋ ରାହୂଗଣଃ । ବିଶ୍ୱେଦେବାଃ । ଗାୟତ୍ରୀ )

ପଦପାଠ : ମଧୁ । ବାତାଃ । ଋତଽୟତେ । ମଧୁ । କ୍ଷରନ୍ତି । ସିନ୍ଧବଃ । ମାଧ୍ଵୀଃ । ନଃ । ସନ୍ତୁ । ଓଷଧୀଃ ॥

ପଦାର୍ଥ : (ଋତାୟତେ) ସତ୍ୟାଚାରୀ ପୁରୁଷଙ୍କପାଇଁ (ବାତାଃ) ବାୟୁ (ମଧୁ) ମଧୁମୟ ହୁଅନ୍ତୁ; (ସିନ୍ଧବଃ) ନଦୀମାନେ (ମଧୁ କ୍ଷରନ୍ତି) ମଧୁର ଜଳ ବହନ କରନ୍ତୁ, (ଓଷଧୀଃ) ବନସ୍ପତିମାନେ (ନଃ) ଆମ୍ଭମାନଙ୍କର (ମାଧ୍ଵୀଃ) ସୁଖକାରକ ହୁଅନ୍ତୁ ।





॥ ମଣ୍ଡଳ ୧, ସୂକ୍ତ ୯୦, ମନ୍ତ୍ର ୬ ॥

—ଯେ କୌଣସି ପଦାର୍ଥ ରୁଚି ସହକାରେ ଭୋଜନ କଲେ, ତହିଁରୁ ସ୍ୱାଦୁ ମିଳେ । ଉକ୍ତ ବସ୍ତୁକୁ ମଧୁର ଭାବ ନେଇ ଖାଇଲେ, ତାହା ମଧ୍ୟ ସ୍ୱାଦିଷ୍ଟ ବୋଧ ହୁଏ । ମନରେ ଅଶ୍ରଦ୍ଧା ପୋଷଣ କଲେ, କଲ୍ୟାଣକାରକ ବସ୍ତୁରୁ ମଧ୍ୟ ଉପକାର ମିଳେ ନାହିଁ; ତାହା ଅପକାରୀ ପାଲଟିଯାଏ । ଘୃଣା-ଭାବନାରେ ମହୌଷଧ ସେବନ କଲେ, ସେଥିରୁ କୌଣସି ସୁଫଳ ମିଳେ ନାହିଁ ।

ବାୟୁ, ଜଳ, ଔଷଧ ପ୍ରଭୃତି ଜଡ଼ ପଦାର୍ଥ ଅଟନ୍ତି । ସେଗୁଡ଼ିକର ଗୁଣ ବା ଧର୍ମ ତିନିକାଳରେ ସମାନ । ସେଗୁଡ଼ିକ ସବୁଠାରେ ସମସ୍ତଙ୍କୁ ସମାନ ଗୁଣ ବିତରଣ କରନ୍ତି । ପରନ୍ତୁ ବ୍ୟବହାର ଅନୁସାରେ ଲୋକେ ସେଥିରୁ ଦୁଃଖସୁଖ ରୂପକ ଭିନ୍ନ ଫଳ ପାଆନ୍ତି । ନିୟମ ଓ ପରିମାପରେ ଯେ କୌଣସି ପଦାର୍ଥକୁ ଉପଯୋଗ କଲେ, ତାହା ମଧୁର ବା ସୁଖକର ହୁଏ । ନିୟମ ଓ ଶୃଙ୍ଖଳାର ଅଭାବରୁ ଦୁଃଖ ମିଳେ ।

ବିବାହସଂସ୍କାରର ପ୍ରାରମ୍ଭରେ 'ମଧୁପର୍କ' ମୁଖ୍ୟ ବିଧାନ ଅଟେ । ସେତେବେଳେ ବରବଧୂ ଏହି ମନ୍ତ୍ର ପାଠ କରି ମଧୁମୟ ଜୀବନପାଇଁ ସଂକଳ୍ପ ଗ୍ରହଣ କରନ୍ତି ଏବଂ ମଧୁର ଶବ୍ଦର ଦ୍ୱାରା ସର୍ବତ୍ର ମଙ୍ଗଳ ବର୍ଣ୍ଣନ କରନ୍ତି ।

॥ ମଣ୍ଡଳ ୧, ସୂକ୍ତ ୪୧, ମନ୍ତ୍ର ୪ ॥

ସତ୍ୟର ପଥ ସରଳ

ସୁଗଃ ପନ୍ଥା ଅନୃକ୍ଷର

ଆଦିତ୍ୟାସ ଋତଂ ଯତେ ।

ନାତ୍ରାବଖାଦୋ ଅସ୍ତି ବଃ ॥

( କଣ୍ୱୋ ଘୌରଃ । ଆଦିତ୍ୟାଃ । ଗାୟତ୍ରୀ )

ପଦପାଠ : ସୁଽଗଃ । ପନ୍ଥାଃ । ଅନୃକ୍ଷରଃ । ଆଦିତ୍ୟାସଃ । ଋତମ୍ । ଯତେ । ନ । ଅତ୍ର । ଅବଽଖାଦଃ । ଅସ୍ତି । ବଃ ॥

ପଦାର୍ଥ : ( ଆଦିତ୍ୟାସଃ ) ହେ ସୂର୍ଯ୍ୟସମାନ ସନ୍ମାର୍ଗର ପଥିକଗଣ ! ଏହି ସଂସାରରେ ( ଋତଂ ଯତେ ) ସୃଷ୍ଟି ନିୟମର ଅନୁକୂଳ ଯାତ୍ରା କରୁଥିବା ଲୋକଙ୍କପାଇଁ (ପନ୍ଥାଃ) ମାର୍ଗ (ସୁଗଃ) ସୁଗମ (ଅନୃକ୍ଷରଃ) କଣ୍ଟକ ରହିତ । (ଅତ୍ର) ଏହି ମାର୍ଗରେ (ବଃ) ତୁମ୍ଭମାନଙ୍କର (ଅବଖାଦଃ) ହାନି ବା ବିନାଶ (ନ ଅସ୍ତି) ନାହିଁ ।





॥ ମଣ୍ଡଳ ୧, ସୂକ୍ତ ୪୧, ମନ୍ତ୍ର ୪ ॥

—ବୈଦିକ ସାହିତ୍ୟରେ 'ଋତ' ଶବ୍ଦ ମହତ୍ତ୍ୱପୂର୍ଣ୍ଣ । ସୃଷ୍ଟିର ନିୟମକୁ ଋତ କୁହାଯାଏ । ଯେଉଁମାନେ ସୃଷ୍ଟିର ନିୟମରେ ସହଯୋଗ କରନ୍ତି, ସେମାନଙ୍କପାଇଁ ବେଦରେ ଋତଜ୍ଞ, ଋତପା, ଋତଜାତ ଶବ୍ଦ ପ୍ରୟୋଗ କରାଯାଇଛି । ସୃଷ୍ଟିର ଯେ କୌଣସି ନିୟମରେ ଅସହଯୋଗ କଲେ, ସୃଷ୍ଟି ନିୟମଭଙ୍ଗକାରୀ ପ୍ରତି ଦଣ୍ଡ ବିଧାନ କରେ । ମୁହଁ ବାଟେ ନ ଖାଇ ନାକବାଟେ ଖାଇବା ଆରମ୍ଭ କରିବା ସଙ୍ଗେ ସଙ୍ଗେ କଷ୍ଟବୋଧ ହୁଏ । ରାତିରେ ନ ଶୋଇ ଦିନରେ ଶୋଇବା ଅଭ୍ୟାସ କଲେ ରୋଗ ଜାତ ହୁଏ । ଆଜିକାଲି ଭୌତିକ ପଦାର୍ଥରେ ଥିବା ନିୟମଗୁଡ଼ିକୁ ଆମ୍ଭେମାନେ ଜଡ଼ ବିଜ୍ଞାନ ଦ୍ୱାରା ଅନ୍ୱେଷଣ କରୁଅଛୁଁ । ପରନ୍ତୁ ହାୟ ! ନିଜ ଜୀବନରେ ସେଗୁଡ଼ିକୁ ଉପଯୋଗ କରୁନାହୁଁ ।

ବେଦ ଋତମାର୍ଗର ମହିମା ଗାନ କରି କହୁଛନ୍ତି ଯେ, ଏହା କଣ୍ଟକରହିତ; ଏଥିରେ ଖାଲ, ଢିପ କିଛି ନାହିଁ । ଏହା ସରଳ ମାର୍ଗ । ମୁହଁବାଟେ ଖାଇଲେ ଖାଦ୍ୟ ସରଳ ଭାବରେ ପାକସ୍ଥଳୀରେ ପହଞ୍ଚେ । ଖାଦ୍ୟର ଏହା ଋତ ମାର୍ଗ । ଦେହର ଅନ୍ୟ ଛିଦ୍ର ଖାଦ୍ୟପାଇଁ ବକ୍ର, କୁଟିଳ ଓ ଦୁଃଖମୟ ପନ୍ଥା ଅଟେ ।

ସ୍ୱାଭାବିକ ଜୀବନ ହିଁ ସୁଖମୟ । ସ୍ୱଭାବର ପ୍ରତିକୂଳ ଆଚରଣ ଦ୍ୱାରା ଶକ୍ତି କ୍ଷୀଣ ହୁଏ । ସେଥିରୁ ଦୁଃଖ ମିଳେ । ଋତଜ୍ଞଙ୍କପାଇଁ ସଂସାରପଥ ସୁଗମ ଏବଂ ଅନୃତମାର୍ଗୀଙ୍କପାଇଁ ଦୁର୍ଗମ ଅଟେ ।

॥ ମଣ୍ଡଳ ୧୦, ସୂକ୍ତ ୫୩, ମନ୍ତ୍ର ୬ ॥

ମନୁଷ୍ୟ ହୁଅ

ତନ୍ତୁଂ ତନ୍ୱନ୍ ରଜସୋ ଭାନୁମନ୍ୱିହି

ଜ୍ୟୋତିଷ୍ମତଃ ପଥୋ ରକ୍ଷ ଧିୟା କୃତାନ୍ ।

ଅନୁଲ୍ୱଣଂ ବୟତ ଜୋଗୁବାମପୋ

ମନୁର୍ଭବ ଜନୟା ଦୈବ୍ୟଂ ଜନମ୍ ॥

( ଦେବାଃ । ଅଗ୍ନିଃ । ଜଗତୀ )

ପଦପାଠ : ତନ୍ତୁମ୍ । ତନ୍ୱନ୍ । ରଜସଃ । ଭାନୁମ୍ । ଅନୁ । ଇହି । ଜ୍ୟୋତିଷ୍ମତଃ । ପଥଃ । ରକ୍ଷ । ଧିୟା । କୃତାନ୍ । ଅନୁଲ୍ୱଣମ୍ । ବୟତ । ଜୋଗୁବାମ୍ । ଅପଃ । ମନୁଃ । ଭବ । ଜନୟ । ଦୈବ୍ୟମ୍ । ଜନମ୍ ॥

ପଦାର୍ଥ : (ତନ୍ତୁଂ ତନ୍ୱନ୍) ଜୀବନରୂପକ ତନ୍ତୁକୁ ବୟନ କରି (ରଜସଃ ଭାନୁମ୍) ଆକାଶର ପ୍ରକାଶକୁ (ଅନୁ ଇହି) ଅନୁସରଣ କର । (ଧିୟା କୃତାନ୍) ବୁଦ୍ଧି ଦ୍ୱାରା ନିର୍ମିତ (ଜ୍ୟୋତିଷ୍ମତଃ ପଥଃ) ପ୍ରକାଶଯୁକ୍ତ ପଥକୁ (ରକ୍ଷ) ରକ୍ଷା କର । (ଜୋଗୁବାମ୍) ସ୍ତୋତ୍ରର ଜ୍ଞାନ ଓ କର୍ମାନୁଷ୍ଠାନ କରୁଥିବା ବ୍ୟକ୍ତିଙ୍କ (ଅନୁଲ୍ୱଣଂ) ସନ୍ଦେହରହିତ (ଅପଃ) କର୍ମକୁ (ବୟତ) ବିସ୍ତାର କର । (ମନୁର୍ଭବ) ମନୁଷ୍ୟ ହୁଅ । (ଦୈବ୍ୟଂ ଜନମ୍) ଦେବଙ୍କ ହିତକାରୀ ପ୍ରଜା (ଜନୟ) ଉତ୍ପନ୍ନ କର ।





॥ ମଣ୍ଡଳ ୧୦, ସୂକ୍ତ ୫୩, ମନ୍ତ୍ର ୬ ॥

—ଜୀବନ ତନ୍ତୁମୟ ଅଟେ; ମନୁଷ୍ୟ ତନ୍ତୁବାୟ ଅଟେ । ସେ କର୍ମରୂପକ ସୂତ୍ରରେ ଓତପ୍ରୋତ ହୋଇ ଜୀବନରୂପକ ବସ୍ତ୍ର ବୟନ କରେ । ବସ୍ତ୍ରକୁ ନିରୀକ୍ଷଣ କଲେ ସୂତାଗୁଡ଼ିକ ଦେଖାଯାଏ । ସେହିପରି ମନୁଷ୍ୟର ପ୍ରତ୍ୟେକ କର୍ମରେ ତାହାର ସଙ୍କଳ୍ପ ଦୃଷ୍ଟିଗୋଚର ହୁଏ । ହେ ମନୁଷ୍ୟ ! ତୁମର ସଙ୍କଳ୍ପକୁ ଶୁଭ ଓ ମଙ୍ଗଳମୟ କରିବାପାଇଁ ସୂର୍ଯ୍ୟଙ୍କ ଅନୁକରଣ କର । ସୂର୍ଯ୍ୟଦେବ କିରଣର ତନ୍ତୁବାୟ ହୋଇ ଆକାଶମାର୍ଗରେ ବିଚରଣ କରି ପୃଥିବୀର ଜୀବଙ୍କପାଇଁ ମଙ୍ଗଳ ଯୋଜନା କରନ୍ତି । ସେ ଅନ୍ଧକାର ନାଶ କରି ପୃଥିବୀରେ ନବଜୀବନ ସଞ୍ଚାର କରନ୍ତି । ସେହିପରି ତୁମ୍ଭେମାନେ ମଧ୍ୟ ନିଷ୍କାମ ସେବାରେ ବ୍ରତୀ ହୁଅ ।

ମନ୍ତ୍ର କହୁଛନ୍ତି, 'ମନୁର୍ଭବ'—ମନୁଷ୍ୟ ହୁଅ । ଏହିତକ ଉପଦେଶ ମନୁଷ୍ୟକୁ ବେଦମାତାଙ୍କ ଅମୃତବାଣୀ । ମନୁଷ୍ୟର ଆକୃତି ଥାଇ ମଧ୍ୟ ସମସ୍ତେ ମନୁଷ୍ୟ ନୁହନ୍ତି । ଅଧିକାଂଶ ସମ୍ପ୍ରଦାୟବାଦୀ ଓ ଦଳବାଦୀ । ଏମାନେ ନିଜ ସମ୍ପ୍ରଦାୟ ବା ଦଳର ଲୋକଙ୍କ ମଙ୍ଗଳସାଧନ କରନ୍ତି । ଅନ୍ୟମାନଙ୍କ ପ୍ରତି ଶତ୍ରୁତୁଲ୍ୟ ଆଚରଣ କରନ୍ତି । ମନୁଷ୍ୟ ନିଜକୁ ମନୁଷ୍ୟ ବୋଲି ଭାବିଲେ ଭୂ-ଲୋକର ସମସ୍ତ ମାନବଙ୍କୁ ସ୍ନେହଚକ୍ଷୁରେ ଦେଖେ ।

ମନ୍ତ୍ରର ଶେଷଭାଗରେ କୁହାଯାଇଛି 'ଜନୟା ଦୈବ୍ୟଂ ଜନମ୍' ଅର୍ଥାତ୍ ଦିବ୍ୟ ଗୁଣଧାରୀ ଉତ୍ପନ୍ନ କର । ସୁଯୋଗ୍ୟ ମନୁଷ୍ୟ ଦେବସନ୍ତାନ ଜନ୍ମ କରାଏ । ତେଣୁ ପ୍ରଥମେ ଉତ୍ତମ ମନୁଷ୍ୟ ହୁଅ; ପରେ ଦେବତାଙ୍କୁ ଉତ୍ପନ୍ନ କର ।

॥ ମଣ୍ଡଳ ୧, ସୂକ୍ତ ୩୭, ମନ୍ତ୍ର ୧୩ ॥

ପ୍ରାଣର ସଙ୍ଗୀତ ଶୁଣ କି ?

ଯଦ୍ଧ ଯାନ୍ତି ମରୁତଃ

ସଂ ହ ବ୍ରୁବତେଽଧ୍ୱନ୍ନା ।

ଶୃଣୋତି କଶ୍ଚିଦେଷାମ୍ ॥

(କଣ୍ୱୋ ଘୌରଃ । ମରୁତଃ । ଗାୟତ୍ରୀ)

**ପଦପାଠ :** ଯତ୍ । ହ । ଯାନ୍ତି । ମରୁତଃ । ସମ୍ । ହ । ବ୍ରୁବତେ । ଅଧ୍ୱନ୍ । ଆ । ଶୃଣୋତି । କଃ । ଚିତ୍ । ଏଷାମ୍ ॥

**ପଦାର୍ଥ :** (ଯତ ହ) ଯେବେ (ମରୁତଃ) ପ୍ରାଣବାୟୁ (ଯାନ୍ତି) ଗୁଞ୍ଜନ କରନ୍ତି (ହିଁ) ନିଶ୍ଚୟ (ଅଧ୍ୱନ୍) ମାର୍ଗକୁ (ଆ) ସବୁଦିଗରୁ (ସଂ ବ୍ରୁବତେ) ଉତ୍ତମ ପ୍ରେରଣା ଦିଅନ୍ତି ! (କଶ୍ଚିତ୍) କିଏ ଜଣେ (ଏଷାମ୍) ଏହି ପ୍ରାଣଗୁଡ଼ିକର ସଙ୍ଗୀତକୁ (ଶୃଣୋତି) ଶୁଣେ କି ?







—ମାନବଦେହ ଅତ୍ୟନ୍ତ ଜଟିଳ । ଏଥିରେ ଥିବା ଗୋଟିଏ ଗୋଟିଏ ତତ୍ତ୍ୱକୁ ଅନୁଶୀଳନ କଲେ ବିସ୍ମିତ ହେବାକୁ ପଡ଼େ । ବ୍ରହ୍ମାଣ୍ଡର ସମସ୍ତ ରହସ୍ୟ ଏହିଠାରେ ସନ୍ନିବିଷ୍ଟ ହୋଇଛି । ବେଦମନ୍ତ୍ରରେ ପ୍ରାଣରହସ୍ୟର ସଙ୍କେତ ଦିଆଯାଇଅଛି । ସ୍ୱପ୍ନ, ଜାଗ୍ରତ ଓ ସୁଷୁପ୍ତି ସବୁ ଅବସ୍ଥାରେ ପ୍ରାଣବାୟୁ ଦେହମଧ୍ୟରେ ଗତି କରେ । ଚକ୍ଷୁ ଦୃଶ୍ୟ ଦେଖି ଦେଖି ମୁଦ୍ରିତ ହୋଇଯାଏ, ଜିହ୍ୱା ସ୍ୱାଦୁ ଚାଖି ଚାଖି ଥକିଯାଏ । ସମସ୍ତ ଇନ୍ଦ୍ରିୟ ବିଷୟଭୋଗ କରୁ କରୁ କ୍ଳାନ୍ତ ହୋଇ ପଡ଼ନ୍ତି । ପରନ୍ତୁ ପ୍ରାଣବାୟୁର ଚଳପ୍ରଚଳରେ କେବେହେଲେ ବିଶ୍ରାମ ନାହିଁ । ଏହାର କାରଣ ହେଉଛି ଯେ ପ୍ରାଣ ଦେହରେ ଭୋଗୀ ନୁହେଁ —ସେବକ ଅଟେ । ଅତିଭୋଗରେ ବିରକ୍ତି ଆସେ, ପରନ୍ତୁ ଅତି-ତ୍ୟାଗରେ ଆନନ୍ଦ ମିଳେ । ପ୍ରାଣବାୟୁ କର୍ମଯୋଗୀ ପରି ପ୍ରତି ମୁହୂର୍ତ୍ତରେ ଦେହର ସେବାରେ ଲାଗି ଥାଏ । ଅବିରତ ପ୍ରବାହିତ ହୋଇ ଦେହର ଦୁର୍ଗନ୍ଧ ଓ ଆବିଳତା ଦୂର କରେ ।

ହେ ମନୁଷ୍ୟ ! ପ୍ରାଣର କର୍ମଗୁଞ୍ଜନକୁ ଶୁଣିବାକୁ କେବେ ଚେଷ୍ଟା କରିଛ କି ? ସେହି ଜାଗ୍ରତ-ପ୍ରହରୀର ଡାକ ତୁମ କର୍ଣ୍ଣଗହ୍ୱରରେ ପ୍ରବେଶ କରିଛି କି ? ଦେହରେ ଥିବା ପ୍ରାଣବାୟୁର ସେବା, ସ୍ଫୂର୍ତ୍ତି ଓ ପବିତ୍ରତାକୁ ଲକ୍ଷ୍ୟକରି ମାନବସମାଜର ସେବାକର !

॥ ମଣ୍ଡଳ ୫, ସୂକ୍ତ ୫୧, ମନ୍ତ୍ର ୧୫ ॥

ସୂର୍ଯ୍ୟଚନ୍ଦ୍ରଙ୍କ ମାର୍ଗ ଅନୁସରଣ କର

ସ୍ୱସ୍ତି ପନ୍ଥାମନୁ ଚରେମ
ସୂର୍ଯ୍ୟାଚନ୍ଦ୍ରମସାବିବ ।
ପୁନର୍ଦଦତାଘ୍ନତା
ଜାନତା ସଂ ଗମେମହି ॥

(ସ୍ୱସ୍ତ୍ୟାତ୍ରେୟଃ । ବିଶ୍ୱେଦେବାଃ । ଅନୁଷ୍ଟୁପ୍)

ପଦପାଠ : ସ୍ୱସ୍ତି । ପନ୍ଥାମ୍ । ଅନୁ । ଚରେମ । ସୂର୍ଯ୍ୟାଚନ୍ଦ୍ରମସୌଽଇବ । ପୁନଃ । ଦଦତା । ଅଘ୍ନତା । ଜାନତା । ସମ୍ । ଗମେମହି ॥

ପଦାର୍ଥ : ଆମ୍ଭେମାନେ (ସୂର୍ଯ୍ୟାଚନ୍ଦ୍ରମସୌ ଇବ) ସୂର୍ଯ୍ୟଚନ୍ଦ୍ର ପରି (ସ୍ୱସ୍ତି) କଲ୍ୟାଣକାରୀ (ପନ୍ଥାମ୍) ମାର୍ଗକୁ (ଅନୁଚରେମ) ଅନୁସରଣ କରୁଁ । (ପୁନଃ) ବାରମ୍ବାର (ଦଦତା) ଦାନଶୀଳ, (ଅଘ୍ନତା) ଅହିଂସକ, (ଜାନତା) ପରସ୍ପର ଦୃଷ୍ଟିକୋଣ ବୁଝୁଥିବା ବ୍ୟକ୍ତିଙ୍କ ସହିତ (ସଂଗମେମହି) ସଙ୍ଗତ କରୁଁ ।





॥ ମଣ୍ଡଳ ୫, ସୂକ୍ତ ୫୧, ମନ୍ତ୍ର ୧୫ ॥

—ଏକ ଲଘୁ ଦୃଷ୍ଟାନ୍ତ ଦ୍ୱାରା ଏଠାରେ ମହତ୍ତ୍ୱପୂର୍ଣ୍ଣ ଉପଦେଶ ଦିଆଯାଇଛି । ଆମେ ସମସ୍ତେ ଆକାଶମାର୍ଗରେ ସୂର୍ଯ୍ୟଚନ୍ଦ୍ରଙ୍କ ଗତିବିଧି ଦେଖୁଁ । ସମସ୍ତେ ଦିନ ଓ ରାତି ସହିତ ଉତ୍ତମ ଭାବରେ ପରିଚିତ । ପରନ୍ତୁ ଆମ ଭିତରେ କେତେଜଣ ବା ଏପରି ଅଛନ୍ତି ଯେଉଁମାନେ ସେସବୁ ଗତିବିଧିକୁ ଲକ୍ଷ୍ୟ କରି ଶିକ୍ଷାଲାଭ କରନ୍ତି ? ମହାକାଶର ଜ୍ୟୋତିଷ୍କଗଣ ପରସ୍ପର ବାଧା ନ ଦେଇ ନିଜ ନିଜ ମାର୍ଗରେ ଅଗ୍ରସର ହୁଅନ୍ତି । ଏମାନେ ସର୍ବୋତ୍ତମ ମାର୍ଗକୁ ବାଛିନେଇ ସେଥିରେ ଗତି କରନ୍ତି । ସୁଗମ ମାର୍ଗରେ ଲକ୍ଷ୍ୟସ୍ଥଳରେ ପହଁଚନ୍ତି । ଏସବୁ 'ସ୍ୱସ୍ତି' ( ସୁ+ଅସ୍ତି ) ପନ୍ଥାର ଲକ୍ଷଣ ।

ବେଦ ସୂର୍ଯ୍ୟଚନ୍ଦ୍ରାଦିଙ୍କୁ ଲକ୍ଷ୍ୟକରି ମନୁଷ୍ୟଙ୍କପାଇଁ ତିନୋଟି ମୂଲ୍ୟବାନ ଉପଦେଶ ଦେଇଛନ୍ତି । (କ) 'ଦଦତା'—ସେମାନେ ଆଲୋକ ଦାନ କରନ୍ତି । ଦାନ କରିବା ପ୍ରେମର ଲକ୍ଷଣ । ସହଯୋଗିତା ଓ ଦାନ ଦ୍ୱାରା ମନୁଷ୍ୟର ସଂଗଠନ ବଳଶାଳୀ ହୁଏ । (ଖ) 'ଅଘ୍ନତା'—ପ୍ରେମର ପରିଣାମ ଅହିଂସା । ତେଣୁ ସେମାନେ ପରସ୍ପର କେହି କାହାକୁ ଲକ୍ଷ୍ୟ-ସାଧନରେ ବାଧା ଦିଅନ୍ତି ନାହିଁ । ସେହିପରି ଅହିଂସାଚରଣ ଦ୍ୱାରା ହିଁ ବିଶ୍ୱବନ୍ଧୁତ୍ୱ ସ୍ଥାପିତ ହୋଇପାରିବ । (ଗ) 'ଜାନତା'—ସେମାନେ ପରସ୍ପରକୁ ବୁଝିବାକୁ ଯତ୍ନ କରନ୍ତି । ପରସ୍ପର ବୁଝାମଣା ଅଭାବରୁ ବହୁ ସମୟରେ ମନୁଷ୍ୟ-ସମାଜରେ ଅଶାନ୍ତି ସୃଷ୍ଟି ହୁଏ ।

॥ ମଣ୍ଡଳ ୫, ସୂକ୍ତ ୩୫, ମନ୍ତ୍ର ୪ ॥

ମନୁଷ୍ୟ ! କୃତକାର୍ଯ୍ୟ ହୁଅ

ବୃଷା ହ୍ୟସି ରାଧସେ
ଜଜ୍ଞିଷେ ବୃଷ୍ଣି ତେ ଶବଃ ।
ସ୍ୱକ୍ଷତ୍ରଂ ତେ ଧୃଷନ୍ମନଃ
ସତ୍ରାହମିନ୍ଦ୍ର ପୌଂସ୍ୟମ୍ ॥

( ପ୍ରଭୁବସୁରାଙ୍ଗିରସଃ । ଇନ୍ଦ୍ରଃ । ଅନୁଷ୍ଟୁପ୍ )

ପଦପାଠ : ବୃଷା । ହି । ଅସି । ରାଧସେ । ଜଜ୍ଞିଷେ । ବୃଷ୍ଣି । ତେ । ଶବଃ । ସ୍ୱଃକ୍ଷତ୍ରମ୍ । ତେ । ଧୃଷତ୍ । ମନଃ । ସତ୍ରାଃହମ୍ । ଇନ୍ଦ୍ର । ପୌଂସ୍ୟମ୍ ।

ପଦାର୍ଥ : (ଇନ୍ଦ୍ର) ହେ ଐଶ୍ୱର୍ଯ୍ୟଶାଳୀ ଜୀବ ! ତୁମେ (ହି) ନିଶ୍ଚୟ (ବୃଷା ଅସି) ବର୍ଷଣଶୀଳ, ସମର୍ଥ ଅଟ । ତୁମେ (ରାଧସେ) ସିଦ୍ଧି ନିମନ୍ତେ (ଜଜ୍ଞିଷେ) ଜାତ ହୋଇଅଛ । ( ତେ ଶବଃ ) ତୁମର ବଳ (ବୃଷ୍ଣି) ସୁଖବର୍ଷକ । (ତେ ମନଃ) ତୁମର ମନ (ସ୍ୱକ୍ଷତ୍ରମ୍ ) ସ୍ୱୟଂ ବଳସଂପନ୍ନ । ତୁମର ( ପୌଂସ୍ୟମ୍ ) ପୌରୁଷ (ସତ୍ରାହମ୍ ) ସତ୍ୟାଚରଣରେ (ଧୃଷତ୍ ) ପ୍ରୌଢ଼ ଅଟେ ।





॥ ମଣ୍ଡଳ ୫, ସୂକ୍ତ ୩୫, ମନ୍ତ୍ର ୪ ॥

—ଭଗବାନ ସର୍ବଶକ୍ତିମାନ୍ । ତାହାଙ୍କ ତୁଳନାରେ ମନୁଷ୍ୟର ଶକ୍ତି ନଗଣ୍ୟ; ତଥାପି ତାହାଙ୍କୁ ଓ ତାହାଙ୍କର ସୃଷ୍ଟିକୁ ବୁଝିବାପାଇଁ ମନୁଷ୍ୟର ସଂକଳ୍ପ ଅଛି । ପକ୍ଷୀ ପ୍ରଭୁଙ୍କର ଅଦ୍ଭୁତ ରଚନା; ମନୁଷ୍ୟର ସଂକଳ୍ପ ପକ୍ଷୀର ଚମତ୍କାରକୁ ଅନୁସରଣ କରି ବ୍ୟୋମଯାନ ଗଢ଼ିଛି । ମନୁଷ୍ୟ ଜଳ, ସ୍ଥଳ, ଆକାଶ ଓ ମହାକାଶରେ ଯେଉଁସବୁ କୃତିତ୍ୱ ପ୍ରଦର୍ଶନ କରୁଅଛି, ସେଥିପାଇଁ ତାହାକୁ ଏକ କ୍ଷୁଦ୍ର ସ୍ରଷ୍ଟା କୁହାଯାଇପାରେ । ଏହି ଉଦ୍‌ବୋଧନ ଦିଅନ୍ତି— 'ରାଧସେ ଜଜ୍ଞିଷେ' ଅର୍ଥାତ୍ ହେ ମନୁଷ୍ୟ ! ସିଦ୍ଧିଲାଭପାଇଁ ତୁମେ ଜନ୍ମ ହୋଇଛ । ବେଦର ଅନ୍ୟ ଏକ ସ୍ଥଳରେ ମନୁଷ୍ୟ ନିଜର ଆତ୍ମବିଶ୍ୱାସ ପ୍ରକାଶ କରି କହେ—"ହେ ମୋର ଭଗବାନ୍ ! ମୋର ଡାହାଣ ହାତ କର୍ମର ସାଧକ ଅଟେ । ତତ୍ପରତାର କର୍ମ କରି ମୁଁ ବାମ ହସ୍ତରେ ଫଳ ସଞ୍ଚୟ କରେ ।"

ସିଦ୍ଧିଲାଭ କରିବାପାଇଁ ମନୁଷ୍ୟଠାରେ ସମସ୍ତ ଯୋଗ୍ୟତା ଅଛି । ଏପରିକି ମୋକ୍ଷସିଦ୍ଧି ମଧ୍ୟ ମନୁଷ୍ୟଦେହରେ ଘଟିଥାଏ । ମାନବପ୍ରବୃତ୍ତିର ଦୁଇଟି ମହତ୍ତ୍ୱପୂର୍ଣ୍ଣ ଗୁଣ ମନ୍ତ୍ରରେ ଉଲ୍ଲେଖ ଅଛି । ପ୍ରଥମତଃ ମନୁଷ୍ୟର ବ୍ୟକ୍ତିତ୍ୱ ସତ୍ୟର ଆଧାରରେ ପ୍ରତିଷ୍ଠିତ । ସତ୍ୟ ହିଁ ତାହାର ବଳ । ଦ୍ୱିତୀୟତଃ ମନୁଷ୍ୟ ଏହି ନୈତିକ ବଳଦ୍ୱାରା ନିଜର ସୁଖକୁ ଜଳାଞ୍ଜଳି ଦେଇ ଅନ୍ୟର ଦୁଃଖ ଲାଘବ କରେ । ମନୁଷ୍ୟେତର ଜୀବମାନଙ୍କଠାରେ ଏହି ପ୍ରବୃତ୍ତି ଦେଖାଯାଏ ନାହିଁ ।

॥ ମଣ୍ଡଳ ୭, ସୂକ୍ତ ୧୦୪, ମନ୍ତ୍ର ୨୨ ॥

ପଶୁପକ୍ଷୀଙ୍କ ଚଳଣି ତ୍ୟାଗ

ଉଲୂକୟାତୁଂ ଶୁଶୁଲୂକୟାତୁଂ

ଜହି ଶ୍ୱୟାତୁମୁତ କୋକୟାତୁମ୍ ।

ସୁପର୍ଣ୍ଣୟାତୁମୁତ ଗୃଧ୍ରୟାତୁଂ

ଦୃଷଦେବ ପ୍ର ମୃଣ ରକ୍ଷ ଇନ୍ଦ୍ର ॥

(ବସିଷ୍ଠଃ । ଇନ୍ଦ୍ରଃ । ତ୍ରିଷ୍ଟୁପ୍ )

ପଦପାଠ : ଉଲୂକଽୟାତୁମ୍ । ଶୁଶୁଲୂକଽୟାତୁମ୍ । ଜହି । ଶ୍ୱଽୟାତୁମ୍ । ଉତ । କୋକଽୟାତୁମ୍ । ସୁପର୍ଣ୍ଣଽୟାତୁମ୍ । ଉତ । ଗୃଧ୍ରଽୟାତୁମ୍ । ଦୃଷଦାଽଇବ । ପ୍ର । ମୃଣ । ରକ୍ଷଃ । ଇନ୍ଦ୍ର ॥

ପଦାର୍ଥ : (ଇନ୍ଦ୍ର) ହେ ଶତ୍ରୁନାଶକ ଜୀବାତ୍ମନ୍ ! (ଉଲୂକୟାତୁଂ) ପେଚାର ଚଳଣି, (ଶୁଶୁଲୂକୟାତୁଂ) ମେଣ୍ଢାର ଚଳଣି, (ଶ୍ୱୟାତୁଂ) କୁକୁରର ଚଳଣି (ଉତ) ଓ (କୋକୟାତୁଂ) ହଂସର ଚଳଣି, (ସୁପର୍ଣ୍ଣୟାତୁମ୍) ଗରୁଡ଼ର ଚଳଣି (ଉତ) ଓ (ଗୃଧ୍ରୟାତୁଂ) ଶାଗୁଣାର ଚଳଣି (ଜହି) ତ୍ୟାଗ କର । (ରକ୍ଷଃ) ଘାତକମାନଙ୍କୁ (ଦୃଷଦା ଇବ) ପଥରର ପ୍ରହାରସମାନ (ପ୍ର ମୃଣ) ନଷ୍ଟ କର ।





॥ ମଣ୍ଡଳ ୭, ସୂକ୍ତ ୧୦୪, ମନ୍ତ୍ର ୨୨ ॥

—ବାହ୍ୟଶତ୍ରୁ ଅପେକ୍ଷା ଅନ୍ତଃଶତ୍ରୁମାନେ ଅଧିକ ମାରାତ୍ମକ । ଏମାନେ ପ୍ରତି ମୁହୂର୍ତ୍ତରେ ମନୁଷ୍ୟକୁ ବିପନ୍ନ କରନ୍ତି । କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ମନୁଷ୍ୟ ଦେହରେ ଥିବା ଛଅଟି ଶତ୍ରୁ ଅଟନ୍ତି । ବେଦମନ୍ତ୍ରରେ ଆଲଙ୍କାରିକ ଭାବରେ ଏଗୁଡ଼ିକୁ ପଶୁପକ୍ଷୀ ସହିତ ତୁଳନା କରାଯାଇଛି ।

ଉଲୂକ ଆଲୋକ ପାଇଲେ ବ୍ୟତିବ୍ୟସ୍ତ ହୁଏ, କାରଣ ସେ ଅନ୍ଧାରକୁ ଭଲ ପାଏ । ସେହିପରି ମୋହଗ୍ରସ୍ତ ଲୋକେ ଜ୍ଞାନ ଓ ସତ୍ୟକୁ ତିରସ୍କାର କରନ୍ତି । ମୋହରୁ ଅନ୍ୟାନ୍ୟ ପାପ ଜାତ ହୁଏ । ମୋହ ହେତୁ ଅପ୍ରିୟ ବସ୍ତୁ ପ୍ରତି ଦ୍ୱେଷ ଜାତ ହୁଏ; ଏଥିରୁ କ୍ରୋଧ ଉତ୍ପନ୍ନ ହୁଏ । ମେଣ୍ଢାକୁ କ୍ରୋଧର ପ୍ରତୀକ ଭାବରେ ବର୍ଣ୍ଣନା କରାଯାଇଛି । କୁକୁରର ଈର୍ଷ୍ୟାଭାବନା ମାନବ-ଦେହରେ ଦ୍ୱେଷ ହୋଇ ରହିଛି । କାମ-ବାସନା ମନୁଷ୍ୟକୁ ଅନ୍ଧ ଓ ବଧିର କରିଦିଏ । କାମାତୁର ବ୍ୟକ୍ତି ସମାଜରେ ନିର୍ଲଜ୍ଜହାସ୍ୟ ଆଚରଣ କରେ । ହଂସପକ୍ଷୀ କାମର ପ୍ରତୀକ । ଧନସମ୍ପତ୍ତି, ପ୍ରଭୁତ୍ୱ ଅଥବା ସୌନ୍ଦର୍ଯ୍ୟର ଅଭିମାନରେ ମନୁଷ୍ୟ ଗର୍ବ କରେ । ଗରୁଡ଼ପକ୍ଷୀ ମଦ-ମତ୍ସରର ପ୍ରତୀକ । ଲୋଭକୁ ଶାଗୁଣା ସହିତ ତୁଳନା କରାଯାଇଛି । ଲୋଭୀ ମନୁଷ୍ୟ ଶାଗୁଣା ପରି ଶେଷରେ ଦୁର୍ଦ୍ଦଶାଗ୍ରସ୍ତ ହୁଏ ।

ଶତ୍ରୁକୁ ତଳେ ପକାଇ ପଥର ମଡ଼ାଇ ଦେଲେ ସେ ଉଠିପାରେ ନାହିଁ । ସେହିପରି କାମକ୍ରୋଧାଦି ଷଡ଼୍‌ରିପୁଙ୍କୁ ଯମନିୟମାଦି ଆଚରଣରୂପକ ପ୍ରସ୍ତର ପ୍ରହାର ଦ୍ୱାରା ନଷ୍ଟ କରିବାପାଇଁ କୁହାଯାଇଛି ।

॥ ମଣ୍ଡଳ ୯, ସୂକ୍ତ ୬୩, ମନ୍ତ୍ର ୫ ॥

ବିଶ୍ୱକୁ ଆର୍ଯ୍ୟ କର

ଇନ୍ଦ୍ରଂ ବର୍ଦ୍ଧନ୍ତୋ ଅପ୍ତୁରଃ

କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍ ।

ଅପଘ୍ନନ୍ତୋ ଅରାବ୍ଣଃ ॥

( ନିଧ୍ରୁବିଃ କାଶ୍ୟପଃ । ପବମାନଃ ସୋମଃ । ଗାୟତ୍ରୀ )

ପଦପାଠ : ଇନ୍ଦ୍ରମ୍ । ବର୍ଦ୍ଧନ୍ତଃ । ଅପ୍‌ଽତୁରଃ । କୃଣ୍ୱନ୍ତଃ । ବିଶ୍ୱମ୍ । ଆର୍ଯ୍ୟମ୍ । ଅପଽଘ୍ନନ୍ତଃ । ଅରାବ୍ଣଃ ॥

ପଦାର୍ଥ : (ଇନ୍ଦ୍ରମ୍ ବର୍ଦ୍ଧନ୍ତଃ) ଆତ୍ମାକୁ ଉନ୍ନତ କର (ଅପ୍ତୁରଃ) ତତ୍ପରତା ସହକାରେ (ଅରାବ୍ଣଃ) ମାନବଦ୍ରୋହୀଙ୍କୁ (ଅପଘ୍ନନ୍ତଃ) ଦଣ୍ଡ ଦେଇ (ବିଶ୍ୱଂ) ସମଗ୍ର ବିଶ୍ୱକୁ (ଆର୍ଯ୍ୟଂ କୃଣ୍ୱନ୍ତଃ) ଶ୍ରେଷ୍ଠ ଭାବରେ ଗଠନ କର ।





॥ ମଣ୍ଡଳ ୯, ସୂକ୍ତ ୬୩, ମନ୍ତ୍ର ୫ ॥

ଅଧୁନିକ ଇତିହାସ 'ଆର୍ଯ୍ୟ' ଶବ୍ଦ ସମ୍ବନ୍ଧରେ ଭ୍ରାନ୍ତ ଧାରଣା ପ୍ରଚାର କରୁଅଛି । ସେଥିରେ କୁହାଯାଉଛି ଯେ 'ଆର୍ଯ୍ୟ' ପ୍ରାଚୀନ ଜାତିବିଶେଷ, ଆର୍ଯ୍ୟମାନେ ବିଦେଶରୁ ଭାରତବର୍ଷକୁ ଆସି ଦ୍ରାବିଡ଼ଙ୍କୁ ପରାଜିତ କଲେ, ଇତ୍ୟାଦି । ପରନ୍ତୁ ବେଦରେ ଆର୍ଯ୍ୟ ଶବ୍ଦ ଗୁଣବାଚକ ଅର୍ଥରେ ସର୍ବତ୍ର ବର୍ଣ୍ଣିତ ହୋଇଛି । ବେଦ ଜିତେନ୍ଦ୍ରିୟ, କର୍ମଠ ଓ ତପସ୍ୱୀ ପୁରୁଷଙ୍କୁ ଆର୍ଯ୍ୟ ନାମ ଦେଇଛନ୍ତି । ସ୍ମୃତି, ଉପନିଷଦ ଓ ରାମାୟଣାଦି କାବ୍ୟରେ ଉକ୍ତ ଅର୍ଥରେ ଆର୍ଯ୍ୟ ଶବ୍ଦ ବ୍ୟବହୃତ ହୋଇଛି । ପ୍ରାଚୀନ ଭାରତୀୟମାନେ ଜୀବନକୁ ଆର୍ଯ୍ୟ ରୂପରେ ଗଢ଼ିବାପାଇଁ ଯୋଜନାବଦ୍ଧ ଥିଲେ । ଆର୍ଯ୍ୟଦର୍ଶନ ବା ବୈଦିକ ଦର୍ଶନ ସେମାନଙ୍କ ଜୀବନପ୍ରଣାଳୀକୁ ପ୍ରଭାବିତ କରୁଥିଲା ।

ବେଦର ଉପଦେଶ —'କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍', ବିଶ୍ୱକୁ ଆର୍ଯ୍ୟ ବା ଶ୍ରେଷ୍ଠ କର । ଯେଉଁମାନେ ବିଶ୍ୱରେ ଆର୍ଯ୍ୟତ୍ୱ ପ୍ରତିଷ୍ଠା କରିବେ, ସେମାନେ ସର୍ବପ୍ରଥମେ ଆର୍ଯ୍ୟ ହେବା ଆବଶ୍ୟକ । ଆତ୍ମବଳ ଦ୍ୱାରା ମାନବ ମହାତ୍ମା ହୁଏ । ଆତ୍ମ-ବିଶ୍ୱାସ ଆର୍ଯ୍ୟତ୍ୱର ଲକ୍ଷଣ ଅଟେ । ଆତ୍ମାକୁ ସଙ୍କଳ୍ପବାନ୍ କରି ମନୁଷ୍ୟ ଉଦାରଚରିତ, ସହନଶୀଳ ଓ ଶାନ୍ତଚିତ୍ତ ହୁଏ । ବିଶ୍ୱରେ ଆର୍ଯ୍ୟ-ମର୍ଯ୍ୟାଦା ସ୍ଥାପନ କରିବାକୁ ହେଲେ ମନୁଷ୍ୟ ସ୍ୱୟଂ ଆଦର୍ଶସ୍ଥାନୀୟ ହୋଇ ଦୁର୍ବୃତ୍ତ ପୁରୁଷମାନଙ୍କୁ ସଂସ୍କାର କରିବା ଉଚିତ ।

॥ ମଣ୍ଡଳ ୧୦, ସୂକ୍ତ ୧୯୧, ମନ୍ତ୍ର ୧ ॥

ଋଗ୍‌ବେଦର ଅନ୍ତିମ ପ୍ରାର୍ଥନା

ସଂସମିଦ୍ୟୁବସେ ବୃଷ-

ନ୍ନଗ୍ନେ ବିଶ୍ୱାନ୍ୟର୍ଯ ଆ ।

ଇଳସ୍ପଦେ ସମିଧ୍ୟସେ

ସ ନୋ ବସୂନ୍ୟା ଭର ॥

(ସଂବନନ ଆଙ୍ଗିରସଃ । ଅଗ୍ନିଃ । ଅନୁଷ୍ଟୁପ୍)

ପଦପାଠ : ସମ୍‌ଽସମ୍ । ଇତ୍ । ଯୁବସେ । ବୃଷନ୍ । ଅଗ୍ନେ । ବିଶ୍ୱାନି । ଅର୍ଯଃ । ଆ । ଇଳଃ । ପଦେ । ସମ୍ । ଇଧ୍ୟସେ । ସଃ । ନଃ । ବସୂନି । ଆ । ଭର ॥

ପଦାର୍ଥ : (ବୃଷନ୍) ହେ ସୁଖବର୍ଷକ ପ୍ରଭୋ ! (ଅଗ୍ନେ) ହେ ଅଗ୍ରଣୀ ! (ଅର୍ଯ) ହେ ସ୍ୱାମୀ, ପ୍ରେରକ ! ଆପଣ (ବିଶ୍ୱାନି) ସକଳ ପ୍ରାଣୀ ଓ ବସ୍ତୁକୁ (ଇତ୍) ଯଥାର୍ଥ (ସଂ ସମ୍ ଆ ଯୁବସେ) ସଂଯୋଗ ଓ ସଙ୍ଗଠନ କରନ୍ତି, (ଇଳଃ ପଦେ) ମୋ' ହୃଦୟରୂପକ ଭୂମିରେ (ସମ୍ ଇଧ୍ୟସେ) ପ୍ରକାଶିତ ହୁଅନ୍ତି । (ସଃ) ସେହି ଆପଣ (ନଃ) ଆମ୍ଭମାନଙ୍କର (ବସୂନି) ପଦ ଓ ସମ୍ପଦ (ଆ ଭର) ପୂର୍ଣ୍ଣ କରନ୍ତୁ ।





॥ ମଣ୍ଡଳ ୧୦, ସୂକ୍ତ ୧୯୧, ମନ୍ତ୍ର ୧ ॥

—ଋଗ୍‌ବେଦର ଶେଷ ସୂକ୍ତରେ ଚାରୋଟି ମନ୍ତ୍ର ଅଛି । ଏହା ଉକ୍ତ ସୂକ୍ତର ପ୍ରଥମ ମନ୍ତ୍ର ଅଟେ । ଏଠାରେ ପ୍ରଭୁଙ୍କୁ ଯାହା ପ୍ରାର୍ଥନା କରାଯାଏ, ସୂକ୍ତର ପରବର୍ତ୍ତୀ ତିନୋଟି ମନ୍ତ୍ରରେ ପ୍ରଭୁ ତାହା ପ୍ରଦାନ କରନ୍ତି ।

ପ୍ରଭୁ 'ବୃଷନ୍' ଅଟନ୍ତି ଅର୍ଥାତ୍ ଜୀବଙ୍କଠାରେ କଲ୍ୟାଣ ବର୍ଷା କରନ୍ତି । ପରନ୍ତୁ ସମସ୍ତେ କଲ୍ୟାଣ ପାଆନ୍ତି ନାହିଁ । ଯେଉଁମାନେ ଜ୍ଞାନପୂର୍ବକ ପ୍ରଭୁଙ୍କ ନିୟମମାନ ପାଳନ କରନ୍ତି, ସେମାନେ ହିଁ କଲ୍ୟାଣର ଅଧିକାରୀ ହୁଅନ୍ତି । ଏହି ମନ୍ତ୍ରରେ ପ୍ରଭୁଙ୍କୁ ବୃଷନ୍ ସଙ୍ଗେ ସଙ୍ଗେ ଅଗ୍ନି ଓ ଅର୍ଯ୍ୟ ନାମରେ ସମ୍ବୋଧନ କରାଯାଇଛି । ସର୍ବଜ୍ଞ ଓ ସର୍ବପ୍ରକାଶକ ହେବରୁ ପ୍ରଭୁଙ୍କ ନାମ 'ଅଗ୍ନି' । ସୃଷ୍ଟିର ଅଟଳ ନିୟମଗୁଡ଼ିକୁ ନିୟନ୍ତ୍ରଣ କରୁଥିବାରୁ ସେ 'ଅର୍ଯ୍ୟ' ଅଟନ୍ତି ।

ଋଗ୍‌ବେଦର ଅନ୍ତିମ ପ୍ରାର୍ଥନା ହେଉଛି—"ହେ ପ୍ରଭୋ ! ଜଡ଼ ଜଗତର ସଂଯୋଗ-ବିୟୋଗରେ ଅଦ୍ଭୁତ ସୃଷ୍ଟି ଚାଲିଛି । ସୃଷ୍ଟିରେ ଓତପ୍ରୋତ ହୋଇ ରହିଛ । ଋଗ୍‌ବେଦର ଛନ୍ଦୋବଦ୍ଧ ସୂକ୍ତମାନଙ୍କରେ ଅଣୁଠାରୁ ମହତ୍ ପର୍ଯ୍ୟନ୍ତ ସମସ୍ତ ଜ୍ଞାନଭଣ୍ଡାର ସୃଷ୍ଟି କରିଛ । ସେହି ଜ୍ଞାନର ଅନ୍ତ ନାହିଁ । ଏତେ ଜ୍ଞାନ ଗ୍ରହଣ କରିବାପାଇଁ ଆମଠାରେ ଶକ୍ତି ନାହିଁ । ସୁଖଶାନ୍ତି ପାଇବାର ଉପାୟଗୁଡ଼ିକୁ ସଂକ୍ଷେପରେ ବତାଇଦିଅ ।"

॥ ମଣ୍ଡଳ ୧୦, ସୂକ୍ତ ୧୯୧, ମନ୍ତ୍ର ୨ ॥

ସମାନ ଗତି, ଉକ୍ତି ଓ ଶକ୍ତି

ସଂ ଗଚ୍ଛଧ୍ୱଂ ସଂ ବଦଧ୍ୱଂ

ସଂ ବୋ ମନାଂସି ଜାନତାମ୍ ।

ଦେବା ଭାଗଂ ଯଥା ପୂର୍ବେ

ସଂଜାନାନା ଉପାସତେ ।

(ସଂବନନଃ । ସଂଜ୍ଞାନମ୍ । ଅନୁଷ୍ଟୁପ୍)

ପଦପାଠ: ସମ୍ । ଗଚ୍ଛଧ୍ୱମ୍ । ସମ୍ । ବଦଧ୍ୱମ୍ । ସମ୍ । ବଃ । ମନାଂସି । ଜାନତାମ୍ । ଦେବାଃ । ଭାଗମ୍ । ଯଥା । ପୂର୍ବେ । ସଂଜାନାନାଃ । ଉପଃଆସତେ ॥

ପଦାର୍ଥ: ହେ ମନୁଷ୍ୟଗଣ ! (ସଂ ଗଚ୍ଛଧ୍ୱମ୍) ଏକାଠି ମିଳିମିଶି ଚାଲ; (ସଂବଦଧ୍ୱଂ) ମିଳିମିଶି ପ୍ରୀତିପୂର୍ବକ ବାର୍ତ୍ତାଳାପ କର, (ବଃ ମନାଂସି) ତୁମ୍ଭମାନଙ୍କର ଚିତ୍ତ (ସଂଜାନତାମ୍) ସମାନପୂର୍ବକ ଜ୍ଞାନପ୍ରାପ୍ତ ହେଉ । (ଯଥା) ଯେଉଁପରି (ପୂର୍ବେ ଦେବାଃ) ପୂର୍ବବର୍ତ୍ତୀ ବିଦ୍ୱାନ୍‌ଗଣ (ଭାଗଂ) ସେବନୀୟ ପ୍ରଭୁଙ୍କ (ଜାନାନାଃ) ଜ୍ଞାନ ସଂପାଦନ କରି (ସମ୍ ଉପାସତେ) ଉତ୍ତମ ଉପାସନା କରୁଥିଲେ ।( ସେହିପରି ତୁମ୍ଭେମାନେ ମଧ୍ୟ କର ।)





॥ ମଣ୍ଡଳ ୧୦, ସୂକ୍ତ ୧୯୧, ମନ୍ତ୍ର ୨ ॥

—ପୂର୍ବୋକ୍ତ ପ୍ରାର୍ଥନାର ଉତ୍ତରସ୍ୱରୂପ ପ୍ରଭୁ ମନୁଷ୍ୟଙ୍କୁ ସମ୍ବୋଧନ କରି କହୁଛନ୍ତି—"ତୁମ୍ଭମାନଙ୍କ ସୁଖ, ଶାନ୍ତି ଓ ପ୍ରଗତିପାଇଁ ଉପଦେଶ ଦେଉଛି—(କ) ସଂଗଚ୍ଛଧ୍ୱଂ, (ଖ) ସଂବଦଧ୍ୱଂ, (ଗ) ବଃ ମନାଂସି ସଂଜାନତାମ ।"

'ସଂଗଚ୍ଛଧ୍ୱଂ' ଅର୍ଥାତ୍ 'ହେ ମନୁଷ୍ୟଗଣ ! ଏକାଠି ଚାଲ ।' ଏକାଠି ଚାଲିବାବେଳେ କାହାର ଗତି ଚଞ୍ଚଳ କାହାର ବା ଧୀର ହେବା ସ୍ୱାଭାବିକ । ଏକପ୍ରକାର ଉପ୍ସ୍ତୁଣଦ୍ୱାରା ଏକାଠି ଚାଲିବା ସମ୍ଭବ ହୁଏ । ସହସ୍ରାଧିକ ସୈନ୍ୟ ଏକ ତାଳରେ ଗତି କରନ୍ତି । ପିତାପୁତ୍ର ହାତ ଧରାଧରି ହୋଇ ଏକତ୍ର ଚାଲନ୍ତି । ତେଣୁ ସମାନ ଗତିପାଇଁ ଚେଷ୍ଟା ଓ ଉପ୍ସ୍ତୁଣ ଆବଶ୍ୟକ । ସମାଜର ପତିତ ଓ ଉନ୍ନତ ବର୍ଗ ଏଭଳି ଏକାଠି ପ୍ରଗତି କରିବା ବିଧେୟ ।

'ସଂବଦଧ୍ୱଂ' ଅର୍ଥାତ୍ 'ହେ ମନୁଷ୍ୟଗଣ ! ପରସ୍ପର ପ୍ରୀତିପୂର୍ବକ ବାର୍ତ୍ତାଳାପ କରି ଚାଲ ।' କଥା ହୋଇ ଚାଲିଲେ ବାଟ ସରିଯାଏ । ଦୁଇଜଣ ଲୋକ ପରସ୍ପର ଶତ୍ରୁ ହେଲେ କଥାବାର୍ତ୍ତା କରନ୍ତି ନାହିଁ । ସେମାନେ କଥାବାର୍ତ୍ତା ଆରମ୍ଭ କଲେ ପୁଣି ମିତ୍ରତା ଆରମ୍ଭ ହୁଏ ।

'ବଃ ମନାଂସି ସଂଜାନତାମ୍' ଅର୍ଥାତ୍ ହେ ମନୁଷ୍ୟଗଣ । ତୁମ୍ଭେମାନେ ପ୍ରେମପୂର୍ବକ ବିଚାର ଆଲୋଚନା କର ।' ଲୋକେ ଭିନ୍ନ ଭିନ୍ନ ଭାବରେ ବିଚାର କଲେ ଏକାଠି ଗତି କରିବା ସମ୍ଭବ ନୁହେଁ । ଶେଷରେ ସ୍ମରଣ କରି ଦିଆଯାଉଛି ଯେ ପୂର୍ବକାଳର ଦେବଗଣ ସମାନ ଗତି, ଉକ୍ତି ଓ ଶକ୍ତି ଦ୍ୱାରା ପ୍ରଗତିଲାଭ କରିଥିଲେ ।

॥ ମଣ୍ଡଳ ୧୦, ସୂକ୍ତ ୧୯୧, ମନ୍ତ୍ର ୩ ॥

ଏକ ମନ୍ତ୍ର, ଏକ ସଭା

ସମାନୋ ମନ୍ତ୍ରଃ ସମିତିଃ ସମାନୀ
ସମାନଂ ମନଃ ସହ ଚିତ୍ତମେଷାମ୍ ।
ସମାନଂ ମନ୍ତ୍ରମଭି ମନ୍ତ୍ରୟେ ବଃ
ସମାନେନ ବୋ ହବିଷା ଜୁହୋମି ॥

( ସଂବନନଃ । ସଂଜ୍ଞାନମ୍ । ତ୍ରିଷ୍ଟୁପ୍ )

ପଦପାଠ : ସମାନଃ । ମନ୍ତ୍ରଃ । ସମ୍‌ଇତିଃ । ସମାନୀ । ସମାନମ୍ । ମନଃ । ସହ । ଚିତ୍ତମ୍ । ଏଷାମ୍ । ସମାନମ୍ । ମନ୍ତ୍ରମ୍ । ଅଭି । ମନ୍ତ୍ରୟେ । ବଃ । ସମାନେନ । ବଃ । ହବିଷା । ଜୁହୋମି ॥

ପଦାର୍ଥ : ( ଏଷାମ୍ ) ଏହି ମନୁଷ୍ୟମାନଙ୍କର ( ମନ୍ତ୍ରଃ ) ବିଚାର ( ସମାନଃ ) ସମାନ ହେଉ; (ସମିତିଃ ସମାନୀ) ପରିଷଦ ସଂଗଠନ ସମାନ ହେଉ; (ମନଃ ସମାନମ୍) ଅନ୍ତଃକରଣ ସମାନ ହେଉ, ( ଚିତ୍ତଂ ସହ ) ଚିତ୍ତ ପରସ୍ପରର ଅନୁକୂଳ ହେଉ । (ବଃ) ତୁମ୍ଭମାନଙ୍କ ପାଇଁ ( ସମାନଂ ମନ୍ତ୍ରମ୍ ) ସମାନ ବିଚାର ଅଥବା ବେଦବାଣୀ ( ଅଭି ମନ୍ତ୍ରୟେ ) ମନ୍ତ୍ରଦାନ କରୁଅଛି । ( ବଃ ସମାନେନ ହବିଷା ଜୁହୋମି ) ତୁମ୍ଭମାନଙ୍କୁ ଏକପ୍ରକାର ଉନ୍ନତିର ସୁଯୋଗ ପ୍ରଦାନ କରୁଅଛି ।



॥ ମଣ୍ଡଳ ୧୦, ସୂକ୍ତ ୧୯୧, ମନ୍ତ୍ର ୩ ॥

—ପୂର୍ବବର୍ତ୍ତୀ ଉପଦେଶକୁ ଏଠାରେ ବିସ୍ତୃତ କରି କୁହାଯାଇଛି । 'ସମାନଂ ମନ୍ତ୍ରମ୍ ଅଭିମନ୍ତ୍ରୟେ'—ହେ ମନୁଷ୍ୟଗଣ ! ତୁମ ସମସ୍ତଙ୍କୁ ମୁଁ ଏକପ୍ରକାର ମନ୍ତ୍ରରେ ଦୀକ୍ଷିତ କରୁଛି । 'ସମାନୋ ମନ୍ତ୍ର ସମିତିଃ ସମାନୀ'—ସେହି ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ତୁମ୍ଭେମାନେ ଏକତ୍ର ପରାମର୍ଶ କର ।

ସମାନ ମନ୍ତ୍ର ନ ଥିଲେ ମାନବସମାଜରେ ଏକତା ଭଙ୍ଗ ହୁଏ । ଲୋକେ ମାନବତା-ମନ୍ତ୍ରକୁ ଛାଡ଼ି ଦଳୀୟ ଓ ସାଂପ୍ରଦାୟିକ ବିଚାରରେ ଉନ୍ମତ୍ତ ହେଲେ ମନୁଷ୍ୟସଂଗଠନ ବିଭକ୍ତ ହୁଏ । ବହୁ ଦଳ, ସଂଘ ଓ ସଂପ୍ରଦାୟ ଗଠିତ ହୁଏ । ବିଚାର, ପୂଜା ଓ ପ୍ରାର୍ଥନାପଦ୍ଧତି ଭିନ୍ନଭିନ୍ନ ହୁଏ । ଲୋକେ ସ୍ୱହିତ ଓ ସ୍ୱଦଳର ହିତପାଇଁ ପ୍ରାର୍ଥନା କରନ୍ତି । ଯଦି ସମସ୍ତେ ଶ୍ରଦ୍ଧାପୂର୍ବକ ପ୍ରଭୁଙ୍କ ଉପାସନା କରୁଛନ୍ତି, ତାହାହେଲେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଭେଦଭାବ କାହିଁକି ବ୍ୟାପିଅଛି ? ଏହାର ସରଳ ଉତ୍ତର ଏହି ଯେ, ଆମେ ସମସ୍ତେ ସମାନ ମନ୍ତ୍ର, ସମାନପୂଜା-ପଦ୍ଧତି ଅବଲମ୍ବନ କରୁନାହୁଁ । ଦଳ ଦଳ ମନୁଷ୍ୟ ଭିନ୍ନଭିନ୍ନ ଈଶ୍ୱର ଗଢ଼ି ଭିନ୍ନଭିନ୍ନ ପୂଜାସ୍ଥଳ ଓ ସମିତିରେ ଉପସ୍ଥିତ ହେଉଛନ୍ତି ।

ମନ୍ତ୍ରର ଶେଷଭାଗରେ ପ୍ରଭୁ ସାବଧାନ କରିଛନ୍ତି—'ମନୁଷ୍ୟଗଣ ! ବିଶ୍ୱାସ କର । ମୁଁ ତୁମ୍ଭମାନଙ୍କପାଇଁ ସମାନ ସୁଯୋଗ ଅର୍ପଣ କରୁଛି ।' ଏହି ଉପଦେଶକୁ ଭଙ୍ଗକରିବା ଫଳରେ ମନୁଷ୍ୟ ସମାଜରେ ଭେଦଭାବ ସୃଷ୍ଟି ହୁଏ ।

॥ ମଣ୍ଡଳ ୧୦, ସୂକ୍ତ ୧୯୧, ମନ୍ତ୍ର ୪ ॥

ସମାନ ସଂକଳ୍ପ

ସମାନୀ ବ ଆକୂତିଃ

ସମାନା ହୃଦୟାନି ବଃ ।

ସମାନମସ୍ତୁ ବୋ ମନୋ

ଯଥା ବଃ ସୁସହାସତି ॥

( ସଂବନନଃ । ସଂଜ୍ଞାନମ୍ । ଅନୁଷ୍ଟୁପ୍ )

ପଦପାଠ : ସମାନୀ । ବଃ । ଆଽକୂତିଃ । ସମାନା । ହୃଦୟାନି । ବଃ । ସମାନମ୍ । ଅସ୍ତୁ । ବଃ । ମନଃ । ଯଥା । ବଃ । ସୁଽସହ । ଅସତି ॥

ପଦାର୍ଥ : ( ବଃ ) ତୁମ୍ଭମାନଙ୍କର ( ଆକୂତିଃ ) ସଂକଳ୍ପଶକ୍ତି ( ସମାନୀ ) ସମାନ ହେଉ; ( ବଃ ) ତୁମ୍ଭମାନଙ୍କର ( ହୃଦୟାନି ) ହୃଦୟ ( ସମାନା ) ସମାନ ହେଉ; ( ବଃ ) ତୁମ୍ଭମାନଙ୍କର ( ମନଃ ) ମନ ( ସମାନଂ ଅସ୍ତୁ ) ସମାନ ହେଉ; ( ଯଥା ) ଯଦ୍ଦ୍ୱାରା ( ବଃ ) ତୁମ୍ଭମାନଙ୍କ ( ସହ ) ବଳ, ସାମର୍ଥ୍ୟ ( ସୁ ଅସତି ) ଉତ୍ତମ ରୂପରେ ପ୍ରକାଶିତ ହୋଇପାରିବ ।





॥ ମଣ୍ଡଳ ୧୦, ସୂକ୍ତ ୧୯୧, ମନ୍ତ୍ର ୪ ॥

—ଋଗ୍‌ବେଦର ଅନ୍ତିମ ମନ୍ତ୍ର ! ତୃଣଠାରୁ ବ୍ରହ୍ମ ପର୍ଯ୍ୟନ୍ତ ସମସ୍ତ ତତ୍ତ୍ୱ ଶୁଣାଇ ସାରି ଋଗ୍‌ବେଦ ମାନବସଂଗଠନର ଶେଷ ସଂଦେଶ ଦେଇ ଉଦ୍‌ଯାପିତ ହେଉଛନ୍ତି । ପୂର୍ବବର୍ତ୍ତୀ ଦୁଇଟି ମନ୍ତ୍ରରେ ଯାହା ଉପଦେଶ ଦିଆଯାଇଛି, ପ୍ରସ୍ତୁତ ମନ୍ତ୍ର ତାହାର ଶେଷ ପର୍ଯ୍ୟାୟ ।

ପ୍ରଭୁଙ୍କ ଶେଷ ଉପଦେଶ ହେଉଛି—"ହେ ମୋର ଅମୃତ ସନ୍ତାନଗଣ ! ତୁମ୍ଭେମାନେ କର୍ମମୟ ଜୀବ । ଶୁଭସଂକଳ୍ପରୁ ଶୁଭକର୍ମ ଉତ୍ପନ୍ନ ହୁଏ । ତେଣୁ ସଂକଳ୍ପ ଧାରଣପାଇଁ ତୁମମାନଙ୍କୁ ହୃଦୟ ଓ ମନ ପ୍ରଦାନ କରିଅଛୁ । ହୃଦୟ ପ୍ରେମର ପ୍ରତୀକ; ମନ ବିଚାର ବା ବୁଦ୍ଧିର ପ୍ରତୀକ । ପ୍ରେମ ବିନା ବୁଦ୍ଧି ନୀରସ ଓ ନିଃସାର ହୁଏ । ତୁମେ ବୁଦ୍ଧିମାନ୍ ହୋଇପାର, ପରନ୍ତୁ ହୃଦୟହୀନ ହେଲେ ଅହଂକାରୀ ଓ ଅନ୍ଧ ହୋଇପଡ଼ିବ । ସେହିପରି ବୁଦ୍ଧିହୀନପ୍ରେମ ଶେଷରେ ମୋହ ଓ କାମୁକତାରେ ପରିଣତ ହୁଏ । ତୁମେ ହୃଦୟବାନ୍ ହୋଇପାର, ପରନ୍ତୁ ବୁଦ୍ଧିଶୂନ୍ୟ ହେଲେ କାହାର ଉପକାର କରିବାକୁ ଯାଇ ଅନିଷ୍ଟ ସାଧନ କରିବ । ହେ ମାନବଗଣ ! ତୁମ୍ଭମାନଙ୍କର ହୃଦୟ ଓ ମନ ସମାନ ହେଉ; ସଂକଳ୍ପ ସମାନ ହେଉ; ସଂଗଠନ ଦୃଢ଼ ହେଉ ।"

ଜୟ ଈଶ୍ୱର ! ମାନବମାନସର ଦିଗ୍‌ବଳୟକୁ ତୁମ ଅମୃତମୟୀ ଦିବ୍ୟବାଣୀ ଚିରକାଳ ଆଲୋକିତ କରୁ ।

ଊର୍ଦ୍ଧ୍ୱଂ କୃଣ୍ୱନ୍ତ୍ୱଧ୍ୱରସ୍ୟ କେତୁମ୍ ॥

( ମଣ୍ଡଳ ୩, ସୂକ୍ତ ୮, ମନ୍ତ୍ର ୮ )

## ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ନୂତନ !
## ବୈଦିକ ସାହିତ୍ୟର କେତୋଟି
## ମୂଲ୍ୟବାନ ଗ୍ରନ୍ଥ

ଋଗ୍‌ବେଦ ସୌରଭ

ଯଜୁର୍ବେଦ ସୌରଭ

ସାମବେଦ ସୌରଭ

ଅଥର୍ବବେଦ ସୌରଭ

ବେଦ ମନୁଷ୍ୟକୃତ କି ?

ଚତୁର୍ବେଦ ସୂକ୍ତି ସ[illegible]

ଆର୍ଯ୍ୟ ସଂସ୍କୃତି

ସନ୍ଧ୍ୟା ଉ[illegible] ଏ ବାଧି

ବୈ[illegible]

ପ୍ରକାଶ[illegible]

[illegible]ନୁସନ୍ଧାନ ପ୍ରତିଷ୍ଠାନ
ଭୁବନେଶ୍ୱର-୭